# ବୈଦିକ ପ୍ରବନ୍ଧାବଳୀ

ଲେଖକ :
ସର୍ବେଶ୍ୱର ଦାଶ

ପ୍ରକାଶକ :
ସର୍ବେଶ୍ୱର ଦାଶ
୧୧୪୧, ଏରୋଡ୍ରୋମ୍ ଏରିଆ
ଭୁବନେଶ୍ୱର - ୭୫୧୦୨୦

ମୁଦ୍ରାକର :
ଡୁଡୁଲି ପ୍ରୋସେସ୍ ଏଣ୍ଡ ଅଫ୍‌ସେଟ୍
୨୩୧, ବାପୁଜୀ ନଗର, ଭୁବନେଶ୍ୱର

ପ୍ରଚ୍ଛଦ :
ବଳଦେବ ମହାରଥୀ

ପ୍ରଥମ ପ୍ରକାଶ :
ଡ଼ିସେମ୍ବର, ୨୦୦୦

ମୂଲ୍ୟ: ଟ ୭୦ ଙ୍କା ମାତ୍ର



Published by Sarbeswar Das, 1141, Aerodrome Area, Bhubaneswar, 751020 & Printed at Duduly Process & Offset, 231, Bapuji Nagar, Bhubaneswar.

# ମୁଖବନ୍ଧ

କେତେ ବର୍ଷ ତଳେ ବହୁ ପ୍ରାଚ୍ୟ ପାଶ୍ଚାତ୍ୟ ମନୀଷୀଙ୍କ ଦ୍ୱାରା କୃତ ଅନୁବାଦ ଓ ଟୀକା ସାହାଯ୍ୟରେ ବେଦ, ବିଶେଷତଃ ଋଗ୍‌ବେଦ ପାଠ କରି ମୁଁ ବିସ୍ମିତ, ବିମୁଗ୍ଧ ହୋଇଗଲି । ସେହିଦିନୁଁ ବାରମ୍ବାର ଆକୃଷ୍ଟ ହୋଇଛି ତାହା ପଢ଼ିବାକୁ ।

ମନେ ହୋଇଛି, ଯଥାର୍ଥରେ ବେଦ ଅପୌରୁଷେୟ । କ୍ରାନ୍ତଦର୍ଶୀ ଋଷିକବିଗଣଙ୍କ ହୃଦୟରେ ଯେପରି ସଂଚରିତ ହୋଇଛି ଅମୃତ ଦିବ୍ୟବାଣୀ । ତାହାକୁ ହିଁ ସେମାନେ ତନ୍ମୟ ହୋଇ ଆବୃତ୍ତି କରିଛନ୍ତି । ବେଦ ଯଥାର୍ଥରେ ଶ୍ରୁତି । ଋଷିଗଣ ଯେପରି ଶୁଣିଛନ୍ତି ସ୍ୱର୍ଲୋକର ଅବିନଶ୍ୱର ଧ୍ୱନି । ସେହି ଅବିନଶ୍ୱର ଧ୍ୱନି ରୂପ ପାଇଛି ସେମାନଙ୍କ ଭାଷାରେ । ସେହି ଭାଷା ବି ଯେପରି ହୋଇଯାଇଛି ଶାଶ୍ୱତ, ସହସ୍ର ସହସ୍ର ବର୍ଷ ଧରି ବଞ୍ଚିରହିଛି କୋଟି କୋଟି ଜନଙ୍କ ମାନସକୁ, ହୃଦୟକୁ ଅଭିଭୂତ କରି, ଉଦ୍‌ବୁଦ୍ଧ କରି ।

ପୁଣି ମନେ ହୋଇଛି, ବେଦ ମଧ୍ୟ ପୌରୁଷେୟ । ତହିଁରେ ଫୁଟିଛି ଆଦି ଆର୍ଯ୍ୟମାନବର ଚିନ୍ତାର, ଚେତନାର ବିବର୍ତ୍ତନ, ତା'ର ଜୀବନ ଧାରାର, ଘାତସଂଘାତର ଚିତ୍ର, ତା'ର ଆଶା ଓ ଆଶଙ୍କା, ତା'ର କଳ୍ପନା ଜଳ୍ପନା, ବ୍ୟଥା ଓ ବେଦନା, ତା'ର ବିଶ୍ୱାସ ଓ ଦ୍ୱନ୍ଦ୍ୱର ଚିତ୍ର । ସସୀମ ଭୂମିର ସନ୍ତାନ ସେ, କିନ୍ତୁ ଅସୀମ ଭୂମାର ଆକାଂକ୍ଷୀ ସେ, ଉପାସକ, ଅନୁଗାମୀ ସେ । ସେ ଯେପରି କେବେ କେବେ ସଂସାର-ଯୂପରେ ପାଶାବଦ୍ଧ, ଆକୁଳପ୍ରାର୍ଥନାରତ, ମୁକ୍ତିକାମୀ ଶୁନଃଶେପ । ପୁଣି ସେ କେବେ କେବେ ଯେପରି ଦିବ୍ୟଚେତନାବିଶିଷ୍ଟ, ପ୍ରଶାନ୍ତ, ଜୀବନ୍ମୁକ୍ତ ବସିଷ୍ଠ ।

ଅଗଣିତଚରିତ୍ରସମନ୍ୱିତ, ଅଗଣିତଘଟଣାସମୃଦ୍ଧ, ବିବିଧରସାପ୍ଲୁତ, ଅଂଶବିଶେଷରେ ଅଳଙ୍କାରପ୍ରାଚୁର୍ଯ୍ୟରେ ଉଦ୍‌ଭାସିତ, ବିଭିନ୍ନ ଶୈଳୀରେ, ବର୍ଣ୍ଣନା ଚାତୁରୀରେ ଭାସ୍ୱରିତ, ଛନ୍ଦମୟ, ଗୀତିମୟ, ମଧ୍ୟେ ମଧ୍ୟେ ନାଟକୀୟ ଋଗ୍‌ବେଦ ଯେପରି ଏକ ଅପୂର୍ବ ମହାକାବ୍ୟ । ସେଥିରେ ଯେ କେବଳ ପ୍ରାଚୀନ ଆର୍ଯ୍ୟମାନବର ଚେତନାର ଚିତ୍ର ଫୁଟିଛି, ତାହା ନୁହେଁ । ସେ ଯୁଗର ପରିପ୍ରେକ୍ଷୀରେ ସର୍ବଯୁଗର ମାନବୀୟ ଚେତନାର ଚିତ୍ର ଫୁଟିଛି ।

ତାହା ପଢୁ ପଢୁ ମୋର ମନରେ ଯେଉଁସବୁ ଭାବ ଉଦୟ ହୋଇଛି, ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଛି, ତାହା ମତେ ସ୍ୱତଃ ପ୍ରଣୋଦିତ କରିଛି କେତେକ ପ୍ରବନ୍ଧ

ଲେଖିବାକୁ । କୌତୁହଳୀ ହୋଇ ପଢ଼ିଛି ମୁଁ ବହୁ ବିଶିଷ୍ଟ ବେଦଜ୍ଞ ପଣ୍ଡିତଙ୍କର, ଗବେଷକଙ୍କର ରଚନା । ଲକ୍ଷ୍ୟ କରିଛି ମତର, ଟୀକାର ବିଭିନ୍ନତା । କେତେ ଅର୍ଥ ଅର୍ଥାନ୍ତର କରାଯାଇଛି ବେଦର ଅଂଶବିଶେଷର । ସମୟ ସମୟରେ ପ୍ରାୟ ଅବୋଧ ରହିଯାଇଛି କେତେକ ଅଂଶ । ମୁଁ ସର୍ବଦା କୌଣସି ଏକ ନିର୍ଦ୍ଦିଷ୍ଟ ଟୀକାକୁ ବା ମତକୁ ଗ୍ରହଣ କରିପାରିନାହିଁ । ଯେତିକି ଯାହା ଠିକ୍ ବୋଲି ବୁଝିଛି, ତାହାରି ଭିତ୍ତିରେ ପ୍ରବନ୍ଧ ସବୁ ଲେଖିଛି ।

ଏହି ପୁସ୍ତିକାଟିରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ସେହି ପ୍ରବନ୍ଧମାନଙ୍କରୁ କେତୋଟି ସଙ୍କଳିତ ହୋଇଅଛି ।

ମୋର ସ୍ୱର୍ଗୀୟା ସହଧର୍ମିଣୀ ବସନ୍ତକୁମାରୀ ମଧ୍ୟ ଅନେକ ସମୟରେ ଋଗ୍‌ବେଦ ପାଠ କରୁଥିଲେ ଓ ତାହା ଉପରେ ମୋ ସହିତ ଆଲୋଚନା କରୁଥିଲେ । ବୈଦିକ ବିଷୟରେ ପ୍ରବନ୍ଧ ଲେଖିବାକୁ ସେ ମତେ ଉତ୍ସାହିତ କରିଥିଲେ । ସେ ଗୁଡ଼ିକର ସେ ଥିଲେ ପ୍ରଥମ ପାଠିକା ଓ ନିରପେକ୍ଷା ସମାଲୋଚିକା । ନିଜେ ମଧ୍ୟ ସେ 'ଋଗ୍‌ବେଦରେ ପରମାତ୍ମାଙ୍କ ପରିକଳ୍ପନା' ଶୀର୍ଷକ ପ୍ରବନ୍ଧ ରଚନା କରିଥିଲେ । ଆଜି ଏହି ପୁସ୍ତିକାର ପ୍ରକାଶ ଅବସରରେ ତାଙ୍କୁ ଗଭୀର ବିଷାଦ ସହ ସ୍ମରଣ କରୁଛି ।

*ସର୍ବେଶ୍ୱର ଦାଶ*

ଡ଼ଶ

# ଉତ୍ସର୍ଗ ପତ୍ର







ଯାହାଙ୍କଠାରୁ ବାଲ୍ୟକାଳରେ ପ୍ରଥମେ ବେଦବାଣୀ ଶୁଣିଥିଲି ସେହି ପ୍ରାଚ୍ୟପାଶ୍ଚାତ୍ୟସାହିତ୍ୟଦର୍ଶନାଦିରେ ସୁପଣ୍ଡିତ, ଏକାନ୍ତ ଧର୍ମପ୍ରାଣ, ମୋର ପରମପୂଜ୍ୟ ସ୍ୱର୍ଗୀୟ ପିତୃଦେବ ଗୋପିନାଥ ଦାଶଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଏହି 'ବୈଦିକ ପ୍ରବନ୍ଧାବଳୀ' ପୁସ୍ତିକାଟି ସଭକ୍ତି ଉତ୍ସର୍ଗ କରୁଅଛି ।

*ସର୍ବେଶ୍ୱର ଦାଶ*

# ସୂଚୀପତ୍ର

# ଋଗ୍‌ବେଦରେ ମୃତ୍ୟୁଚେତନା

ଋଗ୍‌ବେଦର ଦଶସହସ୍ରାଧିକ ସୂକ୍ତ ମଧ୍ୟରୁ ଅଧିକାଂଶ ସୂକ୍ତ ଅଗ୍ନି, ମରୁତ୍‌, ଇନ୍ଦ୍ର, ବରୁଣ, ବିଶ୍ୱେଦେବା, ଅଶ୍ୱିନୀ କୁମାର, ସୋମ, ସରସ୍ୱତୀ ଓ ଉଷା ପ୍ରଭୃତି ଦେବଦେବୀଙ୍କ ସ୍ତୁତିମୂଳକ । ଉଦାତ୍ତ, ଉଚ୍ଛ୍ୱସିତ କଣ୍ଠରେ ପ୍ରାଚୀନତମ ଯୁଗର ଆର୍ଯ୍ୟଋଷିଗଣ ବିଭିନ୍ନ ଦେବତାଙ୍କର ଗୌରବ ଗାନ କରିଅଛନ୍ତି । ସେମାନଙ୍କର ସୌନ୍ଦର୍ଯ୍ୟ, ବଳବୀର୍ଯ୍ୟ, ଗାରିମା ବର୍ଣ୍ଣନା କରିଅଛନ୍ତି, ପ୍ରାର୍ଥନା କରିଅଛନ୍ତି ଅନ୍ନ ପାଇଁ, ସୁଖ, ସମ୍ଭୋଗ, ସମୃଦ୍ଧି ପାଇଁ, ଶତ୍ରୁର ବିନାଶ ପାଇଁ, ପୁଣି ପ୍ରଜ୍ଞା ପାଇଁ, ଋତ ଓ ସତ୍ୟର ଉପଲବ୍ଧି ପାଇଁ, ଆତ୍ମାର ବିକାଶ ପାଇଁ । ଲକ୍ଷ୍ୟ କରିଛନ୍ତି ପ୍ରତ୍ୟେକଙ୍କଠାରେ ଏକ ପରମାତ୍ମାଙ୍କର ସ୍ୱରୂପ, ଆପାତତଃ ପ୍ରକୃତିର ବିଭିନ୍ନ ବିଭାବର ପ୍ରତୀକାତ୍ମକ ଦେବତାଗଣ ଯେପରି ପରସ୍ପରଠାରୁ ଅଭିନ୍ନ-ଏକ ପରମାତ୍ମାଙ୍କର ବିଭିନ୍ନ ପ୍ରକାଶ ମାତ୍ର । ପୁରୁଷ ସୂକ୍ତ ପରି କେତେକ ସୂକ୍ତରେ ପରମାତ୍ମାଙ୍କର ସ୍ୱରୂପ ନିର୍ଣ୍ଣୟ କରିବାକୁ ପ୍ରଚେଷ୍ଟା କରିଛନ୍ତି । କେତେକ ସୂକ୍ତରେ ଅଛି ବିଶ୍ୱସୃଷ୍ଟିର କ୍ରମବିକାଶର କାହାଣୀ । ଆଉ କେତେକରେ ପ୍ରକାଶ ପାଇଛି ଜୀବାତ୍ମା ଓ ପରମାତ୍ମାଙ୍କ ସମ୍ପର୍କରେ ଅବଧାରଣା ।

କିନ୍ତୁ ଋଗ୍‌ବେଦର ସମସ୍ତ ସୂକ୍ତରେ ସର୍ବଦା ସ୍ୱଚ୍ଛନ୍ଦ ସମର୍ପଣଭାବ ଓ ଭକ୍ତି ନିବେଦନ ଦେଖାଯାଏ ନାହିଁ । ଏପରି ବହୁ ସୂକ୍ତ ଅଛି ଯହିଁରେ ପ୍ରକାଶ ପାଇଛି ଏକ ସନ୍ତ୍ରସ୍ତଭାବ । ସେହି ସନ୍ତ୍ରସ୍ତଭାବ, ଶତ୍ରୁଜନିତ, ପ୍ରତିଦ୍ୱନ୍ଦୀଜନିତ । ସ୍ତୋତା ପ୍ରାର୍ଥନା କରିଅଛନ୍ତି ଇନ୍ଦ୍ରଙ୍କୁ ବା ଅଗ୍ନିଙ୍କୁ ଶତ୍ରୁ ନାଶ କରିବା ପାଇଁ, ସୋମଙ୍କୁ ପ୍ରାର୍ଥନା କରିଅଛନ୍ତି ପ୍ରତିଦ୍ୱନ୍ଦୀଙ୍କୁ ହଟାଇ ଦେବା ପାଇଁ । ପୁଣି କେତେକ ସୂକ୍ତରେ ମୃତ୍ୟୁଜନିତ ବିଷାଦ, ବ୍ୟସ୍ତତାର ପରିଚୟ ମିଳେ । ମୃତ୍ୟୁର ରହସ୍ୟ, ମୃତ୍ୟୁର ପରବର୍ତ୍ତୀ ଅବସ୍ଥାର ରହସ୍ୟ ଯେପରି ଋଷିମାନେ ଭେଦ କରିପାରିନାହାନ୍ତି , ଅଜ ଅମର ଆତ୍ମାର ପରିକଳ୍ପନାରେ ଯେପରି ଶାନ୍ତି ପାଇନାହାନ୍ତି ।

ଦଶମ ମଣ୍ଡଳର ୩୩ତମ ସୂକ୍ତରେ ପିତୃମୃତ୍ୟୁରେ ଶୋକାକୁଳ ରାଜା କୁରୁଶ୍ରବଣ କହୁଅଛନ୍ତି, ''ମୋର ହୃତ୍‌ପିଞ୍ଜରଗୁଡିକ ସପତ୍ନୀମାନଙ୍କ ପରି ମତେ ଯନ୍ତ୍ରଣା ଦେଉଅଛନ୍ତି । ମୋର ମନର ବ୍ୟଥା ମତେ କଷ୍ଟ ଦେଉଅଛି । ମୁଁ ଜୀର୍ଣ୍ଣଶୀର୍ଣ୍ଣ, କ୍ଷୀଣକାୟ ହୋଇଯାଉଅଛି । ମୋର ମନ ପକ୍ଷୀମାନଙ୍କ ପରି ଚଞ୍ଚଳ ହେଉଛି ।'' ଇନ୍ଦ୍ରଭକ୍ତ ସେ । କିନ୍ତୁ ଭକ୍ତିରସ ତାଙ୍କର ହୃଦୟର ଗ୍ଲାନିକୁ ଦୂର କରିପାରୁନାହିଁ । ବ୍ୟାକୁଳ ହୋଇ ସେ କହୁଛନ୍ତି - ''ହେ ଇନ୍ଦ୍ର ! ମୂଷାମାନେ ଯେପରି ଦେହର ଶିରାପ୍ରଶିରାଗୁଡିକୁ ଚୋବାଇ ଖାଇଯାଆନ୍ତି, ସେହିପରି ମୁଁ ତୁମର ଭକ୍ତ ହୋଇଥିଲେହେଁ ମୋର ମନର ଯନ୍ତ୍ରଣା ମତେ ଚୋବାଇ ଖାଇ ଦେଉଛି ।'' ପ୍ରାର୍ଥନା କରିଛନ୍ତି ସେ, ''ହେ ମଘବନ୍ ଇନ୍ଦ୍ର ! ଥରେ ଆମ୍ଭମାନଙ୍କ ପ୍ରତି ସଦୟ ଦୃଷ୍ଟି ନିକ୍ଷେପ କର । ଆମର ପିତାଙ୍କ ପରି ହୁଅ ।'' ତ୍ରସଦସ୍ୟୁଙ୍କ ପୁତ୍ର କୁରୁଶ୍ରବଣ ରାଜା ଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ କବଷ ଋଷି ଅନେକ ସମୟରେ ତାଙ୍କ ପାଖକୁ

ଆସନ୍ତି । ରାଜା ନିଜେ ଓ ତାଙ୍କ ସଭାର ସମସ୍ତେ ଋଷିଙ୍କର ପୂଜା, ଅର୍ଚ୍ଚନା କରନ୍ତ, ସ୍ତୁତିଗାନ କରନ୍ତି ।

ଋଷି ରଥାରୂଢ ହେଲେ ରାଜପ୍ରଦତ୍ତ ତିନୋଟି ହରିଦ୍‌ବର୍ଣ୍ଣ ଘୋଟକ ତାଙ୍କର ରଥରେ ସଂଯୋଜିତ ହୁଅନ୍ତି । କବଷ ଋଷି - ଦେବସୁରକ୍ଷିତ, ଦୁର୍ଦ୍ଧର୍ଷ କବଷ ଋଷି ସତେ ଯେପରି ପ୍ରେରିତ ହେଲେ ସର୍ବନିୟନ୍ତାଙ୍କ ଦ୍ୱାରା - ଯେଉଁ ସର୍ବନିୟନ୍ତା ସମସ୍ତଙ୍କୁ ନିଜ ନିଜ କାର୍ଯ୍ୟରେ ପ୍ରେରଣ କରନ୍ତି । ଯାଇ ପହଞ୍ଚିଲେ ଦାନଶୀଳ କୁରୁଶ୍ରବଣଙ୍କ ନିକଟରେ । ଅନ୍ତରରେ ବହନ କରିଥାଆନ୍ତି ସେ ପୂଷାଙ୍କୁ-ସାନ୍ତ୍ୱନାଦାତାଙ୍କୁ । ଚତୁର୍ଦ୍ଦିଗରେ ରୋଳ ଉଠିଲା, ଋଷି କବଷ ଆସିଛନ୍ତି । ରାଜା କୁରୁଶ୍ରବଣ ଶୋକାକୁଳ ହେଇ ତାଙ୍କୁ ନିବେଦନ କଲେ, ''ମୋର ମୃତପିତାଙ୍କର କୀର୍ତ୍ତି ଥିଲା ଦୃଷ୍ଟାନ୍ତଦେବା ଭଳି (ଗୌରବାବହ) । ଏକ ରମଣୀୟ ଶସ୍ୟସମୃଦ୍ଧ କ୍ଷେତ୍ରର ଦୃଶ୍ୟ ଯେପରି ସମସ୍ତଙ୍କର ପ୍ରୀତିଜନକ, ମୋର ପିତାଙ୍କର ବଚନ ମଧ୍ୟ ସେହିପରି ଭୃତ୍ୟମାନଙ୍କର ପ୍ରୀତିଜନକ ହେଉଥିଲା । ''କବଷଋଷି ସାନ୍ତ୍ୱନା ଦେଇ କହିଲେ, ''ହେ କୁରୁଶ୍ରବଣ, ଯାହାଙ୍କର କୀର୍ତ୍ତି ଦୃଷ୍ଟାନ୍ତ ଦେବା ଭଳି, ତୁମେ ସେହି ରାଜା ତ୍ରସଦସ୍ୟୁଙ୍କର ପୁତ୍ର । ତୁମେ ମିତ୍ରାତିଥି ରାଜାଙ୍କର ପୌତ୍ର । ଆସ ମୋ ନିକଟକୁ । ମୁଁ ତୁମର ପିତାଙ୍କର ସ୍ତୁତିଗାନକାରୀ ବ୍ୟକ୍ତି । ତାଙ୍କ ପ୍ରତି ଥିଲି ଏକାନ୍ତ ଅନୁଗତ । '' କିନ୍ତୁ ତାପରେ କବଷ ଋଷି ମୃତ୍ୟୁର ଅପରାଜେୟତା ଓ ମାନବିକ ଶକ୍ତିର ଏକାନ୍ତ ସସୀମତା ସୂଚାଇ ଦେଲେ, କହିଲେ, ''ଯଦି ଜୀବିତ ବ୍ୟକ୍ତିର ଜୀବନ ଓ ମୃତ ବ୍ୟକ୍ତିର ମରଣ ମୋର ପ୍ରଭୁତ୍ୱର ଅଧୀନ ହୋଇଥା'ନ୍ତା, ତାହା ହେଲେ ମୋର ସର୍ବାଧିକ ମଙ୍ଗଳକାରୀ ତୁମର ପିତା ନିଷ୍ଟୟ ବଞ୍ଚିରହିଥାଆନ୍ତେ । ଏକଶତ ଆତ୍ମା ବା ପ୍ରାଣ ଥିଲେ ମଧ୍ୟ ଦେବତାମାନଙ୍କର ଇଚ୍ଛାର ବ୍ୟତିକ୍ରମ କରି କେହି ବଞ୍ଚିପାରେ ନାହିଁ । ଏଇଥିପାଇଁ ଆତ୍ମମାନଙ୍କର ଆପଣା ଲୋକଙ୍କଠାରୁ ଚିରବିଚ୍ଛେଦ ହୁଏ ।'' କବଷ ଋଷି ଦୁର୍ଦ୍ଧର୍ଷ, କିନ୍ତୁ ମୃତ୍ୟୁ ସମକ୍ଷରେ ସେ ଶକ୍ତିହୀନ ।

ଅବଶ୍ୟ ମୃତ୍ୟୁର ଦାସ କେବଳ ମନୁଷ୍ୟ । ଇନ୍ଦ୍ର କିନ୍ତୁ ମୃତ୍ୟୁର ଦାସ ନୁହନ୍ତି । ଦଶମ ମଣ୍ଡଳର ୪୮ତମ ସୂକ୍ତରେ ଇନ୍ଦ୍ର କହୁଛନ୍ତି - ''ମୃତ୍ୟୁ ନିକଟରେ ମୁଁ କେବେ ମୁଣ୍ଡ ନୁଆଇଁ ନାହିଁ ।''

ପ୍ରଥମୋକ୍ତ ସୂକ୍ତରେ ରାଜା କୁରୁଶ୍ରବଣଙ୍କର ପିତୃମୃତ୍ୟୁଜନିତ ଶୋକ ପ୍ରକାଶିତ ହୋଇଅଛି । ଦଶମ ମଣ୍ଡଳର ୫୬ତମ ସୂକ୍ତରେ ବୃହଦୁକ୍ଥ ଋଷି ପୁତ୍ର ବାଜିନର ମୃତ୍ୟୁରେ ବ୍ୟଥିତ ହୋଇ ତାଙ୍କୁ ବିଦାୟ ଦେଇ କହୁଅଛନ୍ତି - '' ଏହି ଅଗ୍ନି ତୁମର ଏକ ଅଂଶ, ଆଉ ଏହି ବାୟୁ ତୁମର ଏକ ଅଂଶ । ଆଉ ଗୋଟିଏ ଅଂଶ ହେଉଛି ତୁମର ଜ୍ୟୋତିର୍ମୟ ଆତ୍ମା । ଏହି ତିନି ଅଂଶରେ ତୁମେ ଅଗ୍ନି, ବାୟୁ ଓ ସୂର୍ଯ୍ୟଙ୍କ ମଧ୍ୟରେ ପ୍ରବେଶ କର ।'' ଆଶୀର୍ବାଦ କରିଛନ୍ତି ମୃତ ପୁତ୍ରକୁ, ତାର ବିଭିନ୍ନ ଉପାଦାନ ଏହି ପରି ଅଗ୍ନି, ବାୟୁ ଓ ସୂର୍ଯ୍ୟଙ୍କ ମଧ୍ୟରେ ପ୍ରବେଶ କଲାବେଳେ ସେ ''ସର୍ବମଙ୍ଗଳକର ମୂର୍ତ୍ତି ଧାରଣ କରୁ ଓ ଦେବତାମାନଙ୍କ ମଧ୍ୟରେ ଯେ ସର୍ବଶ୍ରେଷ୍ଠ ସେହି ପିତୃତୁଲ୍ୟ ସୂର୍ଯ୍ୟଙ୍କ ଭୁବନରେ ସେ ପ୍ରିୟ ହେଉ । '' ପୁତ୍ରମୃତ୍ୟୁଜନିତ

ବ୍ୟଥାକୁ ଦୂର କରିବାକୁ ଚେଷ୍ଟା କରିଛନ୍ତି ଋଷି ବୃହଦୁକ୍ଥ, ମୃତପୁତ୍ରକୁ ସାନ୍ତ୍ୱନା ଦେଇ , ନିଜକୁ ସାନ୍ତ୍ୱନା ଦେଇ କହିଛନ୍ତି, ''ହେ ବାଜିନ, ପୃଥିବୀ ଗ୍ରହଣ କରିଛନ୍ତି ତୁମର ଶରୀରକୁ, ସେ ଆମକୁ ଆନନ୍ଦ ପ୍ରଦାନ କରନ୍ତୁ, ତୁମର ମଧ୍ୟ ମଙ୍ଗଳ କରନ୍ତୁ । '' ଉପଦେଶ ଦେଇଛନ୍ତି ପୁତ୍ରକୁ, ''ତୁମେ ସ୍ଥାନଚ୍ୟୁତ ନ ହୋଇ ଦୀପ୍ତି ଧାରଣ କରିବା ପାଇଁ ଦେବତାମାନଙ୍କ ସହିତ ଓ ଆକାଶର ସୂର୍ଯ୍ୟଙ୍କ ସହିତ ତୁମର ଆତ୍ମାକୁ ମିଳାଇ ଦିଅ ।'' ଜୀବିତାବସ୍ଥାରେ ତାଙ୍କର ପୁତ୍ର ବାଜିନ ଥିଲା ବଳବାନ୍ ଓ ସୁଶୋଭନ-ରୂପ, ଥିଲା ଏକାନ୍ତ ଧର୍ମପରାୟଣ, ଦେବତାମାନଙ୍କୁ ସ୍ତୁତି କରୁଥିଲା । ଋଷି କାମନା କରୁଛନ୍ତି, ମୃତ୍ୟୁ ପରେ ବାଜିନ ସେହିପରି ଉତ୍ତମ ସ୍ୱର୍ଗକୁ ଯାଉ । ଧର୍ମ ଉତ୍ତମରୂପେ ସେ ପାଳନ କରିଛି, ସେଥିର ଯୋଗ୍ୟ ଉତ୍ତମ ଫଳ ଲାଭ କରୁ । ଧର୍ମକାର୍ଯ୍ୟର ସଫଳତା ବିଷୟରେ ଋଷି ଅସନ୍ଦିଗ୍ଧ । ତାଙ୍କର ପିତୃପୁରୁଷଗଣ ଧର୍ମକାର୍ଯ୍ୟ କରି ମୃତ୍ୟୁ ପରେ ମହିମାନ୍ୱିତ ହୋଇଛନ୍ତି, ଜ୍ୟୋତିର୍ମୟ ହୋଇଛନ୍ତି, ଦେବଗଣଙ୍କ ସହିତ ଏକାକାର ହୋଇଯାଇଛନ୍ତି, ସାରା ବ୍ରହ୍ମାଣ୍ଡ ବିଚରଣ କରିଛନ୍ତି, ସମଗ୍ର ଭୁବନ ସ୍ୱନିୟନ୍ତ୍ରଣାଧୀନ କରିଛନ୍ତି, ଜନଗଣଙ୍କ ଉପରେ ଅପ୍ରତିହତ ପ୍ରଭାବ ବିସ୍ତାର କରିଛନ୍ତି । ସୂର୍ଯ୍ୟଙ୍କର ପୁତ୍ରତୁଲ୍ୟ ଦେବତାଗଣ ଯେପରି ସୂର୍ଯ୍ୟଙ୍କୁ ଉଦୟାଚଳ ଓ ଅସ୍ତାଚଳରେ ସ୍ଥାପିତ କରିଥିଲେ, ସେହିପରି ଋଷିଙ୍କର ପିତୃପୁରୁଷଗଣ ସନ୍ତାନସନ୍ତତିଙ୍କଠାରେ ସ୍ୱକୀୟ ଶକ୍ତି ନିହିତ କରି ଏକ ଚିରସ୍ଥାୟୀ ବଂଶ ସୃଷ୍ଟି କଲେ ।

ଉପସଂହାର ରୂପେ ସୂକ୍ତଟିର ଶେଷ ଋକ୍‌ରେ କୁହାଯାଇଛି-ଯେପରି ନୌକା ସାହାଯ୍ୟରେ ମନୁଷ୍ୟ ଜଳ ଅତିକ୍ରମ କରେ, ଯେପରି ଯାନାଦି ଦ୍ୱାରା ସ୍ଥଳ ଅତିକ୍ରମ କରେ, ସ୍ୱସ୍ତି ଦ୍ୱାରା ବିପଦରୁ ଉଦ୍ଧାର ଲାଭ କରେ, ସେହିପରି ଋଷି ବୃହଦୁକ୍ଥ ନିଜର ଆଧ୍ୟାତ୍ମିକ ଶକ୍ତି ବଳରେ ମୃତ ପୁତ୍ର ବାଜିନକୁ ପୃଥିବୀର ଅଗ୍ନି, ବାୟୁ ପ୍ରଭୃତି ସହିତ ଓ ସ୍ୱର୍ଗର ସୂର୍ଯ୍ୟଙ୍କ ସହିତ ମିଳାଇ ଦେଲେ ।

ତାର ପରବର୍ତ୍ତୀ ସୂକ୍ତଟିର (୫୭) ପ୍ରଥମ ଦୁଇଟି ଋକ୍‌ରେ ସ୍ତୋତା ମାନଙ୍କର ଆଶଙ୍କା ପ୍ରକାଶିତ ହୋଇଛି - କାଳେ ସେମାନେ ବିପଥକୁ ଚାଲି ଯିବେ, ସୋମ ଯଜ୍ଞରୁ ବିରତ ହୋଇଯିବେ, ଶତ୍ରୁଗଣ କାଳେ ଆକ୍ରମଣ କରିବେ । ବ୍ୟାକୁଳ ହୋଇ ପ୍ରଥମେ ବନ୍ଧୁ, ଶ୍ରୁତବନ୍ଧୁ ଓ ବିପ୍ରବନ୍ଧୁ ଋଷିଗଣ ପ୍ରାର୍ଥନା କରିଛନ୍ତି ଇନ୍ଦ୍ରଙ୍କୁ, ଯେପରି ବିପଦ ନ ପଡେ । ପୁଣି ପ୍ରାର୍ଥନା କରିଛନ୍ତି ''ଏଇ ଯେଉଁ ଅଗ୍ନି, ଯାହାଙ୍କ ଯୋଗୁଁ ଯଜ୍ଞରେ ସିଦ୍ଧି ଲାଭ ହୁଏ, ଯେ ପୁତ୍ରତୁଲ୍ୟ ହୋଇ ଦେବତାମାନଙ୍କ ପର୍ଯ୍ୟନ୍ତ ବିସ୍ତୃତ ହୋଇଯାଆନ୍ତି (ଅର୍ଥାତ ମନୁଷ୍ୟ ଓ ଦୂର ଦେବତାଗଣଙ୍କ ମଧ୍ୟରେ ମାଧ୍ୟମର କାର୍ଯ୍ୟ କରନ୍ତି, ସମ୍ପର୍କ ସ୍ଥାପନ କରନ୍ତି), ଆମେ ଯେପରି ତାଙ୍କୁ ଲାଭ କରୁ ।'' କିନ୍ତୁ ତୃତୀୟ ଋକ୍‌ରେ ମନକୁ ଆହ୍ୱାନ କରିଛନ୍ତି - ନାରାଶଂସ ସୋମ ଦ୍ୱାରା ଓ ପିତୃପୁରୁଷଙ୍କର ସ୍ତବ ଦ୍ୱାରା - ମୃତ୍ୟୁ ରାଜ୍ୟରୁ ଫେରି ଆସିବାକୁ ପୁଣି ଶରୀର ଭିତରକୁ । ଯେ ସ୍ତୋତାମାନଙ୍କର ମୃତ ଭ୍ରାତା ସୁବନ୍ଧୁଙ୍କ ମନ ବା ଆତ୍ମା । ତାଙ୍କୁ ଉଦ୍ଦେଶ୍ୟ କରି ଗାଇଛନ୍ତି, ''ତୁମର ମନ ପୁଣି ଫେରିଆସୁ । ଫେରିଆସି ତୁମେ (ତୁମର) କାର୍ଯ୍ୟ କର, ଶକ୍ତି ପ୍ରକାଶ କର, ପୁଣି ଜୀବନ ଲାଭ କର ଓ ସୂର୍ଯ୍ୟଙ୍କୁ ଦର୍ଶନକର । '' ପିତୃ ପୁରୁଷଙ୍କ ଶକ୍ତି ଓ ଦୟା

ଉପରେ ଶ୍ରୋତାଗଣଙ୍କର ବିଶ୍ୱାସ ଅଛି । ସେମାନେ କହୁଛନ୍ତି, ''ପୁଣି ଆମର ପିତୃପୁରୁଷମାନେ ମନକୁ ଫେରାଇ ଦିଅନ୍ତୁ । ଦେବଲୋକଗଣ ଫେରାଇ ଦିଅନ୍ତୁ, ଆମେ ଯେପରି ପ୍ରାଣ ଓ ତାହା ସହିତ ସଂପୃକ୍ତ ସବୁ ପୁଣି ଲାଭ କରୁ । '' ଯେ କେବଳ ଭ୍ରାତା ସୁବନ୍ଧୁର ପୁନର୍ଜୀବନ କାମନା ନୁହେଁ, ଶ୍ରୋତାମାନଙ୍କର ନିଜର ଦୀର୍ଘ ଜୀବନ କାମନା । ଶେଷ ଋକ୍‌ରେ ପ୍ରାର୍ଥନା କରିଛନ୍ତି, ''ହେ ସୋମ, ଆମେ ଯେପରି ଆମ ଦେହ ମଧ୍ୟରେ ମନକୁ ଧାରଣ କରୁ, ଆମେ ଯେପରି ସନ୍ତାନସନ୍ତତି ଲାଭ କରି ସେମାନଙ୍କ ସହିତ ତୁମରି କାର୍ଯ୍ୟରେ ଯୋଗ ଦେଉ ।''

ମୃତ୍ୟୁରୁ ଜୀବନକୁ ପୁଣି ଫେରାଇ ଆଣିବାର ଆଶା ଓ ବିଶ୍ୱାସ ସତରେ ଶ୍ରୋତାମାନଙ୍କର ଥିଲା ନା ଯେ ଏକ ଚରମ ନୈରାଶ୍ୟ ମଧ୍ୟରେ ସାନ୍ତ୍ୱନାଦାୟକ କଳ୍ପନା ମାତ୍ର ! କାରଣ ମୃତବ୍ୟକ୍ତିର ଆତ୍ମା କେଉଁଆଡେ ଯାଏ ସେ ବିଷୟରେ ଅନିଶ୍ଚିତତା ପ୍ରକାଶ ପାଇଛି ସେହି ବନ୍ଧୁ, ଶ୍ରୁତବନ୍ଧୁ ଓ ବିପ୍ରବନ୍ଧୁଙ୍କ ରଚିତ ପରବର୍ତ୍ତୀ (୫୮ତମ) ସୂକ୍ତରେ । କିନ୍ତୁ ପୁଣି ସେଥିରେ ପ୍ରତ୍ୟେକ ଋକ୍‌ରେ ମୃତ ଭ୍ରାତା ସୁବନ୍ଧୁଙ୍କ ଉଦ୍ଦେଶ୍ୟରେ କୁହାଯାଇଛି - ''ତାକୁ (ତୁମର ସେହି ମନକୁ) ଆମେ ଫେରାଇ ଆଣୁଛୁ ।'' ମନ କୁଆଡେ ଯାଏ - 'ମନ' ଶବ୍ଦ 'ଆତ୍ମା' ଅର୍ଥରେ ପ୍ରୟୋଗ କରା ହୋଇଅଛି - ଶ୍ରୋତା ଋଷିଗଣ ଭ୍ରାତା ସୁବନ୍ଧୁଙ୍କର ମୃତ୍ୟୁରେ ପ୍ରଶ୍ନ କରୁଛନ୍ତି । ବିଭିନ୍ନ ସମ୍ଭାବନା ସେମାନଙ୍କ ମନକୁ ଆସୁଛି, କହୁଛନ୍ତି - ''ତୁମର ଯେଉଁ ମନ ବହୁଦୂରକୁ ବିବସ୍ୱାନ୍‌ଙ୍କ ପୁତ୍ର ଯମଙ୍କ ନିକଟକୁ ଯାଇଛି, ତାହାକୁ ଆମେ ଫେରାଇ ଆଣୁଛୁ । ତୁମେ ପୁଣି ଜୀବନଧାରଣ କରି ଏହି ଜଗତକୁ ଫେରିଆସ, ଏଇଠାରେ ଅବସ୍ଥାନ କର ।'' ପିତୃ ପୁରୁଷଙ୍କ ବାସସ୍ଥଳୀ ସ୍ୱର୍ଗର ପ୍ରଭୁ ଯମ, ଦ୍ୱାରରେ ଅଛନ୍ତି ସୁରକ୍କୁକୁରୀ ସରମା । ପୁଣି ଦ୍ୱିଧାଗ୍ରସ୍ତ ମନରେ ଋଷିଗଣ କହୁଅଛନ୍ତି - '' ତୁମର ଯେଉଁ ମନ ବହୁଦୂରକୁ, ସ୍ୱର୍ଗକୁ ବା ପୃଥିବୀକୁ ଚାଲିଯାଇଛି (ପୃଥିବୀରେ ମିଶିଯାଇଛି), ତାକୁ ଆମେ ଫେରାଇ ଆଣୁଛୁ, ତୁମେ ପୁଣି ଜୀବନ ଧାରଣ କରି ଏହି ଜଗତକୁ ଫେରିଆସ, ଏଇଠାରେ ଅବସ୍ଥାନ କର । '' ପୁଣି ଭାବୁଛନ୍ତି, ସ୍ୱର୍ଗ ନୁହେଁ କି ପୃଥିବୀ ନୁହେଁ, ସୁବନ୍ଧୁଙ୍କ ମନ ଯାଇଛି ଅତି ଦୂର ଏକ ଦେଶକୁ, ସେ ଦେଶ ଯେପରି ଚାରିଆଡେ ଭାଜି ଭାଜି ପଡୁଛି, ଖସି ପଡୁଛି; କହୁଛନ୍ତି, ''ତୁମର ସେଇ ମନକୁ ଆମେ ଫେରାଇ ଆଣୁଛୁ ।'' ପୁଣି କହୁଛନ୍ତି ''ତୁମେ ଜୀବନଧାରଣ କରି ପୁଣି ଏହି ଜଗତକୁ ଫେରିଆସ । ଏଇଠାରେ ଅବସ୍ଥାନ କର ।'' ଏହିପରି ପ୍ରତି ସୂକ୍ତରେ ଋଷିଭ୍ରାତାଗଣ କଳ୍ପନା କରୁଛନ୍ତି ଦ୍ୱନ୍ଦ୍ୱାକୁଳ ଚିତ୍ତରେ, ଭ୍ରାତା ସୁବନ୍ଧୁଙ୍କ ମନ ବା ଆତ୍ମା କେଉଁ ଆଡେ ଯାଇଥିବ - ''ଚତୁର୍ଦ୍ଦିଗର ବହୁଦୂରସ୍ଥ କୌଣସି ଅଞ୍ଚଳକୁ,'' କିମ୍ବା ''ବହୁଦୂରବର୍ତ୍ତୀ ଜଳମୟ ସାଗର ମଧ୍ୟକୁ,'' କିମ୍ବା ''ଚତୁର୍ଦ୍ଦିଗରେ ବିଚ୍ଛୁରିତ କିରଣ ମଣ୍ଡଳୀକୁ,'' କିମ୍ବା ''ସୁଦୂର ଜଳମଧ୍ୟକୁ'' କିମ୍ବା ''ବୃକ୍ଷଲତା ମଧ୍ୟକୁ'' କିମ୍ବା ''ଅତିଦୂରବର୍ତ୍ତୀ ସୂର୍ଯ୍ୟ ବା ଉଷାଙ୍କ ଭିତରକୁ'' କିମ୍ବା ''ଦୂରଦୂରାନ୍ତର ପର୍ବତମାଳା ଉପରକୁ'' କିମ୍ବା ''ଏହି ବିଶ୍ୱର କୌଣସି ସୁଦୂର ସ୍ଥାନକୁ'' କିମ୍ବା ''ଦୂରଦୂରାନ୍ତରକୁ - ତାଠାରୁ ଆହୁରି ଦୂରକୁ'' ସୁବନ୍ଧୁର ଆତ୍ମା ଚାଲିଯାଇଛି । ଶେଷକୁ, କିନ୍ତୁ ସ୍ଥାନ ନୁହେଁ - ଋଷି ଭ୍ରାତାଗଣ କଳ୍ପନା କରୁଛନ୍ତି- କେଉଁ ସୁଦୂର କାଳକୁ - ସୁଦୂର ଅତୀତକୁ ବା ସୁଦୂର ଭବିଷ୍ୟତ୍‌କୁ ଚାଲିଯାଇଛି ସୁବନ୍ଧୁଙ୍କର ମନ । କିନ୍ତୁ

ସ୍ତୋତାଗଣ ତଥାପି କହୁଛନ୍ତି ପ୍ରତି ଋକ୍‌ରେ - ''ସେହି ମନକୁ ଆମେ ସେଠାରୁ ଫେରାଇ ଆଣୁନ୍ତୁ । ତୁମେ ଜୀବନଧାରଣ କରି ପୁଣି ଏ ଜଗତକୁ ଫେରିଆସ, ଏହି ଜଗତରେ ଅବସ୍ଥାନ କର । '' ଭାବିପାରୁନାହାନ୍ତି ଋଷିଭ୍ରାତାଗଣ ସେମାନଙ୍କର ଭ୍ରାତା ସୁବନ୍ଧୁର ମନ ବା ଆତ୍ମା କେଉଁଆଡେ ଯାଇଛି । କିନ୍ତୁ ତଥାପି ଆପାତତଃ ବିଶ୍ୱାସର ସହିତ ବାରମ୍ବାର କହୁଅଛନ୍ତି - ''ତତ୍ର ଆ ବର୍ତ୍ତୟାମସୀହ କ୍ଷୟାୟ ଜୀବସେ'' -''ତୁମେ ଜୀବନଧାରଣ କରି ଏହି ଜଗତକୁ ଆସି ବାସ କର ।'' ଯେ କ'ଣ ସତ୍ୟ ଆତ୍ମ ବିଶ୍ୱାସ ? ମୃତ ସୁବନ୍ଧୁଙ୍କୁ ଜୀବନକୁ ଫେରାଇ ଆଣିବା କଣ ସତରେ ସମ୍ଭବ ହୋଇଛି , ନା, ଏହା କେବଳ ଏକ ସାନ୍ତ୍ୱନାଦାୟକ ଅଳୀକ କଳ୍ପନା ମାତ୍ର ! କାରଣ ପୂର୍ବବର୍ତ୍ତୀ ୩୩ତମ ସୂକ୍ତରେ ଋଷି କବଷ ରାଜା କୁରୁଶ୍ରବଣଙ୍କୁ କହୁଛନ୍ତି ଯେ ଏକ ଶତ ଆତ୍ମା ବା ପ୍ରାଣ ଥିଲେ ମଧ୍ୟ ଦେବତାମାନଙ୍କର ଇଚ୍ଛାର ବ୍ୟତିକ୍ରମ କରି କେହି ବଞ୍ଚିପାରେ ନାହିଁ ।

କିନ୍ତୁ ପରବର୍ତ୍ତୀ (୫୯) ସୂକ୍ତରେ ପୁଣି ସୁବନ୍ଧୁଙ୍କ ଉଲ୍ଲେଖ ଅଛି । ଯେପରି ସେ ଫେରି ଆସିଛନ୍ତି ଜୀବନକୁ । ଋଷିଭ୍ରାତାଗଣ କହୁଛନ୍ତି, ''ସୁବନ୍ଧୁଙ୍କ ପରମାୟୁ ନୂତନ ସୁନ୍ଦର ରୂପ ପ୍ରାପ୍ତ ହୋଇ ବୃଦ୍ଧି ଲାଭ କରୁ ।'' ଶରୀରକୁ ଯେପରି ରଥ ସହିତ ତୁଳନା କରା ହୋଇଅଛି । ସୁବନ୍ଧୁଙ୍କ ଭ୍ରାତାଗଣ କହୁଅଛନ୍ତି ''ରଥଚାଳକ ସାରଥି ଯଦି କୁଶଳୀ ହୋଇଥାନ୍ତି, ତା'ହେଲେ ରଥୋପରି ଉପବିଷ୍ଟ ବ୍ୟକ୍ତି ସ୍ୱଚ୍ଛନ୍ଦ ଅନୁଭବ କରନ୍ତି । ସୁବନ୍ଧୁ ସେହିପରି ସୁଖ ସ୍ୱାଚ୍ଛନ୍ଦ୍ୟ ଅନୁଭବ କରନ୍ତୁ ।'' ମନୁଷ୍ୟ ଚିରକାଳ ଦୀର୍ଘ ଜୀବନ କାମନା କରିଆସିଛି, ତାହାହିଁ ବ୍ୟକ୍ତ ହୋଇଛି ଏହି ପ୍ରଥମ ଋକ୍‌ର ଶେଷାଂଶରେ, ''ଯାହାର ପରମାୟୁ କମି କମି ଯାଉଛି, ସେ ନିଜର ପରମାୟୁର ବୃଦ୍ଧି କାମନା କରେ ।''

ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଋକ୍‌ମାନଙ୍କର ଶେଷାଂଶରେ ଘୋଷାପରି ରହିଛି - ''ନିର୍ଋତି ବହୁଦୂରକୁ ଚାଲିଯାଆନ୍ତୁ ।'' ନିର୍ଋତି ପାପ ଦେବତା ରୂପେ ଅନ୍ୟ କେତେକ ସୂକ୍ତରେ ପରିଚିତ । ଏ କ୍ଷେତ୍ରରେ ମନେ ହୁଏ ନିର୍ଋତି ଆଉ କେହି ନୁହନ୍ତି - ନିଜେ ମୃତ୍ୟୁ ଦେବତା । ଋଷିଭ୍ରାତାଗଣ ବାରମ୍ବାର କାମନା ପ୍ରକାଶ କରିଛନ୍ତି, ମୃତ୍ୟୁ ଦେବତା ବହୁ ଦୂରକୁ ଅପସରି ଯାଆନ୍ତୁ । ପରବର୍ତ୍ତୀ ଋକ୍‌ମାନଙ୍କରେ ନିର୍ଋତିଙ୍କୁ ପ୍ରାର୍ଥନା କରାଯାଇଛି ଦୀର୍ଘ ପରମାୟୁ ପାଇଁ, ଶତ୍ରୁଙ୍କୁ ପରାହତ କରିବା ପାଇଁ । ପ୍ରଦତ୍ତ ଭୋଜ୍ୟରେ ତୃପ୍ତ ହୋଇ ଯଥାଯଥ ଉଚ୍ଚାରିତ ସ୍ତବରେ, ସାମଗାନରେ ତୃପ୍ତ ହୋଇ ସେ ଚାଲିଯାଆନ୍ତୁ ବହୁ ଦୂରକୁ । ଚତୁର୍ଥ ଋକ୍‌ରେ ସୋମଙ୍କୁ ବ୍ୟାକୁଳ ଭାବରେ ପ୍ରାର୍ଥନା କରାଯାଇଛି, ''ଆମକୁ ମୃତ୍ୟୁ ହାତରେ ଦେଇ ଦିଅ ନାହିଁ, ଆମେ ଯେପରି ସଦା ସୂର୍ଯ୍ୟୋଦୟ ଦେଖିପାରୁ । ବାର୍ଦ୍ଧକ୍ୟରେ ଯେପରି ଆମେ ସୁଖ ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରିପାରୁ । ନିର୍ଋତି ଦୂରକୁ, ବହୁଦୂରକୁ ଚାଲିଯାଆନ୍ତୁ ।'' ପଞ୍ଚମ ଋକ୍‌ରେ ଅସୁନୀତିଙ୍କୁ ପ୍ରାର୍ଥନା କରାଯାଇଛି । ଅସୁନୀତି କିଏ ? ସାୟଣ କହୁଛନ୍ତି, ସେ ହେଉଛନ୍ତି, ଯେ ମନୁଷ୍ୟର ପ୍ରାଣକୁ ନେଇ ଚାଲି ଯାଆନ୍ତି । ଅଧ୍ୟାପକ ରଥ୍ (Roth) କହନ୍ତି, ଅସୁନୀତି ଯମଙ୍କର ଏକ ନାମ । ମାକ୍ସମୁଲର୍‌ଙ୍କ (Maxmuller) ମତରେ ଭଗବାନ୍‌ଙ୍କର ଏହା ଆଉ ଏକ ନାମ । ସେହି ଅସୁନୀତିଙ୍କୁ ପ୍ରାର୍ଥନା କରାହୋଇଛି ଦୀର୍ଘ ପରମାୟୁ ଦେବାକୁ,

ସୂର୍ଯ୍ୟକିରଣ ଯେତେ ଦୂର ପରିବ୍ୟାପ୍ତ, ସେତେଦୂର ବ୍ୟାପୀ ବିଶ୍ୱରେ ଦୀର୍ଘ କାଳ ବଞ୍ଚି ରହିବାର ଆଶୀର୍ବାଦ ଦେବାକୁ । ଷଷ୍ଠ ଋକ୍‌ରେ ପୁଣି ଯେପରି ପୁନର୍ଜୀବନ କାମନା ପ୍ରକାଶ ପାଉଛି । ଯେ ଯେପରି ମୃତଙ୍କର ଜୀବନକୁ ଫେରି ଆସିବାର କାମନା । ପ୍ରାର୍ଥନା କରାହୋଇଛି ଅସୁନୀତିଙ୍କୁ, ''ଆମକୁ ପୁଣି ଦୃଷ୍ଟିଦାନ କର, ପୁଣି ଆମର ପ୍ରାଣକୁ ଆମ ନିକଟକୁ ନେଇ ଆସ, ପୁଣି ଆମକୁ ଭୋଗ କରିବାକୁ ଦିଅ । ଆମେ ଯେପରି ଚିରକାଳ ସୂର୍ଯ୍ୟୋଦୟ ଦେଖିବାକୁ ପାଉ ।'' ଅସତୋ ମା ସଦ୍‌ଗମୟ । ମୃତ୍ୟୋର୍ମା ଅମୃତଂ ଗମୟ । ତମସୋ ମା ଜ୍ୟୋତିର୍ଗମୟ । ଉପନିଷଦ୍‌ର ଏହି ପ୍ରାର୍ଥନାର କଣ ଏହା ଏକ ପୂର୍ବାଭାସ ! ସେହି ସୂକ୍ତରେ ପୁଣି ଅନୁମତିକୁ ପ୍ରାର୍ଥନା କରାଯାଇଅଛି । କିଏ ଏହି ଅନୁମତି ! ଯେ କଣ ଅସୁନୀତିଙ୍କର ଅନ୍ୟ ଏକ ନାମ, କି ଯେ ହେଉଛନ୍ତି ଜନ୍ମର କାରଣରୂପିଣୀ, ସଦ୍‌ରୂପିଣୀ ଦେବୀ ? ପ୍ରାର୍ଥନା କରାହୋଇଛି ତାଙ୍କୁ ବିନାଶର, ମୃତ୍ୟୁର ସମ୍ଭାବନା ଦୂର କରିବାକୁ, ସୁଖ ଦାନ କରିବାକୁ । ସପ୍ତମ ଋକ୍‌ରେ ପୁଣି ପ୍ରାର୍ଥନା କରାହୋଇଛି - ''ପୃଥିବୀ ଆମକୁ ପ୍ରାଣ ଦାନ କରନ୍ତୁ । ପୁନର୍ବାର ଦ୍ୟୁଲୋକଦେବୀ ଓ ଅନ୍ତରୀକ୍ଷ ଆମକୁ ପ୍ରାଣ ଦାନ କରନ୍ତୁ, ସୋମ ପୁଣି ଆମକୁ ଶରୀର ଦାନ କରନ୍ତୁ, ଆଉ ପୁଣି ପୂଷା ଆମକୁ ଏପରି ମଙ୍ଗଳମୟ ବାକ୍ୟ ପ୍ରଦାନ କରନ୍ତୁ, ଯାହା ଯୋଗୁଁ ଆମର ହିତସାଧନ ହେବ ।'' କିନ୍ତୁ ନିଜ ଦୀର୍ଘ ଜୀବନ ପାଇଁ, ପୁନର୍ଜୀବନ ପାଇଁ ଏହି ପ୍ରାର୍ଥନା ପରେ ପରେ ସୁବନ୍ଧୁର ପୁନର୍ଜୀବନ ପାଇଁ ପ୍ରାର୍ଥନା କରାହୋଇଛି-''ଯଜ୍ଞକର୍ମାଦିର ମାତୃତୁଲ୍ୟ ମହଦ୍ ଦ୍ୟାବା ପୃଥିବୀ ସୁବନ୍ଧୁର କଲ୍ୟାଣ କରନ୍ତୁ । ଦ୍ୟୁଲୋକ ଓ ପୃଥିବୀ ସୁବନ୍ଧୁର ସମସ୍ତ ଅନିଷ୍ଟ ଦୂର କରିଦିଅନ୍ତୁ । ସ୍ୱର୍ଗରେ ଅଛି ଦୁଇ ତିନୋଟି ଔଷଧ, ପୃଥିବୀରେ ଅଛି ଗୋଟିଏ ଔଷଧ । ସେ ସମସ୍ତ ସୁବୁଦ୍ଧିର ଉପକାରରେ ଆସୁ ।'' ''ଦ୍ୟୁଲୋକ ଓ ସୁବିସ୍ତୀର୍ଣ୍ଣା ପୃଥିବୀ ସୁବନ୍ଧୁର ମଙ୍ଗଳ କରନ୍ତୁ,'' ଏହା ଶେଷ ତିନୋଟି ଋକ୍‌ରେ ବାରମ୍ବାର କଥିତ ହେଉଅଛି । ସର୍ବଶେଷ ଋକ୍‌ରେ ଇନ୍ଦ୍ରଙ୍କୁ ପ୍ରାର୍ଥନା କରାହୋଇଛି ''ଯେଉଁ ବୃଷ ଉଶୀନର ଦ୍ୱାର ଶକଟ ବହନ କରିଥିଲା ସେହି ବୃଷକୁ ପଠାନ୍ତୁ । '' ଅର୍ଥ ସ୍ପଷ୍ଟ ହେଉନାହିଁ, ଯେ ବୃଷ କଣ ମୃତ୍ୟୁ ଅତିକ୍ରମକାରୀ ଶକଟର୍ ବାହକ ?

ପରବର୍ତ୍ତୀ ସୂକ୍ତ (୬୦)ରେ ପୁଣି ୭ମରୁ ୧୧ଶ ଋକ୍ ପର୍ଯ୍ୟନ୍ତ ସୁବନ୍ଧୁର ପୁନର୍ଜୀବନ ଲାଭର ସମ୍ଭାବନା କଥିତ ହୋଇଅଛି । ଅଗ୍ନି ଆସିଛନ୍ତି । ସ୍ତୋତା କହୁଅଛନ୍ତି - ''ଏହି ଯେଉଁ ଅଗ୍ନି ଆସିଅଛନ୍ତି, ଯେ ମାତୃତୁଲ୍ୟ, ପିତୃତୁଲ୍ୟ, ଯେ ପୁଣି ପ୍ରାଣ ଫେରିପାଇବାର ଔଷଧ ତୁଲ୍ୟ । ହେ ସୁବନ୍ଧୁ, ତୁମର ଏହି ଶରୀର ଅଛି । ତୁମେ ଏଥିମଧ୍ୟକୁ ଆସ, ଏଥିରେ ପ୍ରବେଶ କର ।'' ଅଗ୍ନି ଧାରଣ କରିଅଛନ୍ତି ସୁବନ୍ଧୁର ମନକୁ ବା ଆତ୍ମାକୁ, ଠିକ୍ ଯେପରି ଦଉଡିରେ ଦୁଇଟି କାଠ ରଥରେ ବନ୍ଧା ହୁଏ, ସେହିପରି ବାନ୍ଧିରଖିଛନ୍ତି । ସ୍ତୋତା କହୁଛନ୍ତି - ''ତାରି ଫଳରେ ତୁମେ ଜୀବନ ଲାଭ କରିବ, ତୁମର ସମସ୍ତ ମଙ୍ଗଳ ହେବ । ତୁମର ମୃତ୍ୟୁ ଅବସ୍ଥା ଦୂର ହୋଇଯିବ । ଅଗ୍ନିହିଁ ଜୀବନର ଧାରଣକର୍ତ୍ତା ।'' ଏଠାରେ ଜୀବନକୁ ମନ ଆଖ୍ୟା ଦିଆ ହୋଇଛି । ପୁଣି କୁହାହେଇଛି, ''ଯେପରି ଏହି ସୁବିସ୍ତୃତ ପୃଥିବୀ ବିରାଟ ବୃକ୍ଷମାନଙ୍କୁ ଧାରଣ କରିଅଛନ୍ତି ସେହିପରି ଏହି ଅଗ୍ନି ଧାରଣ କରିଛନ୍ତି ତୁମର ମନକୁ, ତୁମର ମୃତ୍ୟୁ

ଅବସ୍ଥା ଦୂର ହୋଇଯିବ ।'' ପରବର୍ତ୍ତୀ ଋକ୍‌ରେ ଅଗ୍ନି ଯେପରି ନିଜେ କହୁଅଛନ୍ତି - ''ବିବସ୍ୱାନ୍‌ଙ୍କ ପୁତ୍ର(ମୃତ୍ୟୁ ରାଜ୍ୟର ଅଧିଷ୍ଠାତା ଦେବତା) ଯମଙ୍କ ନିକଟ‌ରୁ ମୁଁ ସୁବନ୍ଧୁର ମନକୁ ନେଇ ଆସୁଛି । ଫଳରେ ସୁବନ୍ଧୁ ପୁଣି ଜୀବିତାବସ୍ଥାକୁ ଫେରି ଆସିବ । ତାର ସମସ୍ତ ପ୍ରକାର ମଙ୍ଗଳ ହେବ । ମୃତ୍ୟୁ ଅବସ୍ଥା ଦୂର ହୋଇଯିବ ।'' ପୁଣି ପରବର୍ତ୍ତୀ ସୂକ୍ତ ଦୁଇଟିରେ ସୁବନ୍ଧୁଙ୍କୁ ସମ୍ବୋଧନ କରି ଅଗ୍ନି କହୁଅଛନ୍ତି - ''ବାୟୁ ତଳକୁ ବାହି ନିଏ । ସୂର୍ଯ୍ୟ ଉପରୁ ତଳକୁ ଉତ୍ତାପ ଦିଅନ୍ତି । ଗାଈର ଦୁଧ ତଳକୁ ଦୁହାଁଯାଏ । ସେହିପରି, ହେ ସୁବନ୍ଧୁ ! ତୁମର ଅମଙ୍ଗଳ ତଳକୁ ଚାଲିଯାଉ ।'' ତାପରେ ଯେପରି ନିଜକୁ ଅଭିନନ୍ଦିତ କରି ଅଗ୍ନି କହୁଛନ୍ତି - ''ମୋର ହାତ କି ସୌଭାଗ୍ୟଶାଳୀ । ଏହା ସମସ୍ତଙ୍କ ପାଇଁ ଔଷଧତୁଲ୍ୟ, ଏହାର ସ୍ପର୍ଶ ମଙ୍ଗଳକର ।'' ଅଗ୍ନିଙ୍କର ଯେପରି ଅଛି ମୃତସଂଜୀବନୀ ଶକ୍ତି ।

ଦଶମ ମଣ୍ଡଳର ଅନ୍ୟ ଏକ ସୂକ୍ତରେ ଅଗ୍ନିଙ୍କୁ ସମ୍ବୋଧନ କରି କୁହାହୋଇଛି, ''ହେ ମହାନ୍ ଅଗ୍ନି । ଯେଉଁ ବ୍ୟକ୍ତି ଯମଙ୍କର ପ୍ରସନ୍ନତା ଲାଭ କରିଛି, ସାବଧାନ ହୋଇ ତାକୁ ରକ୍ଷାକର ।''

ଅଗ୍ନିଙ୍କର ମୃତ୍ୟୁରୁ ତ୍ରାଣକାରିଣୀ ଶକ୍ତି, ଯଜ୍ଞାନୁଷ୍ଠାନର ପାବନୀ ଅମରତ୍ୱ ଦାୟିନୀ ଶକ୍ତି ଆଉ ଗୋଟିଏ ସୂକ୍ତରେ ପ୍ରଶ୍ନୋତ୍ତର ମାଧ୍ୟମରେ ସୂଚିତ ହୋଇଅଛି । ପ୍ରଶ୍ନ କରା ହୋଇଅଛି - ''ଦେବଗଣଙ୍କ ମଧ୍ୟରୁ କାହାକୁ ମୃତ୍ୟୁ ସଦନକୁ ପଠାଯାଏ ? ପ୍ରଜାମାନଙ୍କ ମଧ୍ୟରୁ କାହାକୁ ଅମୃତତୁଲ୍ୟ କରାଯାଏ ?'' ଉତ୍ତରରେ କୁହାହୋଇଛି - ''ଯଜ୍ଞକର୍ତ୍ତାମାନେ ମନ୍ତ୍ରଦ୍ୱାରା ପବିତ୍ର ଯଜ୍ଞର ଅନୁଷ୍ଠାନ କରନ୍ତି । ସେଥିପାଇଁ ଯମ ଆମ୍ଭମାନଙ୍କ ଶରୀରକୁ ଛାଡି ଦିଅନ୍ତି, ଧ୍ୱଂସ କରନ୍ତି ନାହିଁ ।''

ମୃତ୍ୟୁପରର ଅବସ୍ଥା, ପ୍ରେତର ଅବସ୍ଥା ସୂଚିତ ହୋଇଅଛି ୧୫୪ ତମ ସୂକ୍ତରେ । ପୁରାଣମାନଙ୍କରେ ଯମଙ୍କୁ ଦଣ୍ଡଦାତାରୂପେ ବର୍ଣ୍ଣନା କରାହୋଇଅଛି । କିନ୍ତୁ ବେଦରେ ଯମ ସ୍ୱର୍ଗସୁଖଦାୟକ ରୂପେ ଚିତ୍ରିତ ହୋଇଅଛନ୍ତି ।

ଏହି ସୂକ୍ତରେ ମୃତଙ୍କ ଉଦ୍ଦେଶ୍ୟରେ କୁହାଯାଇଛି -''କୌଣସି କୌଣସି ପ୍ରେତଙ୍କ ପାଇଁ ସୋମରସ କ୍ଷରିତ ହୋଇଥାଏ, କେହି ବା ଘୃତ ପାନ କରିଥାନ୍ତି । ହେ ପ୍ରେତ, ଯେଉଁମାନଙ୍କ ପାଇଁ ମଧୁଧାରା ପ୍ରବାହିତ ହୁଏ, ତୁମେ ସେମାନଙ୍କ ନିକଟରୁ ଯାଅ । ଯେଉଁମାନେ ତପଃଶକ୍ତି ବଳରେ ପରମପ୍ରତାପୀ ହୋଇଥିଲେ, ସ୍ୱର୍ଗଲାଭ କରିଥିଲେ, ହେ ପ୍ରେତ, ତୁମେ ତାଙ୍କ ନିକଟକୁ ଯାଅ ।'' ପରମ୍ପରାଗତ ବୀରତ୍ୱର ଆଦର୍ଶକୁ ଏହି ସୂକ୍ତରେ ଉଚ୍ଚସ୍ଥାନ ଦିଆ ହୋଇଛି । ''ଯେଉଁମାନେ ସମରକ୍ଷେତ୍ରରେ ସମର କରନ୍ତି, ଶରୀର ପ୍ରତି ଆସକ୍ତି ତ୍ୟାଗ କରନ୍ତି, କିମ୍ବା ଯେଉଁମାନେ ସହସ୍ର ଦକ୍ଷିଣା ଦାନ କରନ୍ତି, ହେ ପ୍ରେତ, ତୁମେ ସେମାନଙ୍କ ନିକଟକୁ ଯାଅ । '' ପ୍ରେତାବସ୍ଥାରେ ପୁଣ୍ୟକର୍ମାମାନଙ୍କର ସାନ୍ନିଧ ପରମ ସୁଖକର ବୋଲି ବର୍ଣ୍ଣିତ କରାହୋଇଅଛି - ''ଯେଉଁ ସକଳ ବ୍ୟକ୍ତି ଜୀବନକାଳରେ ପବିତ୍ର କାର୍ଯ୍ୟ କରି ପୁଣ୍ୟବାନ୍ ହୋଇଛନ୍ତି, ପୁଣ୍ୟ ସ୍ରୋତର ଅଭିବୃଦ୍ଧି ଘଟାଇ ଅଛନ୍ତି, ଯେଉଁମାନେ ତପସ୍ୟା

କରିଅଛନ୍ତି, ହେ ଯମ ! ଏହି ପ୍ରେତ ସେହିମାନଙ୍କ ନକଟକୁ ଯାଉ ।'' ଯମଙ୍କୁ ପୁଣି ପ୍ରାର୍ଥନା କରାହୋଇଛି, ''ଯେଉଁ ଧୀମାନ୍ ବ୍ୟକ୍ତିଗଣ ସହସ୍ର ସହସ୍ର ପ୍ରକାର ପୁଣ୍ୟ କର୍ମର ମାର୍ଗ ଦେଖାଇଅଛନ୍ତି, ଯେଉଁମାନେ (ସ୍ତବ ଓ ପୂଜା ଦ୍ୱାରା) ସୂର୍ଯ୍ୟଙ୍କୁ ପାଳନ ବା ରକ୍ଷା କରିଅଛନ୍ତି, ଯେଉଁମାନେ ତପସ୍ୟାରୁ ଜନ୍ମଲାଭ କରି ସଦା ତପସ୍ୟାରତ ଥିଲେ, ଏହି ପ୍ରେତ ସେହି ଋଷିମାନଙ୍କ ନିକଟକୁ ଯାଉ ।'' ପ୍ରେତ ପ୍ରତି ଉଦ୍ଦିଷ୍ଟ ଏହି ବିଦାୟ ସମ୍ଭାଷଣ ଓ ଯମଙ୍କ ପ୍ରତି ନିବେଦନ ସହିତ ବୃହଦୁକ୍‌ଥ ଋଷିଙ୍କର ମୃତପୁତ୍ର ବାଜିନ ପ୍ରତି ଉଦ୍ଦିଷ୍ଟ ବିଦାୟ ସମ୍ଭାଷଣର (୫୬ ସୂକ୍ତ) ସାମଞ୍ଜସ୍ୟ ରହିଅଛି । ପରବର୍ତ୍ତୀ ଯୁଗର କର୍ମଫଳବାଦର ପାରମ୍ଭିକ ସୂଚନା ଏହି ଦୁଇଟି ସୂକ୍ତରେ ମିଳୁଛି ।

******



# ଋଗ୍‌ବେଦରେ ବିଭକ୍ତ ଚେତନା

ଋଗ୍‌ବେଦରେ ଅଧିକାଂଶ ସୂକ୍ତରେ ଅଗ୍ନି, ଇନ୍ଦ୍ର, ବରୁଣ, ମରୁଦ୍‌ଗଣ, ବିଶ୍ୱେଦେବା, ଉଷା,ଇଳା, ସରସ୍ୱତୀ ପ୍ରଭୃତି ଦେବଦେବୀଗଣଙ୍କର ଉଦାତ୍ତ, ଉଚ୍ଛ୍ୱସିତ, ଆବେଗମୟ ସ୍ତୁତି ପରିଲକ୍ଷିତ ହୁଏ । କିନ୍ତୁ ଏପରି ଅନେକ ସୂକ୍ତ ମଧ ଅଛି ଯହିଁରେ ମାନବିକ ଅନ୍ତର୍ଦ୍ୱନ୍ଦ୍ୱ, ଦ୍ୱିଧା, ବିଭକ୍ତ ଚେତନା ପ୍ରକାଶ ପାଇଅଛି, ବିସ୍ମୟବିମୂଢ଼, ଅଜ୍ଞ ସ୍ତୋତାଙ୍କର ବ୍ୟାକୁଳ ସପ୍ରଶ୍ନ ଦୃଷ୍ଟିକୋଣ ପ୍ରକାଶ ପାଇଅଛି । ସେ ଯେପରି ସୃଷ୍ଟିର ରହସ୍ୟ, ପାପ ପୁଣ୍ୟର ରହସ୍ୟ, ମୃତ୍ୟୁର ରହସ୍ୟ ଭେଦ କରି ପାରୁନାହାନ୍ତି, ଏକ ଶାଶ୍ୱତ ଶକ୍ତିର ସତ୍ତା ଅନୁଭବ କଲେ ମଧ ତାର ସ୍ୱରୂପ, ପରମାତ୍ମାଙ୍କର ଅସ୍ତିତ୍ୱ, ଶକ୍ତିମତ୍ତା ବିଷୟରେ ସନ୍ଦିହାନ ହୋଇ ପଡିଛନ୍ତି । ମାନବିକ 'ଦୋଳାଚଳଚିତ୍ତବୃତ୍ତି' ପ୍ରକାଶ ପାଇଛି । ଏ ପ୍ରକାର ସୂକ୍ତଗୁଡିକରେ ପ୍ରକାଶ ପାଇଛି ଗୀତାର ପ୍ରାରମ୍ଭରେ ଅର୍ଜୁନଙ୍କ ଠାରେ ଲକ୍ଷିତ କ୍ଷୁଦ୍ର ହୃଦୟ ଦୌର୍ବଲ୍ୟ, ସଂଶୟାଚ୍ଛନ୍ନ ଚିତ୍ତ । ସେହି ସଂଶୟ ବିମୋଚନ କରିବାକୁ ନାହାନ୍ତି ଶ୍ରୀ କୃଷ୍ଣଙ୍କ ପରି କେହି । ସ୍ତୋତାଙ୍କର ଅନୁସନ୍ଧିତ୍ସୁ ବିଭକ୍ତଚେତନା ଖୋଜିଛି ଉତ୍ତର, ଅନୁମାନ କରିଛି କିଛି ଉତ୍ତର । କିନ୍ତୁ ସବୁବେଳେ ସେହି ଉତ୍ତରରେ ସେ ସମ୍ପୂର୍ଣ୍ଣ ସନ୍ତୁଷ୍ଟ ହୋଇ ପାରିନାହାନ୍ତି ।

୧ମ ମଣ୍ଡଳର ୧୬୪ତମ ସୂକ୍ତ ଏହିପରି ଏକ ସୂକ୍ତ । ଏହା ଏକ ଅତି ଜଟିଳ, ବହୁ ଅର୍ଥ ବିଶିଷ୍ଟ ସୂକ୍ତ । ନିଜେ ସାୟଣ କହିଛନ୍ତି ଯେ ଏହି ସୂକ୍ତର ପ୍ରତ୍ୟେକ ଋକ୍‌ର ଗୋଟିଏ ଆଧ୍ୟାତ୍ମିକ ଅର୍ଥ ଅଛି । ଯାସ୍କ ଅନେକ କ୍ଷେତ୍ରରେ ସାୟଣଙ୍କ ଠାରୁ ଭିନ୍ନମତ ପୋଷଣ କରିଅଛନ୍ତି । କିନ୍ତୁ ଏହି ବିଭିନ୍ନ ଅର୍ଥ ଅର୍ଥାନ୍ତର ପର୍ଯ୍ୟାଲୋଚନା କଲେ କେତେକ ଋକ୍‌ରେ ଯେ ଦ୍ୱିଧା, ସଂଶୟ ପ୍ରକାଶ ପାଇଛି ଏଥିରେ ସନ୍ଦେହ କରିବାର ଅବକାଶ ନାହିଁ ।

ପ୍ରଥମ ତିନୋଟି ଋକ୍‌ରେ ଆଦିତ୍ୟ ବା ସୂର୍ଯ୍ୟଙ୍କର ବର୍ଣ୍ଣନା କଲାପରେ ସହସା ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଋକ୍‌ରେ ସ୍ତୋତା ବିସ୍ମୟମୂଢ଼ତା, ଅଜ୍ଞତା, ଦ୍ୱନ୍ଦ୍ୱାତ୍ମକ ଚେତନା ପ୍ରକାଶ କରିଅଛନ୍ତି, ପ୍ରଶ୍ନ କରିଅଛନ୍ତି,- "କିଏ ଦେଖିଥିଲା ପ୍ରଥମ ଜାତକଙ୍କୁ ଯେତେବେଳେ ସେ ଜନ୍ମ ହୋଇଥିଲେ , ଯେତେବେଳେ ଯାହା ଅସ୍ଥିବିହୀନ ତାହା ଅସ୍ଥିଯୁକ୍ତଙ୍କୁ ଧାରଣ କଲା ? (ସମ୍ଭବତଃ ଏହାର ଅର୍ଥ, ଯେତେବେଳେ ଅଶରୀରୀ ଆତ୍ମା ଅସ୍ଥି ସମ୍ପନ୍ନ ଶରୀରକୁ ଆଶ୍ରୟ କରି ତାହାକୁ ସଂଜ୍ଞାବିତ କଲା ବା ସୂକ୍ଷ୍ମ ଶରୀର ସ୍ଥୂଳ ଶରୀର ସହିତ ଏକତ୍ରିତ ହେଲା ?) ଭୂମିରୁ (ସାୟଣଙ୍କ ମତରେ ସ୍ଥୂଳ ଶରୀରରୁ) ପ୍ରାଣ ବା ଶ୍ୱାସ ବାୟୁ ଓ ରକ୍ତ ଆସିଲା; କିନ୍ତୁ ଆତ୍ମା କେଉଁଠାରୁ ଆସିଲା ? କିଏ ବିଦ୍ୱାନ୍‌ଙ୍କ ନିକଟକୁ ଏ ବିଷୟରେ ପ୍ରଶ୍ନ କରିବାକୁ ଗଲା ? ଅପରିପକ୍ୱ ମତି ମୁଁ କିଛି ବୁଝି ନପାରି ପ୍ରଶ୍ନ କରୁଛି । ଏ ସମସ୍ତ ସନ୍ଦେହର ବିଷୟ ଦେବଗଣଙ୍କ ପାଇଁ ମଧ ରହସ୍ୟାବୃତ । ବର୍ଷକର ବସତରୀକୁ ପରିବେଷ୍ଟିତ କରିବା ପାଇଁ ବିଦ୍ୱାନ୍ (ଋତ୍ୱିକ୍) ଗଣ ଯେଉଁ ସାତୋଟି ତନ୍ତୁ ପକାଇ ଅଛନ୍ତି, ତାହା କଣ ? (ସାୟଣ ଏହାର ଅର୍ଥ କରି କହୁଅଛନ୍ତି, ବସତରୀ ହେଉଛି ସୂର୍ଯ୍ୟ, ବିଦ୍ୱାନ୍ ଋତ୍ୱିକ୍‌ଗଣ ତାଙ୍କର ଅର୍ଚ୍ଚନାର୍ଥ ସାତପ୍ରକାର

ସୋମଯଜ୍ଞ କରୁଅଛନ୍ତି । ସେଗୁଡିକର ମର୍ମ ଏହି ସୂକ୍ତର ସ୍ତୋତା ବୁଝି ପାରୁ ନାହାନ୍ତି ।) ମୁଁ ଜ୍ଞାନହୀନ, କିଛି ଜାଣି ପାରୁନାହିଁ । ସେଥିପାଇଁ ବିଦ୍ୱାନ୍‌ଗଣଙ୍କ ପାଖରୁ ଜାଣିବା ପାଇଁ ଏହି ସବୁ ପ୍ରଶ୍ନ କରୁଛି । ଯେ ଏହି ଷଡ୍‌ଲୋକ ପ୍ରତିଷ୍ଠା ବା ସଂସ୍ଥାପନ କରିଅଛନ୍ତି ଓ ଯେ ଅଜ ବା ଜନ୍ମବିହୀନ ରୂପେ ଅବସ୍ଥାନ କରନ୍ତି, ସେ କଣ ଏକ ଓ ଅଭିନ୍ନ ? ଚିରଗତିଶୀଳ, ସୁଶୋଭନ ଆଦିତ୍ୟଙ୍କର ସ୍ୱରୂପ ଅତି ରହସ୍ୟାବୃତ ।'' ଆଦିତ୍ୟଙ୍କ ବିଷୟ ଚିନ୍ତା କରୁ କରୁ ସ୍ତୋତା ସମସ୍ତ ଜଗତର ସୃଷ୍ଟିକର୍ତ୍ତାଙ୍କ ସ୍ୱରୂପ ବିଷୟ ଚିନ୍ତା କରି ବିସ୍ମୟବିହ୍ୱଳ ହୋଇ ପଡିଛନ୍ତି ।

ପରବର୍ତ୍ତୀ ଋକ୍‌ଗୁଡିକରେ ଆପାତତଃ ଏହି ସନ୍ଦେହର ବିମୋଚନ ପାଇଁ କିଛି ପ୍ରୟାସ ହୋଇଅଛି । କିନ୍ତୁ ଚତୁର୍ଥ ଋକ୍ ଅନ୍ତର୍ଗତ ପ୍ରଶ୍ନଗୁଡିକର କୌଣସି ଯଥାଯଥ ଉତ୍ତର ଦିଆ ହୋଇ ନାହିଁ ।

ସପ୍ତଦଶ ଓ ଅଷ୍ଟାଦଶ ଋକ୍ ଦୁଇଟିରେ ପୁଣି ସେହି ସନ୍ଦେହାକୁଳ ସପ୍ରଶ୍ନ ଦୃଷ୍ଟିକୋଣ ପ୍ରକାଶ ପାଇଛି । ସପ୍ତଦଶ ଋକ୍‌ଟି ଦୁର୍ବୋଧ୍ୟ । ଯାସ୍କ ଓ ସାୟଣ ଏଥିର ବିଭିନ୍ନ ପ୍ରକାର ଅର୍ଥ କରିଛନ୍ତି । କିନ୍ତୁ ମୁଖ୍ୟତଃ ଏହା ଯେ ଏକ ଦ୍ୱନ୍ଦାତ୍ମକ ଚେତନାର ପରିଚାୟକ, ଏଥିରେ ସନ୍ଦେହ ନାହିଁ । ମନେ ହୁଏ ଯେପରି ସ୍ତୋତା କହୁଛନ୍ତି ଯେ ଆଦିତ୍ୟଙ୍କ ରଶ୍ମିଗଣ (ସୂକ୍ତର - 'ଗାଭୀ') ଯଜମାନ (ସୂକ୍ତର 'ବସତଗ') ଙ୍କୁ ଊର୍ଦ୍ଧ୍ୱସ୍ତରକୁ ନେଇଯାଉଛନ୍ତି । ସ୍ତୋତା ପଚାରୁଛନ୍ତି - ''ସେ (ଗାଭୀ ଅର୍ଥାତ୍ ରଶ୍ମି ଗଣ) କେଉଁ ଆଡେ ଯାଉଛନ୍ତି ?'' କିନ୍ତୁ ଅର୍ଦ୍ଧପଥରୁ ଯଜମାନଙ୍କୁ ରଶ୍ମିଗଣ ଫେରାଇ ଆଣୁଛନ୍ତି । ସ୍ତୋତା ପଚାରୁଛନ୍ତି, ''କାହାପାଇଁ ଅର୍ଦ୍ଧପଥରୁ ଫେରି ଆସୁଛନ୍ତି ?'' ହୁଏତ ଯଜମାନଙ୍କୁ ଆଦିତ୍ୟ ରଶ୍ମିଗଣ ଊର୍ଦ୍ଧ୍ୱ ସ୍ତରକୁ ଯିବାର ଅନୁପଯୁକ୍ତ ମନେ କରୁଛନ୍ତି । '' ସେ କେଉଁଠି ପ୍ରସବ କରିବେ ? ଗୋଷ୍ଠ ମଧ୍ୟରେ ପ୍ରସବ କରିବେ ନାହିଁ - ''ସ୍ତୋତା ପ୍ରଶ୍ନ କରୁଛନ୍ତି । ହୁଏତ ତାଙ୍କ ମନରେ ପ୍ରଶ୍ନ ଉଠୁଛି - ବା 'ଯଜମାନ ଆଦିତ୍ୟ ରଶ୍ମିଗଣଙ୍କୁ ଅର୍ଚ୍ଚନା କରିଥିବାରୁ ରଶ୍ମିଗଣ ତାଙ୍କୁ କେଉଁଠି ସୁଫଳ ଦେବେ? ସେମାନଙ୍କ ସଙ୍ଗରେ ରଖି ବା ପରିଦୃଶ୍ୟମାନ ଜଗତରେ ରଖି ତ ସୁଫଳ ଦେବେ ନାହିଁ !' ସ୍ତୋତା କିଛି ନିଶ୍ଚିତ ଭାବରେ ଜାଣିପାରୁନାହାନ୍ତି ।

ଅଷ୍ଟାଦଶ ଋକ୍‌ରେ ସୂକ୍ତ ରଚୟିତା ପ୍ରଶ୍ନ କରିଛନ୍ତି - ଊର୍ଦ୍ଧ୍ୱସ୍ଥିତ ସୂର୍ଯ୍ୟ ଓ ଅଧଃସ୍ଥିତ ଅଗ୍ନି ଯେ ଏକ, କିଏ ସେହି ମେଧାବୀ ଯେ ଏହାସବୁ କହି ଅଛନ୍ତି ? କେଉଁଥିରୁ ସୃଷ୍ଟିକର୍ତ୍ତାଙ୍କର ଏହି ଅଲୌକିକ ମନ ଉତ୍ପନ୍ନ ହୋଇଅଛି ?

ଦ୍ୱାତ୍ରିଂଶ ଋକ୍‌ରେ ପୁନର୍ବାର ଏହି ପ୍ରକାର ସଂଶୟ, ଅଜ୍ଞତା - ବୋଧ ପ୍ରକାଶ ପାଇଅଛି । ମନୁଷ୍ୟ ଜନ୍ମର ରହସ୍ୟ ଭେଦ କରିବାକୁ ଅକ୍ଷମ । ସୂକ୍ତକାର କହୁଅଛନ୍ତି '' ଯେ ଗର୍ଭ ଉତ୍ପାଦନ କରିଛନ୍ତି, ସେ ମଧ୍ୟ ଏହାର ତତ୍ତ୍ୱ ଜାଣିନାହାନ୍ତି, ଯେ ଗର୍ଭ ଦେଖିଛନ୍ତି ତାଙ୍କୁ ମଧ୍ୟ ଏହା ଅଜ୍ଞାତ ।'' ଏହାର ଅବଶ୍ୟ ନିରୁକ୍ତକାର ଭିନ୍ନ ଅର୍ଥ କରିଛନ୍ତି । କିନ୍ତୁ ସେଥିରେ ମଧ୍ୟ ମାନବିକ ଅଜ୍ଞତା, ସଂଶୟ ସୂଚିତ ହେଉଅଛି ।

୩୪ତମ ଋକ୍‌ରେ ସୂକ୍ତକାର ତାଙ୍କ ମନରେ ଜାଗ୍ରତ ହୋଇଥିବା ବହୁ ପ୍ରଶ୍ନ ପ୍ରକାଶ କରିଛନ୍ତି । ସେହିସବୁଥିର ଉତ୍ତର ୩୫ ତମ ଋକ୍‌ରେ ଦେବାର ପ୍ରୟାସ ହୋଇଅଛି ।

କିନ୍ତୁ ଏ ସମସ୍ତ ସତ୍ତ୍ୱେ ୩୭ତମ ଋକ୍‌ରେ ସୂକ୍ତକାର ବା ସ୍ତୋତା କହୁଅଛନ୍ତି - "ମୁଁ ଏହା କି ଏହା ନୁହେଁ, ଜାଣେ ନାହିଁ । ମୁଁ ବିମୂଢ଼ମନା ହୋଇ, ସଂଶୟାକୁଳ ହୋଇ ବିଚରଣ କରୁଛି ।" ସାୟଣଙ୍କ ମତରେ ବକ୍ତା ଜାଣି ନାହାନ୍ତି, ଜାଣି ପାରୁନାହାନ୍ତି, ସେ ଓ ପରମାତ୍ମା ଏକ କି ଏକ ନୁହନ୍ତି । ଜ୍ଞାନର ସତ୍ୟର ପ୍ରଥମ ଉନ୍ମେଷ ହେଲେ, ସତ୍ୟର ପ୍ରଥମ ପ୍ରବର୍ତ୍ତକ ପରମାତ୍ମା ତାଙ୍କୁ ସାକ୍ଷାତ ଦେଲେ ହିଁ ଯାଇ ଦିବ୍ୟ ପବିତ୍ର ମନ୍ତ୍ର ବାକ୍ୟର ମର୍ମ ସେ ବୁଝିପାରନ୍ତି ।

ପ୍ରଥମ ମଣ୍ଡଳର ୮୪ତମ ସୂକ୍ତଟି ଇନ୍ଦ୍ରଙ୍କ ସ୍ତୁତିମୂଳକ । ପ୍ରବଳଶକ୍ତିଶାଳୀ ଇନ୍ଦ୍ରଙ୍କର ମହିମା, ଯଜ୍ଞକର୍ତ୍ତାଙ୍କ ପ୍ରତି ଦୟା, ଦଧୀଚିଙ୍କର ଅସ୍ଥିଦ୍ୱାରା ବୃତ୍ରଗଣଙ୍କ ବଧ ଇତ୍ୟାଦି ସୂକ୍ତଟିରେ ବର୍ଣ୍ଣନା କରାହୋଇଅଛି । କିନ୍ତୁ ସ୍ତୁତି ମଧ୍ୟରେ ସମୟ ସମୟରେ ସ୍ତୋତାଙ୍କର ଅଧୀରତା ଓ ଦ୍ୱିଧା ପ୍ରକାଶ ପାଇଛି । ୮ମ ଋକ୍‌ରେ ସ୍ତୋତା ପ୍ରଶ୍ନ କରୁଛନ୍ତି, "ଯେଉଁ ଲୋକ ହବ୍ୟ ପ୍ରଦାନ କରେ ନାହିଁ ଏ ଇନ୍ଦ୍ର କେତେବେଳେ ତାଙ୍କୁ ମଣ୍ଡଳାକାର ସର୍ପକୁ ପାଦରେ ଦଳିଲା ପରି ନିଜ ପାଦରେ ଦଳି ଦେବେ ? ଇନ୍ଦ୍ର କେତେବେଳେ ଆମର ସ୍ତୁତି ଶୁଣିବେ ?" ଯେପରି ଇନ୍ଦ୍ର ସ୍ତୋତାଙ୍କର ପ୍ରାର୍ଥନାନୁଯାୟୀ ଶୀଘ୍ର ଶତ୍ରୁଦଳନ କରୁନାହାନ୍ତି, ତେଣୁ ସ୍ତୋତା ଅସହିଷ୍ଣୁ, ଦ୍ୱିଧାଗ୍ରସ୍ତ ହୋଇ ପଡିଛନ୍ତି । ଅବଶ୍ୟ ପରେ ପରେ ଇନ୍ଦ୍ରଙ୍କର ସ୍ତୁତିକାରୀଙ୍କ ପ୍ରତି ଦୟା ସ୍ମରଣ କରିଛନ୍ତି । ପୁଣି ସପ୍ତଦଶ ଋକ୍‌ରେ ସ୍ତୋତା ପ୍ରଶ୍ନ କରିଛନ୍ତି, "ଶତ୍ରୁଭୟରେ କିଏ ପଳାଇ ଯାଏ ? କିଏ ଶତ୍ରୁଦ୍ୱାରା ପ୍ରପୀଡିତ ହୁଏ ? କିଏ ଭୀତତ୍ରସ୍ତ ହୋଇ ପଡେ ? କିଏ ଜାଣେ ଯେ ଇନ୍ଦ୍ର ରକ୍ଷାକର୍ତ୍ତାରୂପେ ନିକଟରେ ଉପସ୍ଥିତ ଅଛନ୍ତି ? ପୁତ୍ର ପାଇଁ, ନିଜ ପାଇଁ, ଧନ ପାଇଁ, ହସ୍ତୀ ପାଇଁ ନିଜ ପରିବାର ପାଇଁ, ପରିଜନଙ୍କ ପାଇଁ କିଏ ଇନ୍ଦ୍ରଙ୍କୁ ପ୍ରାର୍ଥନା କରେ ? କିଏ ଅଗ୍ନିଙ୍କୁ ସ୍ତୁତି କରେ ? କିଏ ପ୍ରତ୍ୟହ ଋତୁ ଅନୁଯାୟୀ ପାତ୍ରସ୍ଥିତ ଘୃତ ହବ୍ୟ ରୂପେ ଅର୍ପଣ କରି ତାଙ୍କୁ ପୂଜା କରେ? କେଉଁ ଦେବତାଗଣ ପ୍ରାର୍ଥିତ ଧନ ବା ଅନ୍ୟ କୌଣସି ବସ୍ତୁ ଯଜମାନଙ୍କୁ ଶୀଘ୍ର ଆଣି ଦିଅନ୍ତି ? ହବ୍ୟଅର୍ପଣକାରୀ ଦେବକୃପା- ପ୍ରାପ୍ତ କେଉଁ ଯଜ୍ଞକର୍ତ୍ତା ଇନ୍ଦ୍ରଙ୍କୁ ସମ୍ପୂର୍ଣ୍ଣ ରୂପେ ଜାଣନ୍ତି ?" ଯଜ୍ଞକର୍ତ୍ତାଗଣଙ୍କର ଦୌର୍ବଲ୍ୟର, ଦ୍ୱିଧାର ଯେପରି ସୂଚନା ଦେଉଅଛନ୍ତି ସୂକ୍ତରଚୟିତା । ଇନ୍ଦ୍ର ସର୍ବଦା ସନ୍ନିକଟରେ ଅଛନ୍ତି ଓ ସମସ୍ତ ବିପଦରୁ ରକ୍ଷା କରିବେ, ଏହି ଦୃଢ଼ ବିଶ୍ୱାସ ନ ଥିବାରୁ ଦ୍ୱନ୍ଦ୍ୱାକ୍ରାନ୍ତ ମାନବ ଶତ୍ରୁ ଭୟରେ ସ୍ୱଗୃହ ତ୍ୟାଗ କରି ଚାଲିଯାଏ, ଭୀତତ୍ରସ୍ତ ହୋଇପଡେ । ଶତ୍ରୁଦ୍ୱାରା ଆକ୍ରାନ୍ତ ହେଲା ପରି ଅନୁଭବ କରେ, ଇନ୍ଦ୍ରଙ୍କର ସ୍ୱତଃ ପ୍ରଣୋଦିତ ଦୟା ଉପରେ ଆସ୍ଥା ନ ରଖି ଧନ ଜନ ପୁତ୍ରାଦି ରକ୍ଷଣାର୍ଥ ପ୍ରାର୍ଥନା କରେ । ଅଗ୍ନିଙ୍କର ଯଥାର୍ଥ ସ୍ତୁତିକାରୀ ଯଥା-ଋତୁ ଘୃତାର୍ଘ୍ୟପ୍ରଦାନକାରୀ ପୂଜକଙ୍କର ସ୍ୱରୂପ ବିଷୟରେ ଯେପରି ସ୍ତୋତା ସନ୍ଦିହାନ । ଯଜ୍ଞକର୍ତ୍ତାଙ୍କର ଜ୍ଞାନ ସୀମାବଦ୍ଧ, ସେ ଜାଣନ୍ତି ନାହିଁ ଇନ୍ଦ୍ରଙ୍କର ସମ୍ପୂର୍ଣ୍ଣ ସ୍ୱରୂପ, ଜାଣନ୍ତି ନାହିଁ ଅନ୍ୟ କେଉଁ ଦେବଗଣ ପ୍ରାର୍ଥିତ ବସ୍ତୁ ଶୀଘ୍ର ପ୍ରଦାନ କରନ୍ତି ।

ଦ୍ୱିତୀୟ ମଣ୍ଡଳର ଦ୍ୱାଦଶ ସୂକ୍ତରେ ସୂକ୍ତ ରଚୟିତା ଗୃତ୍ସମଦ ଋଷି ମନୁଷ୍ୟ ସମାଜକୁ ସମ୍ବୋଧନ କରି ଇନ୍ଦ୍ରଙ୍କର ବିଭିନ୍ନ ବିଭାବ, ମହିମା ବର୍ଣ୍ଣନା କରିଅଛନ୍ତି । ଶେଷ ଋକ୍‌ଟିରେ ଇନ୍ଦ୍ରଙ୍କୁ ସମ୍ବୋଧନ କରି ଋଷି କହିଛନ୍ତି, ''.... ତୁମେ ହିଁ ସତ୍ୟ । ଆମ୍ଭେମାନେ ସ୍ନେହାସ୍ପଦ ବୀରପୁତ୍ରପୌତ୍ରାଦି ସମନ୍ୱିତ ହୋଇ ଚିରକାଳ ତୁମର ଏହି ସ୍ତୁତି ପାଠ କରିବୁ ।'' କିନ୍ତୁ ଏହି ଆପାତତଃ ଇନ୍ଦ୍ରଙ୍କର ଗୌରବଗାଥା ମଧ୍ୟରେ ଏକ ବ୍ୟତିକ୍ରମ ପଞ୍ଚମ ଋକ୍‌ରେ ପରିଲକ୍ଷିତ ହୋଇଅଛି । ତହିଁର ପ୍ରଥମାଂଶ ଇନ୍ଦ୍ରଙ୍କ ସମ୍ପର୍କରେ ମାନବିକ ସନ୍ଦେହ, ଦ୍ୱିଧା, ଦ୍ୱନ୍ଦ୍ୱକୁ ପ୍ରକାଶ କରୁଅଛି । ପଞ୍ଚମ ଋକ୍‌ରେ ଋଷି କହୁଅଛନ୍ତି, ''ହେ ମାନବଗଣ ! ଯେଉଁ ଭୟାନକ ଦେବତାଙ୍କ ସମ୍ପର୍କରେ ଲୋକେ ପ୍ରଶ୍ନ କରନ୍ତି, ସେ କେଉଁଠି ଅଛନ୍ତି, ଏବଂ ଯାହାଙ୍କ ବିଷୟରେ ଲୋକେ କହନ୍ତି, ସେ ନାହାନ୍ତି କିନ୍ତୁ ଯେ ଶାସ୍ତିପଦାୟକରୂପେ ଶତ୍ରୁମାନଙ୍କର ସମସ୍ତ ଧନ ସମୃଦ୍ଧି ନାଶ କରନ୍ତି, ତାହାଙ୍କୁ ବିଶ୍ୱାସ କର, ସେ ହିଁ ଇନ୍ଦ୍ର ।'' ପୁଣି ପରବର୍ତ୍ତୀ ଋକ୍‌ଗୁଡିକରେ ଇନ୍ଦ୍ରଙ୍କର ମହିମା ବର୍ଣ୍ଣନା କରାହୋଇଛି । ଶେଷ ଋକ୍‌ଟି ବ୍ୟତୀତ ପ୍ରତ୍ୟେକଟି ଋକ୍‌ର ଶେଷରେ ଘୋଷା ପରି ରହିଅଛି - ''ସ ଜନାସ ଇନ୍ଦ୍ରଃ'' - ''ସେ ହିଁ, ହେ ମାନବଗଣ, ଇନ୍ଦ୍ର'' । ମନେ ହେଉଛି ଯେପରି ଇନ୍ଦ୍ରଙ୍କ ଅସ୍ତିତ୍ୱ ସମ୍ପର୍କରେ ଯେଉଁ ଦ୍ୱନ୍ଦ୍ୱ ଦେଖା ଦେଇଅଛି, ତାହାକୁ ହିଁ ଦୂର କରିବାକୁ ସମସ୍ତ ସୂକ୍ତଟି ରଚିତ ହୋଇଅଛି ।

ତୃତୀୟ ମଣ୍ଡଳର ୫୪ ତମ ସୂକ୍ତର ତୃତୀୟ ଓ ଚତୁର୍ଥ ଋକ୍‌ରେ ଦ୍ୟାବା ପୃଥିବୀଙ୍କୁ ଋତଯୁକ୍ତ, ସତ୍ୟଯୁକ୍ତ ବୋଲି ଅଭିହିତ କଲାପରେ, ପ୍ରାଚୀନ ମହର୍ଷିଗଣଙ୍କୁ ସତ୍ୟବାଦୀ ବୋଲି ଅଭିହିତ କଲାପରେ, ପଞ୍ଚମ ଋକ୍‌ରେ ସୂକ୍ତର ରଚୟିତା ଅପ୍ରତ୍ୟାଶିତ ଭାବରେ ପୁଣି ପ୍ରଶ୍ନ କରିଅଛନ୍ତି, ''ସତ୍ୟ କଣ କିଏ ଜାଣେ? କିଏ ତାହା ଏଠାରେ ପ୍ରକାଶ କରିବ ? ଦେବତାଙ୍କ ନିକଟକୁ ଯିବାକୁ କେଉଁ ପଥ ଉପଯୁକ୍ତ ?'' ମନେ ହେଉଛି ଯେପରି ସ୍ତୋତା ସହସା ମାନବିକ ଜ୍ଞାନର ପରିସୀମା କେତେ ସଂକୀର୍ଣ୍ଣ ତାହା ଉପଲବ୍‌ଧି କରି ବିସ୍ମୟବିହ୍ୱଳ ହୋଇ ପଡିଛନ୍ତି ।

ଋକ୍‌ର ଦ୍ୱିତୀୟାର୍ଦ୍ଧରେ ଦେବତାମାନଙ୍କର ଅଧଃସ୍ଥ ସ୍ଥାନ ନକ୍ଷତ୍ରାଦିମଣ୍ଡିତ ଦ୍ୟୁଲୋକ ଦୃଷ୍ଟି ଗୋଚର ହୁଏ, କିନ୍ତୁ ସେମାନଙ୍କର ଉଚ୍ଚତର ଉତ୍କୃଷ୍ଟ ଗୁପ୍ତ ନିବାସ ସ୍ଥଳକୁ ମାର୍ଗ କାହାରିକୁ ଜଣାନାହିଁ ବୋଲି ବର୍ଣ୍ଣିତ ହୋଇଅଛି । ମାନବିକ ସତ୍ୟୋପଲବ୍‌ଧି ଯେ ପର୍ଯ୍ୟାପ୍ତ ନୁହେଁ, ଏହା ସ୍ତୋତା ଅନୁଭବ କରୁଥିବା ସୂକ୍ତଟିରୁ ଜଣାପଡୁଛି ।

ସମୟ ସମୟରେ ସ୍ତୁତି ମଧ୍ୟରେ ଅତିରିକ୍ତ ବ୍ୟାକୁଳତା, ଆତ୍ମପାପବୋଧଜନିତ ଜ୍ୱାଳା ପ୍ରକାଶ ପାଇଛି, ପ୍ରକାଶ ପାଇଛି ନିଜ ନେଇ ସନ୍ଦେହ, ଦେବତାଙ୍କ ବିଚାର, କାର୍ଯ୍ୟଧାରା ନେଇ ସନ୍ଦେହ ।

ଚତୁର୍ଥ ମଣ୍ଡଳର ତୃତୀୟ ସୂକ୍ତଟି ଅଗ୍ନି ଦେବତାଙ୍କ ପ୍ରତି ଅଭିପ୍ରେତ । ପ୍ରଥମ ଋକ୍‌ଟି ଏକ ନାଟକୀୟ ତୀବ୍ର ମୁହୂର୍ତ୍ତର ସୂଚନା ଦେଉଅଛି । ଋଷି ଋତ୍ୱିକଗଣଙ୍କୁ ଉପଦେଶ ଦେଉଛନ୍ତି, ''ଯଜ୍ଞାଧିପତି, ଦେବଗଣଙ୍କର ଆହ୍ୱାନକର୍ତ୍ତା, ଦ୍ୟାବାପୃଥିବୀର ଅନ୍ନଦାତା, ସୁବର୍ଣ୍ଣବର୍ଣ୍ଣ ରୁଦ୍ର ଅଗ୍ନିଙ୍କୁ ନିଜକୁ ରକ୍ଷା କରିବାପାଇଁ ବଜ୍ରତୁଲ୍ୟ ମୃତ୍ୟୁ ପୂର୍ବରୁ ସେବା କର ।'' ଦ୍ୱିତୀୟ ଋକ୍‌ରେ

ଅଗ୍ନିଙ୍କର ସ୍ତୁତି ଆରମ୍ଭ ହୋଇଛି । ପୁଣି ତୃତୀୟ ଋକ୍‌ରେ ଅଗ୍ନିଦେବଙ୍କୁ ସ୍ତୁତି କରିବାକୁ ସ୍ତୋତାଙ୍କୁ ଉଦ୍‌ବୋଧନ ଦିଆହୋଇଛି । ଚତୁର୍ଥ ଋକ୍‌ଠାରୁ ପୁନରାୟ ଅଗ୍ନିଙ୍କର ସ୍ତୁତି ଆରମ୍ଭ ହୋଇଅଛି । କିନ୍ତୁ ଆପାତତଃ ଶାନ୍ତ ଆବାହନୀ ପରେ ସ୍ତୋତା ହଠାତ୍ ଅଗ୍ନିଙ୍କୁ ପ୍ରଶ୍ନ କରିଛନ୍ତି, "ତୁମର ଉନ୍ମାଦକର ସ୍ତୋତ୍ରସବୁ କେବେ ଉଚ୍ଚାରିତ ହେବ ? ତୁମ ସହିତ ଆମ୍ଭମାନଙ୍କ ଘରେ କେବେ ବନ୍ଧୁତା ପ୍ରତିଷ୍ଠିତ ହେବ ?" ଅଗ୍ନିଙ୍କ ବିରୁଦ୍ଧରେ ଅଭିଯୋଗ କରି ସ୍ତୋତା କହୁଅଛନ୍ତି, " ହେ ଅଗ୍ନି ! ତୁମେ ଆମ୍ଭମାନଙ୍କର ପାପପାଇଁ କାହିଁକି ବରୁଣଙ୍କ ନିକଟରେ ଆମର ନିନ୍ଦା କରିଛ ? ସୂର୍ଯ୍ୟଙ୍କ ନିକଟରେ ବା କାହିଁକି ନିନ୍ଦା କରିଛ ? ଆମର କଣ ଦୋଷ ଅଛି ? କାହିଁକି ଶୁଭପ୍ରଦାନକାରୀ ମିତ୍ର ଓ ପୃଥିବୀଙ୍କୁ କହିଛ, କାହିଁକି କହିଛ ଅର୍ଯମାଙ୍କୁ, କାହିଁକି କହିଛ ଭଗଙ୍କୁ ? ଯେତେବେଳେ ଯଜ୍ଞରେ ପରିପୁଷ୍ଟ ହୁଅ, ସେତେବେଳେ କାହିଁକି ସେ କଥା କହ ? ପ୍ରଭୂତ ବଳବାନ୍ ଶୁଭଙ୍କର ସର୍ବଦିଗସଞ୍ଚରଣଶୀଳ, ସତ୍ୟର ନେତା ବାୟୁଙ୍କୁ କାହିଁକି କହ ? ପୃଥିବୀଙ୍କୁ କାହିଁକି କହ ? ମନୁଷ୍ୟର ଧ୍ୱଂସକାରୀ (ବଜ୍ରରୂପୀ) ରୁଦ୍ରଙ୍କୁ କାହିଁକି କହ ? ମହାନ୍ ପୁଷ୍ଟିଦାନକାରୀ ପୂଷାଙ୍କୁ କାହିଁକି କହ ? ଯଜ୍ଞଯୋଗ୍ୟ ହବିଃଦାନକାରୀ ରୁଦ୍ରଙ୍କୁ କାହିଁକି କହ ? ବହୁବିଧସ୍ତୁତିର ଯୋଗ୍ୟ ବିଷ୍ଣୁଙ୍କୁ (ଆମର) ପାପର କଥା କାହିଁକି କହ ? ମହାନ୍ ନିର୍ଋତିଙ୍କୁ କାହିଁକି ସେ କଥା କହ ? ହେ ଅଗ୍ନି, ହେ ସତ୍ୟରୂପ ! ମରୁଦ୍‌ଗଣଙ୍କୁ କାହିଁକି ସେକଥା କହ ? ମହାନ୍ ସୂର୍ଯ୍ୟ ପଚାରିଲେ କାହିଁକି ସେ କଥା କହ ? ଅଦିତିଙ୍କୁ ଓ ଦ୍ରୁତଗତିଶୀଳ ବାୟୁଙ୍କୁ କାହିଁକି ସେ କଥା କହ ?"

ଅବଶ୍ୟ ପୁଣି ତାପରେ ଆରମ୍ଭ ହୋଇଛି ଅଗ୍ନିଙ୍କର ସ୍ତୁତି, ମହିମାଗାନ, ତାଙ୍କୁ ପ୍ରୀତ କରିବାପାଇଁ ଅର୍ଚ୍ଚନା ଆରାଧନା ।

ସେହି ଚତୁର୍ଥ ମଣ୍ଡଳର ପଞ୍ଚମ ସୂକ୍ତରେ ମଧ ଅଗ୍ନିଙ୍କ ସ୍ତୁତି ମଧରେ ଦ୍ୱିଧାର, ସ୍ତୋତାଙ୍କର ଅଜ୍ଞତାର, ବିସ୍ମୟବିମୂଢତା 'ର ପରିଚୟ ମିଳେ । ପ୍ରଥମ ଋକ୍ ହିଁ ଗୋଟିଏ ପ୍ରଶ୍ନ, ଯାହା ସୂଚାଉଛି ସ୍ତୋତାଙ୍କର ଜ୍ଞାନର ସ୍ୱଚ୍ଛତା - "ଆମ୍ଭେମାନେ ସମସ୍ତେ କିପରି ସମାନ ଶ୍ରଦ୍ଧାପ୍ରୀତିଯୁକ୍ତ ହୋଇ ବୈଶ୍ୱାନରନାମଧାରୀ ସର୍ବଶୁଭବର୍ଷୀ, ଜ୍ୟୋତିଷ୍ମାନ୍ ଅଗ୍ନିଙ୍କୁ ହବ୍ୟ ପ୍ରଦାନ କରିବୁ ?" ବୈଶ୍ୱାନରଙ୍କ ଗାରିମା ପ୍ରଥମ ଋକ୍‌ର ଦ୍ୱିତ୍ୱୀୟାର୍ଦ୍ଧରେ ଓ ଦ୍ୱିତୀୟ ଋକ୍‌ର ପ୍ରଥମାର୍ଦ୍ଧରେ ବର୍ଣ୍ଣନା କଲା ପରେ ସ୍ତୋତା ପୁଣି କହୁଅଛନ୍ତି, "ଯେଉଁ ଅଗ୍ନିଦେବ ହବ୍ୟ ଗ୍ରହଣ କରି ପରଣତବୁଦ୍ଧିସମନ୍ୱିତ ମୋ ଭଳି ମରଣଶୀଳ ମାନବଙ୍କୁ ଧନ ଦାନ କରିଅଛନ୍ତି , ତୁମେ ତାଙ୍କୁ ନିନ୍ଦା କରନାହିଁ ।" ତେଣୁ ମନେ ହୁଏ, ଯେପରି ଇନ୍ଦ୍ରଙ୍କ ବିଷୟରେ କେତେକଙ୍କର ମନରେ ଦ୍ୱିଧା ଜାତ ହୋଇଥିଲା । ସେହିପରି ଅଗ୍ନିଙ୍କ ସମ୍ପର୍କରେ ମଧ ଦ୍ୱିଧା ଜାତ ହୋଇଥିଲା । ପୁଣି ଏକାଦଶ ଋକ୍‌ରେ ଅଗ୍ନିଙ୍କୁ "ତୁମେ ସ୍ୱର୍ଗର ସମସ୍ତ ଧନର, ପୃଥିବୀର ସମସ୍ତ ଧନର ପ୍ରଭୁ" ଇତ୍ୟାଦି କହିଲା ପରେ ଦ୍ୱାଦଶ ଋକ୍‌ରେ ଦ୍ୱନ୍ଦ୍ୱାକ୍ରାନ୍ତ ସ୍ତୋତା ପଚାରିଛନ୍ତି, "ଏହି ଧନ ଆମ ପାଇଁ କିପରି ମୂଲ୍ୟବାନ ? ଏହା କିପରି ଆମର ହିତ ସାଧନ କରିବ ?" ଧନଲାଭର ଉତ୍କୃଷ୍ଟ, ନିଗୂଢ ଉପାୟ ଶିଖାଇ ଦେବାକୁ ଅଗ୍ନିଙ୍କୁ ପ୍ରାର୍ଥନା କଲାପରେ ସ୍ତୋତା କହୁଛନ୍ତି, "ଆମେ ଯେପରି କୌଣସି ପ୍ରକାରେ ନିନ୍ଦନୀୟ ନ ହୋଇ ଲକ୍ଷ୍ୟସ୍ଥଳକୁ

ସିଧାସଳଖ ପଥରେ ଗତି କରୁଁ ।'' ଦୋଦୁଲ୍ୟମାନଚିତ୍ତ ସ୍ତୋତା ପ୍ରଶ୍ନ କରୁଛନ୍ତି- ''ଏଥିର (ଏହି ଧନ ଲାଭ ପ୍ରୟାସର) ସୀମା କଣ ? କେଉଁ ବସ୍ତୁ ଲାଭ ହେବ ? .......ବାଞ୍ଛନୀୟ ଲକ୍ଷ୍ୟ ଆମର କ'ଣ ଯେଉଁଥିପାଇଁ ଦ୍ରୁତଗାମୀ ଅଶ୍ୱ ସଂଗ୍ରାମ କ୍ଷେତ୍ରକୁ ଧାଇଁଲା ପରି ଆମେ ଧାଇଁବୁ ? ଜ୍ୟୋତିଷ୍ମତୀ, ଅମର ଆଦିତ୍ୟଙ୍କ ପତ୍ନୀ ଜୀବନପ୍ରସବିନୀ ଉଷା ଦେବୀ କେତେବେଳେ ଆମ ପାଇଁ ପ୍ରକାଶିତ ହୋଇ ବିଶ୍ୱସାରା ଆଲୋକ ବିଚ୍ଛୁରିତ କରିବେ ?'' ଏହି ପ୍ରଶ୍ନ ଗୁଡିକର ଉତ୍ତର ପରବର୍ତ୍ତୀ ଋକ୍‌ରେ ନାହିଁ ।

କେତେକ ବ୍ୟକ୍ତି ଯେ ଯଥାଯଥ ସ୍ତୁତି କରୁ ନ ଥିଲେ, ସେଥିର ସୂଚନା ମିଳୁଛି । ସ୍ତୋତା ତାତ୍ପର୍ଯ୍ୟର ସହିତ କହୁଅଛନ୍ତି, ''ହେ ଅଗ୍ନି, ହବ୍ୟ ପ୍ରଦାନ ନ କରି ଉକ୍‌ଥ ମନ୍ତ୍ରରେ ଓ ନୀରସ ସ୍ୱଳ୍ପାକ୍ଷର ବାକ୍ୟ ଅତୃପ୍ତିର ସହିତ ଉଚ୍ଚାରଣ କରି କେତେକ ଲୋକ ଏଠି ତୁମକୁ କଣ କହୁଛନ୍ତି ?'' ହବ୍ୟ ନିବେଦନ ବିନା ଓ ଯଥାର୍ଥ ସମ୍ପୂର୍ଣ୍ଣ ମନ୍ତ୍ରୋଚ୍ଚାରଣ ବିନା ଯଜ୍ଞ ଫଳପ୍ରଦ ହେବ ନାହିଁ, ଅଗ୍ନିଙ୍କୁ ସନ୍ତୁଷ୍ଟ କରି ହେବ ନାହିଁ, ଏହା ଜାଣି ମଧ୍ୟ କେତେକ ସେପରି କରୁଥିଲେ ।

ସେହି ଚତୁର୍ଥ ମଣ୍ଡଳର ଅଷ୍ଟାଦଶ ସୂକ୍ତରେ ଇନ୍ଦ୍ର, ଅଦିତି ଓ ବାମଦେବ ଋଷି- ଙ୍କ ମଧ୍ୟରେ ଅନୁଷ୍ଠିତ ଏକ ନାଟକୀୟ କଥୋପକଥନ ପ୍ରଦତ୍ତ ହୋଇଛି । ମାତୃଗର୍ଭସ୍ଥ ବାମଦେବ ଋଷି ତାଙ୍କର ମାତାଙ୍କର ପାର୍ଶ୍ୱଦେଶ ଭେଦ କରି ଜନ୍ମ ଗ୍ରହଣ କରିବାକୁ ଇଚ୍ଛା କରନ୍ତେ ଇନ୍ଦ୍ର ତାଙ୍କୁ ସେଥିରୁ ବିରତ ହେବାକୁ କହିଲେ । ବାମଦେବ ଇନ୍ଦ୍ରଙ୍କ ତୁଲ୍ୟ ଅନନ୍ୟ ସାଧାରଣ କର୍ମମାନ କରିବାର ଉଚ୍ଚାକାଂକ୍ଷା ପ୍ରକାଶ କରି ଇନ୍ଦ୍ର ଯେପରି ଅସାଧାରଣ ଭାବରେ ଗୁପ୍ତରେ ମାତା ଅଦିତିଙ୍କଠାରୁ ଜନ୍ମ ଗ୍ରହଣ କରିଥିଲେ ସେଥିର ଦୃଷ୍ଟାନ୍ତ ଦେଇଥିଲେ । ଅଦିତି ଇନ୍ଦ୍ରଙ୍କର ଉତ୍କୃଷ୍ଟତା ପ୍ରତିପାଦନ କରି ତାଙ୍କୁ କିପରି ସହସ୍ର ମାସ, ବହୁ ସମ୍ବତ୍ସର ଗର୍ଭରେ ଧାରଣ କରିଥିଲେ ଓ ଅସାଧାରଣ ଜଳବୀର୍ଯ୍ୟ ପୂର୍ଣ୍ଣ କରିଥିଲେ, ତାହା କହିଅଛନ୍ତି । ତାଙ୍କରି ବର୍ଣ୍ଣନା କ୍ରମେ ସୂଚିତ ହୋଇଅଛି ଯେ ଇନ୍ଦ୍ର ବୃତ୍ରାସୁରକୁ ବଧ କରିବାରୁ ନିନ୍ଦିତ ହୋଇଥିଲେ, କାରଣ ବୃତ୍ରାସୁର ବ୍ରାହ୍ମଣ ଥିଲେ । ଅବଶ୍ୟ ଅଦିତି ଇନ୍ଦ୍ରଙ୍କୁ ସମର୍ଥନ କରି କହିଅଛନ୍ତି ଯେ ଇନ୍ଦ୍ର ତଦ୍ୱାରା ଜଳଧାରାକୁ ମେଘାବରଣରୁ ମୁକ୍ତ କରି ନଦୀଗୁଡିକୁ ପରିପୁଷ୍ଟ କରିଥିଲେ । ପୁଣି ଅଦିତି ଏକାଦଶ ଋକ୍‌ରେ ପ୍ରଶ୍ନ କରିଛନ୍ତି ଇନ୍ଦ୍ରଙ୍କୁ ''ହେ ପୁତ୍ର ଇନ୍ଦ୍ର ! ଦେବତାଗଣ କଣ ତୁମକୁ ପରିତ୍ୟାଗ କରିଛନ୍ତି ?'' ଇନ୍ଦ୍ର ଯଦିଓ ପରବର୍ତ୍ତୀ ଋକ୍‌ରେ ବିଷ୍ଣୁଙ୍କୁ ସଖାରୂପେ ସମ୍ବୋଧନ କରିଛନ୍ତି, ଅଦିତିଙ୍କ ଉକ୍ତିରୁ ଇନ୍ଦ୍ରଙ୍କର ଅନ୍ୟ ଦେବତାଙ୍କ ସହ ବିରୋଧ ସୂଚିତ ହୋଇଅଛି । ପ୍ରଥମ ମଣ୍ଡଳରେ ଇନ୍ଦ୍ରଙ୍କର ମରୁତ୍‌ଗଣଙ୍କ ସହିତ ବିରୋଧ ଅଗସ୍ତ୍ୟ ମୁନିଙ୍କ ଦ୍ୱାର ରଚିତ କେତେକ ସୂକ୍ତରେ ବର୍ଣ୍ଣିତ ହୋଇଅଛି । କେତେକ ଟୀକାକାରଙ୍କ ମତରେ ଇନ୍ଦ୍ରଙ୍କର ସମସ୍ତ ଦେବତାଙ୍କ ଉପରେ ପ୍ରାଧାନ୍ୟ କେତେକ ଲୋକ ଗ୍ରହଣ କରିବାକୁ କୁଣ୍ଠିତ ଥିଲେ । ବାମଦେବ ଋଷିଙ୍କ ଏକ ଉକ୍ତିରୁ ଜଣାଯାଉଛି ଯେ ଇନ୍ଦ୍ର ତାଙ୍କର ପିତାଙ୍କୁ ବଧ କରି ମାତାଙ୍କୁ ବିଧବା କରିଥିଲେ । ଋଗ୍‌ବେଦର ଆଉ କୌଣସି ସ୍ଥାନରେ ଏହା ସୂଚିତ ହୋଇନାହିଁ ଓ ସାୟଣ ଏହି ଉପାଖ୍ୟାନ ଉଲ୍ଲେଖ କରିନାହାନ୍ତି, ତୈତ୍ତିରୀୟ ସଂହିତାରେ ଏହା ବର୍ଣ୍ଣିତ ହୋଇଛି ବୋଲି

ଲେଖିଛନ୍ତି । ବାମଦେବଙ୍କ ଉକ୍ତିରେ ପିତୃହତ୍ୟା ପାଇଁ ଇନ୍ଦ୍ରଙ୍କୁ ନିନ୍ଦା ବଦଳରେ ପ୍ରଶଂସା କରାଯାଇଥିଲେ ମଧ୍ୟ ପିତୃହତ୍ୟା ପାଇଁ ଇନ୍ଦ୍ରଙ୍କ ପ୍ରତି ଏକ ସପ୍ରଶ୍ନ ଦୃଷ୍ଟିକୋଣ ଲୋକଙ୍କ ମନରେ ଜାଗ୍ରତ ହୋଇଥିଲା, ଏହା ସୂଚିତ ହେଉଅଛି । ସେହିପରି ବ୍ରାହ୍ମଣ ହତ୍ୟାଜନିତ ପାପ ଇନ୍ଦ୍ର କରିଥିଲେ, ଏହି ଧାରଣା ମଧ୍ୟ ସାମୟିକ ଭାବରେ ଜାଗ୍ରତ ହୋଇଥିଲା । ଲୋକଙ୍କ ମନର ଦ୍ୱିଧା, ସ୍ତୋତାଙ୍କର ମନର ଦ୍ୱିଧା ପରୋକ୍ଷ ଭାବରେ ଏହି ସୂକ୍ତ ଦ୍ୱାରା ସୂଚିତ ହେଉଅଛି ।

ସେହି ମଣ୍ଡଳର ତ୍ରୟୋବିଂଶ ସୂକ୍ତର ପ୍ରଥମ ଛଅଟି ଋକ୍ କେବଳ କେତୋଟି ପ୍ରଶ୍ନ - ସ୍ତୋତାଙ୍କର ବିସ୍ମୟାବିଷ୍ଟତା, ସୀମାବଦ୍ଧ ଜ୍ଞାନ ଓ ଦ୍ୱିଧା, ଦ୍ୱନ୍ଦର ପରିଚାୟକ । ପଞ୍ଚବିଂଶ ସୂକ୍ତର ପ୍ରଥମ ତିନୋଟି ଋକ୍ ମଧ୍ୟ କେତୋଟି ପ୍ରଶ୍ନର ସମାହାର । ଅବଶ୍ୟ ସେଗୁଡିକ ପରୋକ୍ଷରେ ଇନ୍ଦ୍ରଙ୍କର ମହିମା ଓ ସ୍ତୁତିର ଫଳପ୍ରଦତା ସୂଚାଉଅଛି ।

ଇନ୍ଦ୍ର ଯେ ସର୍ବଦା ଧାର୍ମିକର ସହାୟକ ଓ ଶତ୍ରୁନାଶକ ସେ ବିଶ୍ୱାସ ଥିଲା ପରି ମନେ ହେଉନାହିଁ । ଯେ ଯଥାଯଥ ହବ୍ୟ ପ୍ରଦାନ କରି ତାଙ୍କର ସ୍ତୁତି କଲା, ତା ଉପରେ ସେ କୃପାବର୍ଷଣ କରନ୍ତି । ସେହି ଚତୁର୍ଥ ମଣ୍ଡଳର ପଞ୍ଚବିଂଶ ସୂକ୍ତର ଅଷ୍ଟମ ଋକ୍‌ରେ ସୂଚିତ ହୋଇଅଛି ଯେ କେବଳ ଉତ୍କୃଷ୍ଟ ବ୍ୟକ୍ତିମାନେ ଇନ୍ଦ୍ରଙ୍କର ସ୍ତୁତି କରନ୍ତି ନାହିଁ, ନିକୃଷ୍ଟ ବ୍ୟକ୍ତିମାନେ ମଧ୍ୟ ସ୍ତୁତି କରନ୍ତି (ଏବଂ ତାଙ୍କର କୃପାଲାଭ କରନ୍ତି) । ଅଧିକନ୍ତୁ ପଞ୍ଚମ ମଣ୍ଡଳର ୩୪ ତମ ସୂକ୍ତର ଚତୁର୍ଥ ଋକ୍‌ରେ ସୂକ୍ତରଚୟିତା କହୁଅଛନ୍ତି, ''ଯେ ନିଜର ପିତା -ମାତା ଓ ଭ୍ରାତାଙ୍କୁ ନିଜେ ବଧ କରନ୍ତି, (ବା ଯାହାର ପିତା, ମାତା, ଭ୍ରାତାଙ୍କୁ, ଇନ୍ଦ୍ର ସ୍ୱୟଂ ବଧ କରିଛନ୍ତି- Wilson) ଇନ୍ଦ୍ର ତାଠାରୁ ମଧ୍ୟ ଦୂରେଇ ଯାଆନ୍ତି ନାହିଁ । ତା ଦ୍ୱାରା ଅର୍ପିତ ହବ୍ୟ ଗ୍ରହଣ କରିବାକୁ ସେ ଅନିଚ୍ଛୁକ ନୁହନ୍ତି, ଧନ ସମୃଦ୍ଧି ପ୍ରଦାନକାରୀ, ନିୟାମକ ଇନ୍ଦ୍ର ପାପରୁ, ଅନ୍ୟାୟଠାରୁ ଦୂରେଇ ଯାଆନ୍ତି ନାହିଁ ।'' ପରୋକ୍ଷରେ ଯେତେ ବଡ ପାପୀ ଜଣେ ବ୍ୟକ୍ତି ହୋଇଥାଉ ପଛେ, ଇନ୍ଦ୍ରଙ୍କୁ ସେ ସ୍ତୁତି କଲେ, ହବ୍ୟ ପ୍ରଦାନ କଲେ ତାଙ୍କର ଶୁଭଦୃଷ୍ଟି ଆକର୍ଷଣ କରିବ ବୋଲି ଏତଦ୍ୱାରା ସୂଚିତ ହେଉଛି ବୋଲି କେହି କେହି ଅର୍ଥ କରିଅଛନ୍ତି । ଷଷ୍ଠ ମଣ୍ଡଳର ୪୭ତମ ସୂକ୍ତର ସପ୍ତଦଶ ଋକ୍‌ର ପ୍ରଥମାର୍ଦ୍ଧରେ ସୂକ୍ତ ରଚୟିତା କହୁଅଛନ୍ତି,''ଏହି ଇନ୍ଦ୍ର ପୂର୍ବେ ଯେ ଧର୍ମ କାର୍ଯ୍ୟ କରିଥିଲେ ସେମାନଙ୍କୁ ପରିତ୍ୟାଗ କରନ୍ତି ଏବଂ ସେମାନଙ୍କ ପ୍ରତି ଦ୍ୱେଷ, ଶତ୍ରୁତା ପ୍ରକାଶ କରି ସେମାନଙ୍କଠାରୁ ନିକୃଷ୍ଟ ବ୍ୟକ୍ତିମାନଙ୍କ ପ୍ରତି ବନ୍ଧୁତୁଲ୍ୟ ଆଚରଣ କରନ୍ତି ।'' ଅବଶ୍ୟ ଋକ୍‌ଟିର ଦ୍ୱିତୀୟାର୍ଦ୍ଧରେ ଇନ୍ଦ୍ରଙ୍କୁ ସମ୍ବୋଧନ କରି କୁହାହୋଇଅଛି, '' ତୁମକୁ ଉପାସନା କରୁ ନ ଥିବା ବ୍ୟକ୍ତିଙ୍କୁ ତୁମେ ପରିତ୍ୟାଗ କରି ତୁମର ସ୍ତୁତିକାରୀ ସେବାକାରୀଙ୍କ ସହିତ ବହୁ ବର୍ଷକାଳ ଅବସ୍ଥାନ କର । '' ଇନ୍ଦ୍ରଙ୍କର ଯେପରି କୌଣସି ନୀତି ନିୟମ, ବିଚାର ନାହିଁ । ଯେତେବେଳେ ଯେପରି ଖିଆଲ ତାଙ୍କର ହୁଏ, ସେପରି କରନ୍ତି ।

ଷଷ୍ଠ ମଣ୍ଡଳର ୩୫ ତମ ସୂକ୍ତଟିର ପାଞ୍ଚୋଟି ଋକ୍‌ମଧ୍ୟରୁ ପ୍ରଥମ ତିନୋଟି ଋକ୍‌ରେ ପ୍ରଶ୍ନ ଗୁଡିଏ ପରିଲକ୍ଷିତ ହୁଏ । ସ୍ତୋତାଙ୍କର ସ୍ତୁତି ଇନ୍ଦ୍ରଙ୍କ ନିକଟରେ ପହଞ୍ଚିବାରେ ଅସ୍ୱାଭାବିକ ବିଳମ୍ବ ଘଟିଲାପରି ସ୍ତୋତାଙ୍କୁ ମନେ ହେଉଛି । ଅଧୀର, ଦ୍ୱିଧାକ୍ରାନ୍ତ ସ୍ତୋତା ପ୍ରଶ୍ନ କରୁଛନ୍ତି,

"ହେ ଇନ୍ଦ୍ର, ମୋର ସ୍ତୋତ୍ରସବୁ କେବେ ରଥାରୋହୀ ତୁମ ନିକଟରେ ପହଞ୍ଚିବେ ? ତୁମେ କେବେ ତୁମର ଉପାସକ ମତେ ସହସ୍ର ବ୍ୟକ୍ତିଙ୍କୁ ଭରଣ ପୋଷଣ କରିବା ପାଇଁ ଉପାୟ (ବିତ୍ତ ଆଦି) ପ୍ରଦାନ କରିବ ? କେବେ ତୁମେ ତୁମର ସ୍ତବକାରୀ ମତେ ମୋର ସ୍ତୋତ୍ର ପାଇଁ ପୁରସ୍କାର ସ୍ୱରୂପ ଧନ ପ୍ରଦାନ କରିବ ? କେବେ ବା ତୁମେ ଯଜ୍ଞ କାର୍ଯ୍ୟରେ ସମସ୍ତଙ୍କୁ (ଯଜ୍ଞୋପଯୋଗୀ) ଅନ୍ନ ଉତ୍ପାଦନ କରିବାକୁ ସକ୍ଷମ କରିବ ?" କେବେ ସ୍ତୋତାଙ୍କର ଯୁଦ୍ଧରେ ଜୟ ହେବ, କେବେ ଇନ୍ଦ୍ର ତାଙ୍କୁ ଧେନୁ, ଅନ୍ନ, ବିପୁଳ ଧନ ଦାନ କରିବେ, ଇତ୍ୟାଦି ପ୍ରଶ୍ନ ସ୍ତୋତା କରିଅଛନ୍ତି । ବିଳମ୍ବ ଯେପରି ସ୍ତୋତାଙ୍କ ପକ୍ଷରେ ଅସହ୍ୟ ହୋଇ ପଡିଛି, ତାଙ୍କର ବିଶ୍ୱାସ ଯେପରି ଟହଲି ଯାଇଛି । ଅବଶ୍ୟ ଶେଷ ଦୁଇ ଋକ୍‌ରେ ଇନ୍ଦ୍ରଙ୍କର ଗତାନୁଗତିକ ସ୍ତୁତି କରା ହୋଇଅଛି । ସ୍ତୋତାଙ୍କର ବିଶ୍ୱାସର ଦୁର୍ବଳତା ପ୍ରକାଶ ପାଇଅଛି ଯେତେବେଳେ ସେ ପଞ୍ଚମ (ଶେଷ) ଋକ୍‌ରେ ଗୋଟିଏ ସ୍ଥାନରେ ପ୍ରାର୍ଥନା କରିଛନ୍ତି, " ମୁଁ ଯେପରି ତୁମର ସ୍ତୁତିସମନ୍ୱିତ ସ୍ତୋତ୍ର ଉଚ୍ଚାରଣ କରିବାରୁ ବିରତ ନ ହୁଏ । "

ଅଷ୍ଟମ ମଣ୍ଡଳର ଏକଶତତମ ସୂକ୍ତର ତୃତୀୟ ଋକ୍‌ରେ ସୂକ୍ତରଚୟିତା କହୁଅଛନ୍ତି, "ହେ ସଂଗ୍ରାମକାମୀଗଣ । ଇନ୍ଦ୍ର ଅଛନ୍ତି, ଏହା ଯଦି ସତ୍ୟ ହୋଇଥାଏ, ତେବେ ସେହି ଇନ୍ଦ୍ରଙ୍କୁ ଲକ୍ଷ୍ୟ କରି ସତ୍ୟମୟ ସ୍ତୋମ ବା ସ୍ତୋତ୍ର ଉଚାରଣ କର ।" 'ଯଦି'ର ପ୍ରୟୋଗ କେତେକଙ୍କ ମନରେ ଇନ୍ଦ୍ରଙ୍କର ଅସ୍ତିତ୍ୱ ବିଷୟରେ ସନ୍ଦେହର ସୂଚନା ଦେଉଅଛି । ସେହି ସନ୍ଦେହ ପ୍ରକଟିତ ହୋଇଛି ଋକ୍‌ଟିର ଦ୍ୱିତୀୟାର୍ଦ୍ଧରେ - "ନେମ ଋଷି କହନ୍ତି , ଇନ୍ଦ୍ର ନାମଧାରୀ କେହି ନାହିଁ । କିଏ ତାଙ୍କୁ ଦେଖିଛି ? ଆମ୍ଭେମାନେ କାହାକୁ ସ୍ତୁତି କରିବା ?" ଅବଶ୍ୟ ପରବର୍ତ୍ତୀ ଋକ୍‌ରେ ଇନ୍ଦ୍ର ନିଜକୁ ପ୍ରକାଶ କରି, ତାଙ୍କୁ ଦର୍ଶନ କରିବାକୁ ସ୍ତୋତାଙ୍କୁ ଆହ୍ୱାନ କରି ଓ ନିଜର ମହିମା ବର୍ଣ୍ଣନା କରି ସ୍ତୋତାଙ୍କୁ ଅଭିଭୂତ କରିଦେଇଅଛନ୍ତି । ସୂକ୍ତରଚନାକାରୀ ଯେପରି ପରବର୍ତ୍ତୀ ଋକ୍‌ଗୁଡିକ ଦ୍ୱାରା ଲୋକଙ୍କ ମନରେ ଇନ୍ଦ୍ରଙ୍କ ଅସ୍ତିତ୍ୱ ଓ ପରୋକ୍ଷରେ ଅନ୍ୟ ଦେବଦେବୀଙ୍କ ଅସ୍ତିତ୍ୱ ବିଷୟରେ ଯେଉଁ ସନ୍ଦେହ ମୁଣ୍ଡ ଟେକୁଥିଲା, ତାହାକୁ ଦୂର କରିବାକୁ ପ୍ରୟାସ କରିଛନ୍ତି ।

ଦଶମ ମଣ୍ଡଳର ଦ୍ୱାଦଶ ସୂକ୍ତରେ ଅଗ୍ନିଙ୍କର ସ୍ତୁତି କରାହୋଇଅଛି । କିନ୍ତୁ ସେହି ସ୍ତୁତି ମଧ୍ୟରେ ସହସା ସନ୍ଦେହ ପ୍ରକାଶିତ ହୋଇଅଛି ପଞ୍ଚମ ଋକ୍‌ରେ । ସ୍ତୋତା କହୁଛନ୍ତି " ଅଗ୍ନିରାଜା ତା' ହେଲେ କଣ ଆମର ହୋମ ଗ୍ରହଣ କରିଛନ୍ତି ? ଆମେ କଣ ତାଙ୍କର ଯଥାଯୋଗ୍ୟ ଅର୍ଚ୍ଚନା କରିପାରିଛୁ ? କିଏ ବା ତାହା ଜାଣେ ? (କିଏ ତାହା ସ୍ଥିର କରିବ ? - Wilson) ।" ପୁଣି ଅଗ୍ନିଙ୍କ ବିଷୟରେ ଅଜ୍ଞତା ପ୍ରକାଶ ପାଇଅଛି ଅଷ୍ଟମ ଋକ୍‌ରେ,"ଯେଉଁ ପ୍ରଜ୍ଞାଲୋକସମ୍ପୃକ୍ତ ଅଗ୍ନି (ଯଜ୍ଞାନୁଷ୍ଠାନରେ ) ଉପସ୍ଥିତ ରହିଲେ ଦେବତାମାନେ ସ୍ୱ ସ୍ୱ କାର୍ଯ୍ୟ ସମ୍ପାଦନ କରନ୍ତି, ତାଙ୍କ ବିଷୟରେ ଆମ୍ଭେମାନେ ଜାଣୁ ନାହିଁ ।"

ସେହି ମଣ୍ଡଳର ୭୪ ତମ ସୂକ୍ତର ପ୍ରଥମ ଋକ୍‌ରେ ଇନ୍ଦ୍ର କେଉଁଠାରେ ଅଛନ୍ତି, ସେ ବିଷୟରେ ସନ୍ଦେହ ପ୍ରକାଶିତ ହୋଇଅଛି, ଯେପରି ସ୍ତୋତା ଅନୁଭବ କରୁଛନ୍ତି, ତାଙ୍କର ସ୍ତୁତି

ଇନ୍ଦ୍ରଙ୍କ ନିକଟରେ ପହଞ୍ଚୁ ନାହିଁ । ସେ ପଚାରୁଛନ୍ତି, '' ଇନ୍ଦ୍ର ବୋଧହୁଏ କାହାକୁ ଧନ ପ୍ରଦାନ କରିବାକୁ ଅନ୍ୟ କୌଣସି ସ୍ଥାନକୁ ଆକୃଷ୍ଟ ହୋଇଯାଇଛନ୍ତି ? (ଅନ୍ୟ କିଏ ଆଉ କୌଣସି ସ୍ଥାନରେ ଧନ କାମନା କରି ଇନ୍ଦ୍ରଙ୍କୁ ପ୍ରାର୍ଥନା କଲାରୁ ସେ ସେଠାକୁ ଯାଉଛନ୍ତି, ସ୍ତୋତାଙ୍କର ପ୍ରାର୍ଥନା ଶୁଣି ପାରୁ ନାହାନ୍ତି ବୋଲି ତାଙ୍କର ସନ୍ଦେହ ହେଉଅଛି ) । ଅବା ଦ୍ୟୁଲୋକ ଓ ଭୂଲୋକରେ ସ୍ତବଦ୍ୱାର ଯଜ୍ଞଦ୍ୱାରା ଆକୃଷ୍ଟ ହୋଇ ସ୍ଥାନାନ୍ତର ଯାଇଛନ୍ତି ? ଅଥବା ସଂଗ୍ରାମରେ ଜୟୀ ହୋଇ ସମୃଦ୍ଧି ଲାଭ କରିଥିବା କ୍ଷିପ୍ରଗତି ବ୍ୟକ୍ତିମାନଙ୍କ ଦ୍ୱାରା ଆକୃଷ୍ଟ ହୋଇଅଛନ୍ତି ? କିମ୍ୱା ଅଦ୍‌ଭୂତରୂପ ଶତ୍ରୁମାନଙ୍କୁ ସଂହାରକରି ଯଶସ୍ୱୀ ହୋଇଥିବା ବ୍ୟକ୍ତିଗଣଙ୍କ ଦ୍ୱାରା ଆକୃଷ୍ଟ ହୋଇ ଯାଇଅଛନ୍ତି ସ୍ଥାନାନ୍ତରକୁ ?''

ସ୍ତୁତି ସ୍ତୁତ ଦେବତାଙ୍କର ଉପଯୋଗୀ ହେଉଛି କି ନାହିଁ, ତାଙ୍କଠାରେ ଯଥାଯଥ ଭାବରେ ପହଞ୍ଚୁଛି କି ନାହିଁ ସେ ବିଷୟରେ ସନ୍ଦେହ ଋଗ୍‌ବେଦର ବହୁ ସୂକ୍ତରେ ପ୍ରକାଶ ପାଇଛି । ପ୍ରଥମ ମଣ୍ଡଳର ୭୬ ତମ ସୂକ୍ତର ପ୍ରଥମ ଋକ୍‌ରେ ଅଗ୍ନିଙ୍କୁ ସମ୍ବୋଧନ କରି ସ୍ତୋତା କହୁଛନ୍ତି, - ''ହେ ଅଗ୍ନି, ତୁମର ମନକୁ କେଉଁ ଉପାୟରେ ସନ୍ତୁଷ୍ଟ କରିହେବ ? କେଉଁ ପ୍ରକାର ସ୍ତୁତି ତୁମର ପ୍ରୀତିଦାୟକ ହେବ ? ମହାକ୍ଷମତାଶାଳୀ ତୁମେ, ତୁମର ଉପଯୋଗୀ ଯଜ୍ଞ କିଏ କରିପାରିବ ? କେଉଁ ବୁଦ୍ଧି ବଳରେ ବା ମୁଁ ତୁମକୁ (ଯୋଗ୍ୟ) ହବ୍ୟ ପ୍ରଦାନ କରି ପାରିବି ?'' ସେହି ମଣ୍ଡଳର ଆଉ ଗୋଟିଏ ସୂକ୍ତରେ ଅଗସ୍ତ୍ୟ ମୁନି ପ୍ରଶ୍ନ କରୁଛନ୍ତି, ''ତରୁଣ ମରୁଦ୍‌ଗଣ କାହାର ହବ୍ୟ ସ୍ୱୀକାର କରନ୍ତି ? କେଉଁ ପ୍ରକାର ପ୍ରକୃଷ୍ଟ ସ୍ତୋତ୍ରଦ୍ୱାରା ଆମେ ତାଙ୍କୁ ପ୍ରୀତ କରିପାରିବୁ ?'' ଦଶମ ମଣ୍ଡଳର ୨୯ ତମ ସୂକ୍ତର ତୃତୀୟ ଓ ଚତୁର୍ଥ ଋକ୍‌ରେ ସ୍ତୋତାଙ୍କର ଅଧୀରତା, ଧୈର୍ଯ୍ୟହୀନତା ଓ ସନ୍ଦେହ ପ୍ରକାଶ ପାଇଛି । ସ୍ତୋତା ଇନ୍ଦ୍ରଙ୍କୁ ସଂମ୍ବୋଧନ କରି ପଚାରୁଛନ୍ତି,''ହେ ଇନ୍ଦ୍ର ! କେଉଁ ପ୍ରକାର (ହବ୍ୟଗ୍ରହଣଜନିତ, ସୋମପାନଜନିତ ?) ପ୍ରମତ୍ତତା ତୁମର ସର୍ବାପେକ୍ଷା ପ୍ରୀତିପ୍ରଦ ?........ କେବେ ମୁଁ ଉତ୍ତମ ବାହନ ଲାଭ କରିବି, ବୁଦ୍ଧି ଲାଭ କରିବି ? ...... କେବେ ମୁଁ ମୋର ସ୍ତୁତି ଦ୍ୱାରା ଆପଣଙ୍କ ନିକଟରୁ ଅନ୍ନ ଓ ଅର୍ଥ ନିଜ ନିକଟକୁ ଆକର୍ଷଣ କରିପାରିବି ?'' କାମ୍ୟ ବସ୍ତୁ ପାଇବାରେ ବିଳମ୍ୱ ହେବାରୁ ସେ ଯେପରି ଇନ୍ଦ୍ରଙ୍କ ନିକଟରେ ଅଭିଯୋଗ କରୁଅଛନ୍ତି । ହୁଏତ ତାଙ୍କର ସ୍ତବ ଉପଯୁକ୍ତ ହେଉନାହିଁ । ପଚାରୁଛନ୍ତି ସେ, ''ହେ ଇନ୍ଦ୍ର, କି ପ୍ରକାର ସ୍ତବ ପାଠ କଲେ, କି ପ୍ରକାର ଯଜ୍ଞାଦି କର୍ମ କଲେ, ତୁମେ (ସନ୍ତୁଷ୍ଟ ହୋଇ ) ମନୁଷ୍ୟମାନଙ୍କୁ ତୁମର ଅନୁରୂପ କରିବ ? କେବେ ତୁମେ ଆସିବ ?''

ଦଶମ ମଣ୍ଡଳର ୮୧ ତମ ସୂକ୍ତରେ ସୃଷ୍ଟିକର୍ତ୍ତାଙ୍କୁ ବିଶ୍ୱକର୍ମା ରୂପେ ଅଭିହିତ କରା ହୋଇଅଛି । ଏହି ସୂକ୍ତରେ ସ୍ତୋତା ସୃଷ୍ଟିର ରହସ୍ୟ ଚିନ୍ତାକରି ବିସ୍ମୟାବିଷ୍ଟ ହୋଇ ପଡିଛନ୍ତି । ଦ୍ୱିତୀୟ ଋକ୍‌ରେ ପ୍ରଶ୍ନ କରିଛନ୍ତି, -''(ପ୍ରଳୟ ପରେ) ସୃଷ୍ଟି କାଳରେ ତାଙ୍କର (ସ୍ରଷ୍ଟା ବିଶ୍ୱକର୍ମା ବା ପରମେଶ୍ୱରଙ୍କର) ଅଧିଷ୍ଠାନ ବା ଆଶ୍ରୟସ୍ଥଳ କଣ ଥିଲା ? କେଉଁ ସ୍ଥାନରୁ କେଉଁ ପ୍ରକାରେ ସେ ସୃଷ୍ଟିକ୍ରିୟା ଆରମ୍ଭ କଲେ ? ସେହି ସର୍ବଦର୍ଶୀ ବିଶ୍ୱକର୍ମା କେଉଁ ସ୍ଥାନରୁ

ପୃଥିବୀ ନିର୍ମାଣ ଆରମ୍ଭ କରି କପରି ସ୍ୱଶକ୍ତି ବଳରେ ତାହା ଉପରେ ଆକାଶ ବିସ୍ତାର କଲେ ? (ଅର୍ଥାତ୍ ଭୂଲୋକ ଓ ଦ୍ୟୁଲୋକ ସୃଷ୍ଟି କଲେ ?)'' । ମାନସିକ ଅଜ୍ଞତା, ବିସ୍ମୟବିମୂଢ଼ତା ଓ ଦ୍ୱନ୍ଦ ଏହି ପ୍ରଶ୍ନ ଗୁଡିକରେ ପ୍ରକାଶ ପାଉଛି । କୁମ୍ଭକାର ତାର କର୍ମଶାଳାରେ ଚକ୍ର ସାହାଯ୍ୟରେ ମୃତ୍ତିକାକୁ ବିଭିନ୍ନ ପ୍ରକାର ପାତ୍ରର ରୂପ ଦିଏ । ବିଶ୍ୱକର୍ମା କେଉଁଠାରେ, କେଉଁ ବସ୍ତୁରେ, କିପରି ଭାବରେ ସୃଷ୍ଟି କରନ୍ତି, ସ୍ତୋତା ଭାବିପାରୁ ନାହାନ୍ତି । ପୁଣି ତାଙ୍କ ମନରେ ପ୍ରଶ୍ନ ଉଦିତ ହୋଇଛି, ସେ କେଉଁ ବନ, କେଉଁ ବୃକ୍ଷର କାଷ୍ଠ ଯହିଁରୁ ସେମାନେ (ବିଶ୍ୱକର୍ମାଙ୍କ ଅନୁଚରଗଣ) ଦ୍ୟୁଲୋକ ଓ ଭୂଲୋକ ନିର୍ମାଣ କଲେ ? ପଣ୍ଡିତଗଣଙ୍କୁ ସମ୍ବୋଧନ କରି ସ୍ତୋତା କହୁଛନ୍ତି, ''ହେ ମନୀଷୀଗଣ, ତୁମ୍ଭେମାନେ ଥରେ ମନକୁ ପ୍ରଶ୍ନ କର, ସେ (ସୃଷ୍ଟିକର୍ତ୍ତା ବିଶ୍ୱକର୍ମା ) କାହା ଉପରେ ଅଧିଷ୍ଠିତ ହୋଇ ବିଶ୍ୱ ବ୍ରହ୍ମାଣ୍ଡକୁ ଧାରଣ କରିଥିଲେ ?'' ସୃଷ୍ଟିକ୍ରିୟାର ବର୍ଣ୍ଣନା ଅଛି, ବିଶ୍ୱକର୍ମାଙ୍କର କାର୍ଯ୍ୟର ବର୍ଣ୍ଣନା ଅଛି ସୂକ୍ତଟିରେ, କିନ୍ତୁ ମଧ୍ୟେ ମଧ୍ୟେ ଏହି ପ୍ରଶ୍ନ ସବୁ ସ୍ତୋତାଙ୍କର ମନକୁ ଆସିଛି ।

ସାୟଣ ଏବଂ ବହୁ ଟୀକାକାରଙ୍କ ମତରେ ଦ୍ୱିତୀୟ ଋକ୍‌ର ପ୍ରଶ୍ନଗୁଡିକ ବିପରୀତ ଉତ୍ତରର ସୂଚନା ଦେଉଛନ୍ତି । ଅର୍ଥାତ୍ ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟି ପ୍ରକ୍ରିୟା ପାଇଁ କୌଣସି ଅଧିଷ୍ଠାନ, କୌଣସି ବସ୍ତୁ, କୌଣସି ପ୍ରଣାଳୀ ବା ଉପାୟର ବା ଉପକରଣର ଆବଶ୍ୟକତା ନାହିଁ । ସୃଷ୍ଟିକର୍ତ୍ତାଙ୍କ ବିଷୟରେ ଏହି ସବୁ ପ୍ରଶ୍ନ ଅବାନ୍ତର । ପୁଣି ଏ ପ୍ରକାର ଟୀକାକାରଗଣଙ୍କ ମତରେ ଚତୁର୍ଥ ଋକ୍‌ର ପ୍ରଶ୍ନଗୁଡିକ ପରୋକ୍ଷରେ ସୂଚନା ଦେଉଛନ୍ତି ଯେ ବିଶ୍ୱକର୍ମା ଶୂନ୍ୟରୁ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କଲେ ।

କିନ୍ତୁ ଏହି ପ୍ରଶ୍ନଗୁଡିକ ଯେ ଦ୍ୱନ୍ଦାକ୍ରାନ୍ତ, ବିସ୍ମୟବିହ୍ୱଳ ଅଜ୍ଞ ମାନବଙ୍କର ହୃଦୟରେ ସ୍ରଷ୍ଟା ଓ ସୃଷ୍ଟିପ୍ରକ୍ରିୟାର ଦୁର୍ଜ୍ଞେୟ ରହସ୍ୟଜନିତ ସ୍ୱାଭାବିକ ପ୍ରଶ୍ନ, ଏହା ସ୍ପଷ୍ଟ ଜଣା ପଡୁଛି ଷଷ୍ଠ ଋକ୍‌ରେ ସ୍ତୋତାଙ୍କ ଦ୍ୱାରା ପ୍ରଦତ୍ତ ଏକ ମନ୍ତବ୍ୟରୁ - ''ଚତୁର୍ଦ୍ଦିଗର ସମସ୍ତ ଲୋକ ନିର୍ବୋଧ ।'' ପଞ୍ଚମ ଋକ୍‌ରେ ଏବଂ ଷଷ୍ଠ ଋକ୍‌ର ପ୍ରଥମାଂଶରେ ବିଶ୍ୱକର୍ମାଙ୍କୁ ପ୍ରାର୍ଥନା କରା ହୋଇଅଛି, ''ତୁମେ ନିଜେ ସ୍ୱୟଂ ନିଜର ଯଜ୍ଞ କରି ନିଜର ଶରୀର ପୁଷ୍ଟ କର ।'' ଏହି ଏକ ପ୍ରକାର ଅବୋଧ୍ୟ ବାକ୍ୟର ଅର୍ଥ କରି ଟୀକାକାର ମହୀଧର କହିଛନ୍ତି ଯେ ମନୁଷ୍ୟ ସୃଷ୍ଟିକର୍ତ୍ତାଙ୍କର ଅର୍ଚ୍ଚନା କରିବା ପାଇଁ ଅଯୋଗ୍ୟ । ପ୍ରଶ୍ନଗୁଡିକ ଏହି ସାଧାରଣ ନିର୍ବୋଧ ମାନବର ସ୍ୱାଭାବିକ ପ୍ରଶ୍ନ । ସେ ସୃଷ୍ଟିକର୍ତ୍ତାଙ୍କ ବିଷୟରେ ଚିରାଚରିତ ଧାରଣା ଗ୍ରହଣ କରିବାକୁ ଚେଷ୍ଟା କରୁଛି, କିନ୍ତୁ ତାହା ମନରେ ଏହି ସବୁ ପ୍ରଶ୍ନ ଉଦିତ ହେଉଅଛି ।

୮୨ ତମ ସୂକ୍ତରେ ଏପରି ପ୍ରଶ୍ନର ବହୁଳତା ଦେଖାଯାଏ ନାହିଁ, ତେବେ ଗୋଟିଏ ପ୍ରଶ୍ନ ଅଛି - ଅନୁରୂପ ସୃଷ୍ଟିରହସ୍ୟ, ସୃଷ୍ଟିକର୍ତ୍ତାଙ୍କ ସ୍ୱରୂପର ରହସ୍ୟ ଉଦ୍‌ଘାଟନ କରିବାରେ ଅକ୍ଷମ ସ୍ତୋତାଙ୍କର ଉକ୍ତି- ''ସେ କେଉଁ ଗର୍ଭ ଯାହା ଦ୍ୟୁଲୋକର ଅପରପାରରେ, ଭୂଲୋକର ଅପରପାରରେ ଦେବତାଗଣଙ୍କୁ, ଅସୁରଗଣଙ୍କୁ ( ବା ବଳବାନ୍ ଦେବତାଗଣଙ୍କୁ) ଅତିକ୍ରମ କରି ବିଦ୍ୟମାନ ଥିଲା, ଯାହାକୁ ଜଳଗଣ ପ୍ରଥମେ ଧାରଣ କରିଥିଲେ, ଯାହା ମଧ୍ୟରେ ସମସ୍ତ

ଦେବତା ଅନ୍ତର୍ଭୁକ୍ତ ଥାଇ ପରସ୍ପରଙ୍କୁ ନିରୀକ୍ଷଣ କରୁଥିଲେ ?'' ଟୀକାକାର Wilson ଙ୍କ ମତରେ ଏହି ଗର୍ଭ ସ୍ୱୟଂ ବିଶ୍ୱକର୍ମା । ପରବର୍ତ୍ତୀ (ଷଷ୍ଠ) ଋକ୍‌ରେ କୁହା ହୋଇଛି, ଜଳଗଣହିଁ ପ୍ରଥମେ ସେହି ଗର୍ଭ ଧାରଣ କରିଥିଲେ ଯହିଁରେ ଦେବତାଗଣ ସମ୍ମିଳିତ ହୋଇଥିଲେ , ସମଗ୍ର ସୃଷ୍ଟି, ସମଗ୍ର ବ୍ରହ୍ମାଣ୍ଡ ଅବସ୍ଥାନ କରୁଥିଲା । ଅଜାତ ସୃଷ୍ଟିକର୍ତ୍ତା ପୁରୁଷଙ୍କ ନାଭିଦେଶରେ ତାହା ସଂସ୍ଥାପିତ ହୋଇଥିଲା । Wilson ଙ୍କ ମତ ଗ୍ରହଣ କଲେ ବୁଝିବାକୁ ହେବ,ବିଶ୍ୱକର୍ମା ଅଜାତ ସୃଷ୍ଟିକର୍ତ୍ତା ପୁରୁଷଙ୍କ ଗର୍ଭ, କିନ୍ତୁ ପୂର୍ବାପରଋକ୍‌ଗୁଡିକ ଦୃଷ୍ଟିରୁ ବିଶ୍ୱକର୍ମା ହିଁ ସେହି ଅଜାତସୃଷ୍ଟିକର୍ତ୍ତା ବୋଲି ପ୍ରତୀୟମାନ ହେଉଅଛି । ଯେଉଁ ସନ୍ଦେହ ବର୍ତ୍ତମାନ ପାଠକ ମନରେ ଜାଗ୍ରତ ହେଉଅଛି, ଋଗ୍‌ବେଦୀୟ ଯୁଗରେ ମଧ୍ୟ ସେହି ଦ୍ୱିଧା, ସନ୍ଦେହ ଜାଗ୍ରତ ହୋଇଥିଲା । ଶେଷ (୭ମ) ଋକ୍‌ରେ ସୂକ୍ତ ରଚୟିତା ସୃଷ୍ଟିକର୍ତ୍ତାଙ୍କ ସ୍ୱରୂପ ବିଷୟରେ ମାନବିକ ଅଜ୍ଞତା ସ୍ୱୀକାର କରି କହିଅଛନ୍ତି, ''ଯେ ସୃଷ୍ଟି କରିଛନ୍ତି, ତାଙ୍କୁ ତୁମେ ବୁଝି ପାର ନାହିଁ । ତୁମ୍ଭମାନଙ୍କର ହୃଦୟ ତାଙ୍କୁ ବୁଝିବାର କ୍ଷମତା ଲାଭ କରିନାହିଁ । କୁଯାଶାଚ୍ଛନ୍ନ ମନରେ ମନୁଷ୍ୟମାନେ ସୃଷ୍ଟିକର୍ତ୍ତା ଓ ତାଙ୍କର ସୃଷ୍ଟିପ୍ରକ୍ରିୟା ବିଷୟରେ ନାନାପ୍ରକାର କଳ୍ପନା ଜଳ୍ପନା କରନ୍ତି, ସେମାନେ ନିଜର ପ୍ରାଣର ତୃପ୍ତି ପାଇଁ ନାନାପ୍ରକାର ଆହାର କରନ୍ତି, ନାନା ପ୍ରକାର ଛନ୍ଦରେ ନାନା ସ୍ତବ ସ୍ତୁତି ଉଚ୍ଚାରଣ କରନ୍ତି । '' ସୂକ୍ତର ପ୍ରଥମ ଚାରୋଟି ଋକ୍‌ରେ ସୃଷ୍ଟି ଓ ସୃଷ୍ଟିକର୍ତ୍ତାଙ୍କ ବିଷୟରେ ବହୁ ଧାରଣା ପ୍ରକାଶିତ ହୋଇଛି । କିନ୍ତୁ ପଞ୍ଚମ ଋକ୍‌ରୁ ସପ୍ରଶ୍ନ ଦୃଷ୍ଟିକୋଣ ଲକ୍ଷିତ ହେଉଅଛି ଓ ଶେଷ ଋକ୍‌ରେ ମାନବଜ୍ଞାନର ସସୀମତା, ସୃଷ୍ଟି ଓ ସୃଷ୍ଟିକର୍ତ୍ତାଙ୍କ ସ୍ୱରୂପ ଉଦ୍‌ଘାଟନରେ ଅକ୍ଷମତା, ପରାଜୟକୁ ପ୍ରକାଶ କରାଯାଇଅଛି । ମାନବିକ ସଂଶୟକୁ କୁହେଳିକାରୂପେ ଚିତ୍ର କରା ହୋଇଛି । ସାୟଣ ଏହି ଋକର ଟୀକା କରି କହିଛନ୍ତି ଯେ, କେବଳ ଇନ୍ଦ୍ରିୟଲବ୍ଧ ଜ୍ଞାନ ଉପରେ ନିର୍ଭରଶୀଳ , ସଂକୀର୍ଣ୍ଣ ବ୍ୟକ୍ତିତ୍ୱର ବେଷ୍ଟନୀରେ ଆବଦ୍ଧ, ସସୀମଚେତନା ବିଶିଷ୍ଟ ମନୁଷ୍ୟ ପକ୍ଷରେ ବିଶ୍ୱକର୍ମା ପରମେଶ୍ୱରଙ୍କର ଅତିନ୍ଦ୍ରିୟ, ଅସୀମ, ସଂକୀର୍ଣ୍ଣ-ନିର୍ଦ୍ଦିଷ୍ଟ-ବ୍ୟକ୍ତିତ୍ୱ-ବିହୀନ ସତ୍ତା ଉପଲବ୍‌ଧି କରିବା ସମ୍ଭବ ନୁହେଁ । ମହୀଧର କହନ୍ତି ଯେ ଐହିକ ତୃପ୍ତି, ସୁଖ ଲାଭ ପାଇଁ ଓ ନାନା ଛନ୍ଦରେ ରଚିତ ସ୍ତୁତି ଇତ୍ୟାଦି ଉଚ୍ଚାରଣ କରି ପାରତ୍ରିକ ସୁଖଲାଭ ପାଇଁ ସତତ ଚେଷ୍ଟା କରୁଥିବା ମନୁଷ୍ୟ ସତ୍ୟ,ତତ୍ତ୍ୱ ଉପଲବ୍‌ଧି କରିବାକୁ ଅକ୍ଷମ ।

ଦଶମ ମଣ୍ଡଳର ୮୮ତମ ସୂକ୍ତର ସପ୍ତଦଶ ଓ ଅଷ୍ଟାଦଶ ଋକ୍ ଦୁଇଟିରେ ମଧ୍ୟ ମାନବିକ ଅଜ୍ଞତା ଓ ଦ୍ୱନ୍ଦ୍ୱର ସୂଚନା ମିଳେ । ପ୍ରଶ୍ନ କରିଛନ୍ତି ସ୍ତୋତା - ''ଯେତେବେଳେ ଅଧଃସ୍ଥ ଅଗ୍ନି ଓ ଊର୍ଦ୍ଧ୍ୱସ୍ଥ ଅଗ୍ନି ପରସ୍ପର ସହିତ ବିବାଦ କଲେ, କହିଲେ, 'ଆମେ ଦୁହେଁ ଯଜ୍ଞର ନେତା (ସମ୍ପାଦନକର୍ତ୍ତା); କିନ୍ତୁ ଆମ ଦୁହିଁଙ୍କ ଭିତରୁ ଅଧିକ ଜ୍ଞାନୀ କିଏ ସେ,' ସେତେବେଳେ ଉପଯୁକ୍ତ ବନ୍ଧୁଗଣ ଯଜ୍ଞାନୁଷ୍ଠାନ କରିବାକୁ ଆସିଲେ ସତ; କିନ୍ତୁ ତାଙ୍କ ଭିତରୁ କିଏ ଏହି ପ୍ରଶ୍ନର ଉତ୍ତର ସ୍ଥିର କରିପାରିବେ ?'' ପରବର୍ତ୍ତୀ ଋକ୍‌ରେ ପ୍ରଶ୍ନ କରୁଛନ୍ତି ସ୍ତୋତା, ''ଅଗ୍ନି କେତେଜଣ ଅଛନ୍ତି ? ସୂର୍ଯ୍ୟ କେତେ ଜଣ ? ଉଷା କେତେ ଜଣ ? ଜଳ କେତେ ଜଣ ?'' ନମ୍ର ହୋଇ ସ୍ତୋତା ପିତୃଗଣଙ୍କୁ କହୁଛନ୍ତି, ''ହେ ପିତୃଗଣ, ତୁମ୍ଭମାନଙ୍କ ସହିତ ଯୁକ୍ତି ତର୍କ, ବାଦାନୁବାଦ କରିବାକୁ ମୁଁ ଏହି ପ୍ରଶ୍ନ ସବୁ ପଚାରୁ ନାହିଁ । ମୁଁ କେବଳ ପଚାରୁଛି ସତ୍ୟ କଣ

ଜାଣିବା ପାଇଁ ।'' ଏ ପ୍ରକାର ପ୍ରଶ୍ନ ବାରମ୍ବାର ସ୍ତୋତାମାନଙ୍କ ମନରେ ଜାଗ୍ରତ ହୋଇଅଛି । ଅଷ୍ଟମ ମଣ୍ଡଳର ୫୮ ତମ ସୂକ୍ତର ପ୍ରଥମ ଋକ୍‌ରେ ପ୍ରଶ୍ନ କରା ହୋଇଅଛି, ''ଯାହାଙ୍କୁ ଋତ୍ୱିକ୍‌ଗଣ ବହୁ ରୂପରେ କଳ୍ପନା କରି ଏହି ଯଜ୍ଞ ସମ୍ପାଦନ କରିଛନ୍ତି, ଯେ ମନ୍ତ୍ରବାକ୍ୟ ଉଚ୍ଚାରଣ ନ କଲେ ମଧ ସ୍ତୁତିକାରୀ ବା ବ୍ରାହ୍ମଣ ରୂପେ ନିଯୁକ୍ତ ଅଛନ୍ତି, ତାଙ୍କ ବିଷୟରେ ଯଜମାନଙ୍କର କଣ ଧାରଣା ବା ଜ୍ଞାନ ଅଛି ?''

ଦ୍ୱିତୀୟ ଋକ୍‌ରେ ଯେପରି, ମନେହୁଏ, ଏଥିର ଉତ୍ତର ଦିଆ ହୋଇଅଛି,''ଏକ ଅଗ୍ନି ବହୁଧା ସୁସମୃଦ୍ଧରୂପେ ପ୍ରକାଶିତ ହୋଇ ଅଛନ୍ତି, ଏକ ସୂର୍ଯ୍ୟ ସମଗ୍ର ବିଶ୍ୱରେ ପ୍ରଭୂତ ଭାବରେ (ବହୁସଂଖ୍ୟକ ରୂପରେ) ପ୍ରକାଶିତ ହୋଇଛନ୍ତି, ଏକ ଊଷା ଏ ସମସ୍ତଙ୍କୁ ପ୍ରକାଶ କରୁଛନ୍ତି । ଏହି ଏକ ହିଁ ସର୍ବ (ରୂପ)ରେ ପରିଣତ ହୋଇଛନ୍ତି (ଏକଂ ବା ଇଦଂ ବି ବଭୂବ ସର୍ବମ୍) ।''

ଏହି ସତ୍ୟ କିନ୍ତୁ ସର୍ବଦା ଉପଲବ୍ଧ ହୋଇ ପାରିନାହିଁ ବୋଲି ସ୍ତୋତାମାନେ ବିଭିନ୍ନ ସୂକ୍ତରେ ବାରମ୍ବାର ଅନୁରୂପ ପ୍ରଶ୍ନମାନ କରିଛନ୍ତି । ବିଭିନ୍ନ ପ୍ରକାର ଅର୍ଥ କରିଛନ୍ତି । ଟୀକାକାରମାନେ କେତେକ ସ୍ଥାନରେ ଉର୍ଦ୍ଧ୍ୱସ୍ଥ ଅଗ୍ନି ହେଉଛନ୍ତି ସୂର୍ଯ୍ୟ ଓ ଅଧଃସ୍ଥ ଅଗ୍ନି ଗୃହସ୍ଥିତ ହୋମାଗ୍ନି ବୋଲି ଅର୍ଥ କରିଥିବା ବେଳେ କେତେକ ( Wilson ଙ୍କ ପରି) ଉର୍ଦ୍ଧ୍ୱସ୍ଥ ଅଗ୍ନି ହେଉଛନ୍ତି ବାୟୁ, ବା ମଧମ ସ୍ତରର (ଦ୍ୟୁ ଲୋକ ଓ ଭୂଲୋକ ମଧସ୍ଥିତ ସ୍ତରର) ଅଗ୍ନି ବୋଲି କହୁଛନ୍ତି ।

ଦଶମ ମଣ୍ଡଳର ୧୨୧ ତମ ସୂକ୍ତଟି ସୁପ୍ରସିଦ୍ଧ । ଏଥିରେ ହିରଣ୍ୟଗର୍ଭ (ପ୍ରଜାପତି ବା ବ୍ରହ୍ମା) ପ୍ରଥମଜାତ ଓ ଆଦି ସୃଷ୍ଟିକର୍ତ୍ତା ବୋଲି ବର୍ଣ୍ଣିତ ହୋଇଅଛନ୍ତି । ୮୨ତମ ସୂକ୍ତରେ ସୃଷ୍ଟିକର୍ତ୍ତାଙ୍କୁ, 'ଅଜାତ' ବୋଲି ବର୍ଣ୍ଣନା କରା ହୋଇଅଛି । ବୁଝିବାକୁ ହେବ ଯେ ଅଜାତ ପୁରୁଷ ହିଁ ପ୍ରଥମେ ବ୍ରହ୍ମାଙ୍କୁ ସୃଷ୍ଟି କରିଥିଲେ । ତେଣୁ ବ୍ରହ୍ମା ପ୍ରଥମ ଜାତ ଏବଂ ତାଙ୍କପରେ ତାଙ୍କଠାରୁ ସମସ୍ତ ବିଶ୍ୱ (ହିରଣ୍ମୟ ଅଣ୍ଡ) ଜାତ ହେଲା । ଆପାତତଃ ସେହି ସୃଷ୍ଟିକର୍ତ୍ତାଙ୍କ ମହିମା, ସୃଷ୍ଟି ପ୍ରକ୍ରିୟାର କ୍ରମ ଓ ମାହାତ୍ମ୍ୟ ଏହି ସୂକ୍ତର ପ୍ରତ୍ୟେକ ଋକ୍‌ରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ଶେଷ ଋକ୍ ବ୍ୟତୀତ ପ୍ରତ୍ୟେକ ଋକ୍‌ରେ ଶେଷକୁ ଘୋଷାରୂପେ ରହିଛି ଗୋଟିଏ ପ୍ରଶ୍ନ-'କସ୍ମୈ ଦେବାୟ ହବିଷା ବିଧେମ?' ଅର୍ଥାତ 'କେଉଁ ଦେବତାଙ୍କୁ ଆମେ ହବ୍ୟଦ୍ୱାରା ପୂଜା କରିବା ?' କେବଳ ଶେଷ ଋକ୍ (୧୦ମ) ରେ ପ୍ରଜାପତିଙ୍କର ସ୍ତୁତି ମାତ୍ର ରହିଛି । କୌଣସି ପ୍ରଶ୍ନ ନାହିଁ । ସମସ୍ତ ପ୍ରଶ୍ନର ଯେପରି ଅବସାନ ଘଟିଛି । ସ୍ତୋତା କହୁଛନ୍ତି, ''ହେ ପ୍ରଜାପତି ! ତୁମ ଛଡା ଅନ୍ୟ ଆଉ କେହି ଏ ସମସ୍ତଙ୍କୁ ସୃଷ୍ଟି କରିନାହାନ୍ତି କି ନିୟନ୍ତ୍ରଣ କରୁନାହାନ୍ତି ।'' ଧନ କାମନା କରିଛନ୍ତି ସେ , - ଯେଉଁ ସବୁ କାମନାର ପୂରଣ ପାଇଁ ସେ ଯଜ୍ଞ କରୁଛନ୍ତି, ସେ ସମସ୍ତ ପୂରଣ ହେଉ ବୋଲି ପ୍ରାର୍ଥନା କରିଅଛନ୍ତି ।

'କସ୍ମୈ ଦେବାୟ ହବିଷା ବିଧେମ' - 'କେଉଁ ଦେବତାଙ୍କୁ ଆମେ ହବ୍ୟଦ୍ୱାରା ପୂଜା କରିବା ?' ଏହି ପ୍ରଶ୍ନ ବାରମ୍ବାର ସ୍ତୋତାଙ୍କ ମନରେ ଉଦିତ ହୋଇଅଛି । ଯଥାସମ୍ଭବ ସେ

ତାର ଉତ୍ତର ଦେବାକୁ ଚେଷ୍ଟା କରିଛନ୍ତି । ବହୁ ଟୀକାକାର 'କସ୍ମୈ' କୁ 'କ' ସ୍ମୈ ବୋଲି ଗ୍ରହଣ କରିବା ବାଞ୍ଛନୀୟ ମନେ କରିଛନ୍ତି ଏବଂ 'କ' ପ୍ରଜାପତିଙ୍କର ଗୋଟିଏ ନାମ ବୋଲି ଅର୍ଥ କରିଛନ୍ତି; କିନ୍ତୁ ଏପ୍ରକାରର ଟୀକା ବା ଅର୍ଥ ବୈଦିକ ଯୁଗର ବହୁ ପରେ କରାଯାଇଛି । ମନେ ହୁଏ, ଯେପରି ସ୍ତୋତା ଯେ ଦ୍ୱନ୍ଦ୍ୱାକ୍ରାନ୍ତ, ଏହା ସ୍ୱୀକାର କରିବାକୁ କୁଣ୍ଠିତ ହୋଇ ଟୀକାକାରମାନେ ସରଳ ପ୍ରଶ୍ନମୂଳକ ବାକ୍ୟାଂଶକୁ ଭିନ୍ନ ଅର୍ଥ ଦେଇଅଛନ୍ତି । ଋଗ୍‌ବେଦର ଆଉ କୌଣସି ସ୍ଥାନରେ ପ୍ରଜାପତିଙ୍କୁ 'କ' ବୋଲି ଅଭିହିତ କରାହୋଇନାହିଁ ।

ଦଶମ ମଣ୍ଡଳ ୧୨୯ତମ ସୂକ୍ତ (ଯାହାକି ନାସଦୀୟ ସୂକ୍ତ ରୂପେ ପରିଚିତ) ୧୨୧ ତମ ସୂକ୍ତ ପରି ଏକ ପ୍ରସିଦ୍ଧ ସୂକ୍ତ । ଏଥିରେ ପରମାତ୍ମାଙ୍କ ସ୍ୱରୂପ ଓ ମହିମା, ସୃଷ୍ଟି ପ୍ରକ୍ରିୟାର କ୍ରମ ବର୍ଣ୍ଣନା କରାହୋଇଛି ପ୍ରାୟ ଚିରାଚରିତ ଭାବରେ । କିନ୍ତୁ ଏଥିରେ ମଧ୍ୟ, ବିଶେଷତଃ ଏଥିର ଶେଷାଂଶରେ ସ୍ତୋତାଙ୍କର ସପ୍ରଶ୍ନ ଦୃଷ୍ଟିକୋଣ, ବିଭକ୍ତ ଚେତନା, ଅନ୍ତର୍ଦ୍ୱନ୍ଦ୍ୱ ର ପରିଚୟ ମିଳୁଛି । ମନୁଷ୍ୟ ଯେପରି ସୃଷ୍ଟିର ମୌଳିକ ରହସ୍ୟ ଉଦ୍‌ଘାଟନ କରିପାରୁନାହିଁ, ତାହା ସୂଚିତ ହେଉଅଛି ।

ସୂକ୍ତର ପ୍ରଥମ ଋକ୍‌ଟିରେ ହିଁ ଏହି ବିଭକ୍ତ ଚେତନା ପରିସ୍ଫୁଟିତ - ''ସେତେବେଳେ ଯାହା ନାହିଁ, ତାହା ନ ଥିଲା, ଯାହା ଅଛି, ତାହା ବି ନ ଥିଲା । ବିଶ୍ୱ ନ ଥିଲା, ତଦ୍ରୁପରି ସୁଦୂରପ୍ରସାରୀ ଆକାଶ ମଧ୍ୟ ନ ଥିଲା । ଆକାଶର ଉର୍ଦ୍ଧ୍ୱରେ ଯାହା ଅଛି ତା' ମଧ୍ୟ ନ ଥିଲା ।'' ଏହି ଆପାତତଃ ଅସ୍ପଷ୍ଟ, ପ୍ରହେଳିକା ତୁଲ୍ୟ ଉକ୍ତି ହୁଏତ ସୂଚାଉଛି, ପ୍ରଥମେ ଦୃଶ୍ୟ ଅଦୃଶ୍ୟ କାହାରି କୌଣସି ପ୍ରକାର ଅସ୍ତିତ୍ୱ ନ ଥିଲା, ଇନ୍ଦ୍ରିୟାନୁଭୂତ ବସ୍ତୁ ଓ ଆତ୍ମାର ସ୍ୱତନ୍ତ୍ର ଅସ୍ତିତ୍ୱ ନ ଥିଲା, ସବୁ ଯେପରି ମିଳିତ ହୋଇ ଏକ ଅବୋଧ, ଅଜ୍ଞେୟ, ଅସୀମ ଅବ୍ୟକ୍ତ ପ୍ରଥମ କାରଣଙ୍କଠାରେ ଲୀନ ହୋଇ ଥିଲା ।

ତାପରେ ଋଷି ପ୍ରଶ୍ନ କରୁଛନ୍ତି -''(ସବୁକିଛି) ଆବରଣ କରି କିପରି କେଉଁଠି କ'ଣ ଥିଲା ? କେଉଁଠି କାହାର ସ୍ଥାନ ଥିଲା ? (ଜୀବନ୍ତ ତ କିଛି ନ ଥିଲା, ତେଣୁ କାହା ସମ୍ପର୍କରେ ଫଳ ଲାଭ, ଆନନ୍ଦ ଉପଭୋଗର କଳ୍ପନା ବା କରାଯାଇପାରୁଥିଲା ?) ଗହନ, ଗଭୀର ଜଳ କଣ ସେତେବେଳେ ଥିଲା ?''

ଦ୍ୱିତୀୟ ଋକ୍‌ର ପ୍ରଥମାଂଶରେ କୁହା ହୋଇଛି, ''ସେତେବେଳେ ମୃତ୍ୟୁ ନ ଥିଲା କି ଅମରତ୍ୱ ନ ଥିଲା, ଦିବା ନ ଥିଲା, କି ରାତ୍ରି ନ ଥିଲା, ଉଭୟଙ୍କର ପରସ୍ପର ସହିତ ପାର୍ଥକ୍ୟର କୌଣସି ସୂଚନା ନ ଥିଲା ।'' ସୃଷ୍ଟି ପୂର୍ବର ଅବସ୍ଥା ବିଷୟରେ ଏପରି ଉକ୍ତି ପରେ ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟି ପ୍ରକ୍ରିୟା ଓ ବିକାଶ ବର୍ଣ୍ଣନା କରା ହୋଇଅଛି । ସତେ ଯେପରି ସ୍ତୋତା ସେ ବିଷୟରେ ଅସଂଦିଗ୍ଧ ।

କିନ୍ତୁ ପୁଣି ଷଷ୍ଠ ଓ ସପ୍ତମ ଋକ୍‌ରେ ଋଷିଙ୍କ ମନର ଦ୍ୱନ୍ଦ୍ୱ ପରିସ୍ଫୁଟିତ ହୋଇଅଛି କେତୋଟି ପ୍ରଶ୍ନରେ - କିଏ ବା ସତରେ ଜାଣେ ? କିଏ ଏହି ବିଶ୍ୱରେ ତାହା ବର୍ଣ୍ଣନା କରିପାରିବ ? କେଉଁଠୁ, କାହାଠାରୁ ସୃଷ୍ଟି ସମ୍ଭୂତ ହେଲା ? ଏହି ନାନା ପ୍ରକାର ସୃଷ୍ଟି କେଉଁଠୁ

ଉଦ୍ଭୂତ ହୋଇ ଆସିଲେ ? ଦେବତାମାନେ ତ ଏହି ସମସ୍ତ ସୃଷ୍ଟିର ପରବର୍ତ୍ତୀ - (ମତ୍ସ୍ୟ ପୁରାଣର ଦ୍ୱିତୀୟ ଅଧ୍ୟାୟରେ ଅଛି ଯେ ପ୍ରଜାପତି ଦ୍ୟୁଲୋକ, ଭୂଲୋକ ଓ ସେ ଦୁହିଙ୍କର ମଧ୍ୟବର୍ତ୍ତୀ ଅବିନାଶ ଆକାଶ, ମେରୁ ଆଦି ସପ୍ତ ପର୍ବତ, ମେଘମଣ୍ଡଳ, ଲବଣ, ଇକ୍ଷୁ ଆଦି ସପ୍ତ ସାଗର ସୃଷ୍ଟି କଲା ପରେ ଦେବତାମାନଙ୍କୁ ସୃଷ୍ଟି କରିବାକୁ ଇଚ୍ଛା କଲାରୁ ପ୍ରଥମେ ମାର୍ତ୍ତଣ୍ଡ ବା ସୂର୍ଯ୍ୟ ପ୍ରାଦୁର୍ଭୂତ ହେଲେ) । ତେଣୁ କିଏ ବା ଜାଣେ କେଉଁଠୁ ଏ ସୃଷ୍ଟିର ସମ୍ଭବ ହେଲା ?

ଅବଶେଷରେ ସୃଷ୍ଟିର ଆଦି ରହସ୍ୟ ଭେଦ କରିବାକୁ ଅକ୍ଷମ, ନିଜର ଅଜ୍ଞତା, ସମଗ୍ର ମାନବ ଜାତିର ଅଜ୍ଞତା ପ୍ରକାଶ କରି ବିସ୍ମୟବିମୂଢ଼ ସ୍ତୋତା କହୁଅଛନ୍ତି, ''ଏହି ବିଭିନ୍ନ ପ୍ରକାରର ସୃଷ୍ଟି ଯେ କେଉଁଠାରୁ ହେଲା, କାହାଠାରୁ ହେଲା, କିଏ ସୃଷ୍ଟି କରିଅଛନ୍ତି, କି କରି ନାହାନ୍ତି, (ଏହି ସୃଷ୍ଟିକୁ ସେ ଧାରଣ କରି ରଖିବେ ନା ନ ରଖିବେ), ତାହା ସେ ହିଁ ଜାଣନ୍ତି, ଯେ ଏହାର ନିୟନ୍ତ୍ରଣକାରୀ (ପ୍ରଭୁ) ଓ ଯେ ସର୍ବୋର୍ଦ୍ଧ୍ୱ ସ୍ୱର୍ଗଧାମରେ ଅବସ୍ଥାନ କରୁଅଛନ୍ତି ।'' ଏହି ସପ୍ରଶ୍ନ ଦୃଷ୍ଟିକୋଣର ଚୂଡାନ୍ତ ପରିପ୍ରକାଶ ଘଟିଛି ଋକ୍‌ର ଶେଷାଂଶରେ - ''ଅଥବା ସେ ମଧ୍ୟ ଜାଣି ନ ଥାଇ ପାରନ୍ତି ।''ପରମାତ୍ମାଙ୍କ ଶକ୍ତି ଉପରେ ବି ସନ୍ଦେହ ପ୍ରକାଶ କରାଯାଇଅଛି । ଯେ ଯେପରି ପରବର୍ତ୍ତୀ ସାଂଖ୍ୟଦର୍ଶନର ଉପସଂହାର - ''ଭଗବାନ ଅଛନ୍ତି । କିନ୍ତୁ ତାଙ୍କର ଅସ୍ତିତ୍ୱ ପ୍ରମାଣ କରିହେବ ନାହିଁ''- ଏହି ପ୍ରାୟ ନାସ୍ତିବାଦୀ ସିଦ୍ଧାନ୍ତର ପୂର୍ବାଭାସ ।

ଏହି ସୂକ୍ତର ପୂର୍ବବର୍ତ୍ତୀ ୧୨୫ ତମ ସୂକ୍ତରେ ଦ୍ୱିଧା, ଦ୍ୱନ୍ଦ୍ୱ, ସଂଶୟର ଆଭାସ ମାତ୍ର ନାହିଁ । ସୂକ୍ତଟିର ଦେବତା ପରମାତ୍ମା, ଋଷି ବାକ୍, ଆପାତତଃ ବାଗ୍‌ଦେବୀ ନିଜେ କହୁଛନ୍ତି । (ସେଥିପାଇଁ ଏହି ସୂକ୍ତଟି ଦେବୀ ସୂକ୍ତ ରୂପେ ପ୍ରସିଦ୍ଧ) । କିଂତୁ ଯାହା କହୁଛନ୍ତି, ସେଥିରୁ ମନେ ହେଉଛି, ସେ ହେଉଛନ୍ତି ପରମାତ୍ମା । Bible ରେ ଅଛି In the beginning was the Word, ଯେ ସେହି ବାକ୍‌ବ୍ରହ୍ମ ବା ଶବ୍ଦବ୍ରହ୍ମ ।

ଏହିପରି ଋଗ୍‌ବେଦର ଅଧିକାଂଶ ସୂକ୍ତରେ ଋଷି ମାନଙ୍କର ପରମାତ୍ମାଙ୍କ ଉପରେ, ଦେବଦେବୀଗଣଙ୍କ ଉପରେ ଗଭୀର ବିଶ୍ୱାସ, ନିର୍ଭରଶୀଳତା ପ୍ରକଟିତ ହୋଇଥିଲେ ମଧ୍ୟ ବହୁ ସୂକ୍ତରେ ସଂଶୟ, ବିଭକ୍ତ ଚେତନା ପ୍ରକାଶିତ ହୋଇଅଛି । ଏପରିକି ଗୋଟିଏ ଗୋଟିଏ ସୂକ୍ତର ଗୋଟିଏ ଗୋଟିଏ ଋକ୍‌ର ଏକାଂଶରେ ସ୍ତୋତାଙ୍କର ବିଶ୍ୱାସ, ସୃଷ୍ଟିକର୍ତ୍ତାଙ୍କ ସ୍ୱରୂପ ଓ ସୃଷ୍ଟିପ୍ରକ୍ରିୟାର ଧାରା ବିଷୟରେ ଆପାତତଃ ନିଃସନ୍ଦେହ ଜ୍ଞାନ ପ୍ରକାଶିତ ହୋଇଥିଲେ ମଧ୍ୟ ଅପର ଅଂଶରେ ଦ୍ୱିଧା, ସପ୍ରଶ୍ନ ଦୃଷ୍ଟିକୋଣ ପ୍ରକାଶ ପାଇଅଛି । ଯେପରି ପ୍ରଚଳିତ ଚିନ୍ତାଧାରା ସ୍ତୋତାଙ୍କୁ ସନ୍ତୁଷ୍ଟ କରିପାରିନାହିଁ, ତାଙ୍କ ମନରେ ଜାଗ୍ରତ ହେଉଥିବା ସ୍ୱାଭାବିକ ପ୍ରଶ୍ନଗୁଡିକର ଉତ୍ତର ସେ ପାଉନାହାନ୍ତି । ଉପନିଷଦ୍‌ଯୁଗର ଆଭାସ ଏହି ସୂକ୍ତ ଗୁଡିକରେ, ବିଶେଷତଃ ପ୍ରଥମ ମଣ୍ଡଳର ୧୬୪ତମ ସୂକ୍ତ ଓ ଦଶମ ମଣ୍ଡଳର ଆଲୋଚିତ ସୂକ୍ତଗୁଡିକରେ ମିଳୁଅଛି ।

******

# ମଣ୍ଡୂକ ସୂକ୍ତ

ଋଗ୍‌ବେଦର ଅଧିକାଂଶ ସୂକ୍ତ ବିଭିନ୍ନ ଦେବଦେବୀଙ୍କର ସ୍ତୁତିମୂଳକ ବା ଆଧ୍ୟାତ୍ମିକ ଚେତନା ଦ୍ୱାରା ପରିପୁଷ୍ଟ ହୋଇଥିଲେ ମଧ୍ୟ ଏପରି ଅଳ୍ପ କେତୋଟି ସୂକ୍ତ ଅଛି ଯାହା କୌଣସି କୌଣସି ପ୍ରାକୃତିକ ଦୃଶ୍ୟ ଉପରେ ପର୍ଯ୍ୟବସିତ, ରଚୟିତାଗଣଙ୍କର ବର୍ଣ୍ଣନା- ନୈପୁଣ୍ୟ ଓ କଳ୍ପନାବୈଚିତ୍ର୍ୟ ଦ୍ୱାରା ସୁସମୃଦ୍ଧ କବିତା ମାତ୍ର । ସପ୍ତମ ମଣ୍ଡଳର ମଣ୍ଡୂକ ସୂକ୍ତ ନାମରେ ପରିଚିତ ୧୦୩ ତମ ସୂକ୍ତଟି ସେହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଏହି ସୂକ୍ତରେ ରଚୟିତା ଋଷି ବସିଷ୍ଠ ବର୍ଷାର ଆଗମନରେ ମଣ୍ଡୂକଗଣଙ୍କର ଆନନ୍ଦୋତ୍‌ଫୁଲ୍ଲ ଆଚରଣ ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । ପୂର୍ବବର୍ତ୍ତୀ ସୂକ୍ତଦ୍ୱୟର ଦେବତା ପର୍ଜନ୍ୟ ବା ବୃଷ୍ଟିଦେବ । ପରବର୍ତ୍ତୀ ସୂକ୍ତର ଦେବତା ଇନ୍ଦ୍ର, ସୋମ, ଅଗ୍ନି, ମରୁତ୍ ପ୍ରଭୃତି । କିନ୍ତୁ ଏହି ସୂକ୍ତର ଦେବତା ହେଉଛନ୍ତି ମଣ୍ଡୂକ । ପୁଣି ସୂକ୍ତର ଶେଷାଂଶରେ ମଣ୍ଡୂକଙ୍କୁ ଧନ ଦାନ, ପ୍ରଚୁର ଗୋ-ସମ୍ପଦ ଦାନ କରିବାକୁ ପ୍ରାର୍ଥନା କରି ସ୍ତୁତି କରାଯାଇଅଛି । ଏହା ଏକାନ୍ତ ହାସ୍ୟୋଦ୍ଦୀପକ ।

ଋଷି ପ୍ରଥମ ଋକ୍‌ରେ କହୁଅଛନ୍ତି ଯେ ମଣ୍ଡୂକଗଣ ବର୍ଷେ କାଳ ନୀରବ ହୋଇ ଶୋଇ ରହିଥାଆନ୍ତି, ବୃଷ୍ଟି ଆସିଲେ ରବ କରନ୍ତି, ଯେପରି ସେମାନେ ପର୍ଜନ୍ୟ ଦେବ ବା ବୃଷ୍ଟି ଦେବଙ୍କର ପ୍ରୀତିଉତ୍ପାଦନକାରୀ ବାକ୍ୟ ଉଚ୍ଚାରଣ କରନ୍ତି । ଋଷି ସେମାନଙ୍କୁ ସମ୍ବତ୍ସରବ୍ରତଚାରୀ ବ୍ରାହ୍ମଣମାନଙ୍କ ସହିତ (ଅର୍ଥାତ୍ ଯେଉଁ ବ୍ରାହ୍ମଣମାନେ ବର୍ଷେ କାଳ ନୀରବ ରହିବାର ବ୍ରତ ଗ୍ରହଣ କରିଥାଆନ୍ତି, ସେମାନଙ୍କ ସହିତ) ତୁଳନା କରିଛନ୍ତି । ସପ୍ତମ ଋକ୍‌ରେ ପୁଣି ଋଷି ସେମାନଙ୍କୁ ଅତିରାତ୍ର ସୋମଯାଗକାରୀଙ୍କ ସହିତ ତୁଳନା କରି କହିଅଛନ୍ତି, "ଅତିରାତ୍ର ନାମକ ସୋମ ଯଜ୍ଞର ସ୍ତୋତା ବ୍ରାହ୍ମଣମାନଙ୍କ ତୁଲ୍ୟ ବର୍ତ୍ତମାନ ତୁମ୍ଭେମାନେ ପରିପୂର୍ଣ୍ଣ ପୁଷ୍କରିଣୀମାନଙ୍କର ଚତୁର୍ଦ୍ଦିଗରେ ଶବ୍ଦ କରୁଅଛ । କାରଣ ବର୍ଷର ଯେଉଁ ଦିନ ବୃଷ୍ଟିର ପ୍ରଥମ ସଂଚାର ହୁଏ , ସେ ଦିନ ତୁମ୍ଭେମାନେ ସର୍ବତ୍ର ଅବସ୍ଥାନ କର ।" ଅଷ୍ଟମ ଋକ୍‌ରେ ପୁଣି ଋଷି କହିଅଛନ୍ତି ଯେ ସୋମଯାଗରେ ନିଯୁକ୍ତ ସାମ୍ବତ୍ସରିକ ସ୍ତୁତିକାରୀଙ୍କ ପରି ମଣ୍ଡୂକମାନେ ରବ କରୁଅଛନ୍ତି । ପ୍ରବର୍ଗଚାରୀ ଘର୍ମାକ୍ତ-ଶରୀର ଅଧ୍ୱର୍ଯ୍ୟୁଙ୍କ ପରି ଗର୍ତ୍ତମାନଙ୍କରେ ଏତେ କାଳ ଉତ୍ତାପରେ ଘର୍ମାକ୍ତ ହୋଇ ଲୁଚି ରହିଥିବା କେତେବ ମଣ୍ଡୂକ ବର୍ତ୍ତମାନ ବୃଷ୍ଟିର ଆଗମନ ହେତୁ ବାହାରକୁ ବାହାରି ଆସିଅଛନ୍ତି । ପଞ୍ଚମ ଋକ୍‌ରେ କୁହାହୋଇଛି, ଯେପରି ଶିଷ୍ୟ ଗୁରୁର ସ୍ତୋତ୍ର-ପାଠ-ପ୍ରଣାଳୀ ଅନୁସରଣ କରି ସ୍ତୋତ୍ର ଆବୃତ୍ତି କରେ, ସେହିପରି (ବର୍ଷା ହେଲେ) ଗୋଟିଏ ମଣ୍ଡୂକ ଶବ୍ଦ କଲେ ଅନ୍ୟ ଗୋଟିଏ ମଣ୍ଡୂକ ଅନୁରୂପ ଶବ୍ଦ କରେ । ଏହିପରି ଋଷି ହାସ୍ୟୋଦ୍ଦୀପକ, ସାମାନ୍ୟ ବ୍ୟଙ୍ଗାତ୍ମକ ଭାବରେ ମଣ୍ଡୂକମାନଙ୍କ ବର୍ଷାକାଳୀନ ଆଚରଣ ବର୍ଣ୍ଣନା କରିଅଛନ୍ତି । କିନ୍ତୁ ସେ କେବଳ ହାସ୍ୟ ଉତ୍ପାଦନ କରିବାକୁ ଏପରି ବର୍ଣ୍ଣନା କରିଥିବା ମନେ ହୁଏ ନାହିଁ । ସୂକ୍ତଟି କେତେକାଂଶରେ ବାସ୍ତବବାଦୀ । ଏତେ କାଳ ବର୍ଷା ନ ହେବାରୁ ମଣ୍ଡୂକଗଣ ଶୁଷ୍କଚର୍ମ ହୋଇ ଜଳହୀନ ସରୋବରରେ ଶୋଇ ରହିଥିଲେ (୨ୟ ଋକ୍) । ସେମାନେ ଏକାନ୍ତ ତୃଷାର୍ତ୍ତ ହୋଇ ଜଳ କାମନା କରୁଥିଲେ (୩ୟ ଋକ୍) । ସେଥିପାଇଁ ବୃଷ୍ଟି

ଜଳ ସେମାନଙ୍କୁ ''ସ୍ୱର୍ଗୀୟ ଜଳ'' ତୁଲ୍ୟ ପ୍ରତୀୟମାନ ହୋଇଅଛି । ଗ୍ରୀଷ୍ମତାପପୀଡ଼ିତ ମଣ୍ଡୂକଗଣ ଗର୍ତ୍ତରେ ଲୁକ୍କାୟିତ ହୋଇ ରହିଥିଲେ । ବୃଷ୍ଟି ଯେପରି ସେମାନଙ୍କୁ ମୁକ୍ତି ଦେଲା । ସେମାନେ ଯେପରି ମାନବିକ-ଚେତନାଯୁକ୍ତ । ବର୍ଷାର ଆଗମନକୁ ସେମାନଙ୍କ ଦୃଷ୍ଟିକୋଣରୁ ଋଷି ବର୍ଣ୍ଣନା କରିଅଛନ୍ତି । ବର୍ଷାଜଳ ପତିତ ହେଲାକ୍ଷଣି ଗାଈ ଯେପରି ବାଛୁରୀ ସାଙ୍ଗରେ ଥିଲେ ତାକୁ ଦେଖି ଆନନ୍ଦରେ ରବ କରେ, ସେହିପରି ମଣ୍ଡୂକଗଣ ରବ କରୁଅଛନ୍ତି (୨ୟ ଋକ୍-୧୦ମ ଋକ୍) । ସ୍ତୋତା ମାନଙ୍କର ସ୍ତୁତି ଯେପରି ମଧୁରବାକ୍ୟ ସଂଯୁକ୍ତ, ସେହିପରି ସୁନ୍ଦରଶବ୍ଦସମନ୍ୱିତ (୫ମ ଋକ୍) ମଧୁର ପ୍ରୀତିଜନକ ବାକ୍ୟରେ (୧ମ ଋକ୍) ସେମାନେ ବୃଷ୍ଟିର ସ୍ତୁତି ଗାନ କରନ୍ତି । ବର୍ଷାଜଳର ସିଞ୍ଚନ ଲାଭ କଲେ ଆନନ୍ଦୋତ୍ଫୁଲ୍ଲ ହୋଇ ଗୋଟିଏ ମଣ୍ଡୂକ ଆଉ ଗୋଟିଏ ମଣ୍ଡୂକ ପାଖକୁ ଧାଇଁଯାଏ, ଯେପରି ଶିଶୁପୁତ୍ର ଆନନ୍ଦରେ 'ଅଖ୍ଖଳ' (ଅସ୍ପଷ୍ଟ ଆନନ୍ଦ ସୂଚକ ଶବ୍ଦ ) ଶବ୍ଦ କରି ପିତା ନିକଟକୁ ଅଗ୍ରସର ହୁଏ । ମଣ୍ଡୂକଗଣ ମଧୁର ଧ୍ୱନି କରି ସଶବ୍ଦେ ପୁଷ୍କରିଣୀର ଜଳ ମଧ୍ୟକୁ ଲମ୍ଫ ପ୍ରଦାନ କରନ୍ତି । ଗ୍ରୀଷ୍ମତାପଜନିତ ସେମାନଙ୍କର ଶୁଷ୍କ,ଶୀର୍ଣ୍ଣ ଶରୀର ପୁଣି ପରିପୁଷ୍ଟ, ସ୍ଫୀତ ହୋଇଯାଏ । ମଣ୍ଡୂକଗଣ ବିଭିନ୍ନ ବର୍ଣ୍ଣର, କେତେକ ହରିଦ୍ବର୍ଣ୍ଣ ଆଉ କେତେକ ଧୂମ୍ରବର୍ଣ୍ଣ । ପୁଣି ଆଉ କେତେକ ବିଭିନ୍ନ ବର୍ଣ୍ଣର ବିନ୍ଦୁବିଶିଷ୍ଟ । ସେମାନଙ୍କର ଶବ୍ଦ ମଧ୍ୟ ବିଭିନ୍ନ ପ୍ରକାରର । ହାସ୍ୟୋଦ୍ଦୀପକ ଭାବରେ ବର୍ଣ୍ଣନା କରି ଋଷି କହିଅଛନ୍ତି, ଜଣକର ଶବ୍ଦ ଛାଗଳର ଶବ୍ଦ ପରି ଓ ଜଣକର ଶବ୍ଦ ଧେନୁର ଶବ୍ଦ ପରି । କିନ୍ତୁ ବର୍ଣ୍ଣର, ଶବ୍ଦର, ଏ ସମସ୍ତ ବିଭିନ୍ନତା ସତ୍ତ୍ୱେ, ସମସ୍ତେ ସେହି ଗୋଟିଏ ମଣ୍ଡୂକ ଜାତିର । ଋଷିଙ୍କ ଭାଷାର ''ସମସ୍ତଙ୍କର ଗୋଟିଏ ନାମ (ମଣ୍ଡୁକ), କିନ୍ତୁ ରୂପ ବିଭିନ୍ନ ପ୍ରକାର,'' (୬ଷ୍ଠ ଋକ୍) । ଆଧ୍ୟାତ୍ମିକ ଚିନ୍ତାଧାରା ବିଶିଷ୍ଟ ପ୍ରଥମ ମଣ୍ଡଳର ୧୬୪ ତମ ସୂକ୍ତର ୪୬ ତମ ଋକ୍‌ରେ ଭଗବାନ୍‌ଙ୍କର ଏକତ୍ୱ ସୂଚାଇ କୁହାହୋଇଛି, ''ସେମାନେ ତାକୁ ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି ବୋଲି ଅଭିହିତ କରନ୍ତି । ସେ ହେଉଛନ୍ତି ସ୍ୱର୍ଗୀୟ ପକ୍ଷୀ ଗରୁଡ । ଯେ ଏକ ତାଙ୍କୁ କବିମାନେ ବହୁ ନାମ ଦେଇଅଛନ୍ତି । ସେମାନେ ତାଙ୍କୁ ଅଗ୍ନି, ଯମ, ମାତରିଶ୍ୱାନ୍ ପ୍ରଭୃତି କହନ୍ତି ।''

ଧୃଷ୍ଟତିର ଶେଷ ଋକ୍‌ରେ ସ୍ତୋତା ଋଷି ମଣ୍ଡୂକଗଣଙ୍କୁ ସ୍ତୁତି କରିଅଛନ୍ତି । କାରଣ ସେମାନେ ଦେବବିଧାନ ମାନି ନେଇ ବର୍ଷେ କାଳ ଉତାପ ସହ୍ୟ କରି ଗର୍ତ୍ତରେ ପଡିରହନ୍ତି । ତା'ପରେ ବର୍ଷା ଆସିଲେ ସେମାନେ ଗର୍ତ୍ତମାନଙ୍କରୁ ନିର୍ଗତ ହୋଇ ବୃଷ୍ଟିଦେବଙ୍କୁ ସ୍ତୁତି କରନ୍ତି । ତେଣୁ ସେମାନେ ପର୍ଜନ୍ୟ ଦେବଙ୍କର ଯଥାର୍ଥ ଭକ୍ତ। ଏହି ଭକ୍ତି ହେତୁ ମଣ୍ଡୂକଗଣ ନିଜେ ଯେପରି ଦେବତାରେ ପରିଣତ ହୋଇଯାଆନ୍ତି । ଔଷଧପ୍ରଦାନକାରୀ ବୃଷ୍ଟିଙ୍କ ସହିତ ସେମାନଙ୍କୁ ମଧ୍ୟ ସ୍ତୋତା ପ୍ରାର୍ଥନା କରିଛନ୍ତି ଧନ ଦାନ କରିବାକୁ, ଅପରିମିତ ଗୋସମ୍ପଦ ଦାନ କରିବାକୁ, ସୁଦୀର୍ଘ ଆୟୁ ଦାନ କରିବାକୁ । ଭକ୍ତ ଓ ଭଗବାନଙ୍କର ଏକତ୍ୱ ଏହି ଋକ୍‌ରେ ସୂଚିତ ହୋଇଅଛି ବୋଲି ମନେ ହୁଏ ।

ସାୟଣଙ୍କ ମତରେ ଏହି ସୂକ୍ତ ଏକ ମନ୍ତ୍ର ସଦୃଶ । ଏହି ମନ୍ତ୍ର 'ବୃଷ୍ଟିକାମେନଜପ୍ୟଂ' ଅର୍ଥାତ୍ ବୃଷ୍ଟି କାମନା କରୁଥିବା ବ୍ୟକ୍ତି ଜପ କରିବା ଉଚିତ । ଆଉ କେତେକ କହିଅଛନ୍ତି ଯେ

ଏହା ଏକ ଯାଦୁ ମନ୍ତ୍ର, ସନ୍ତାନୋତ୍ପତ୍ତି ପାଇଁ ଏହା ଉଚ୍ଚାରଣ କରାଯାଏ । କାରଣ ଚତୁର୍ଥ ଋକ୍‌ରେ ବର୍ଣ୍ଣିତ ହୋଇଅଛି, "ବର୍ଷା ଜଳ ପଡ଼ିଲା ପରେ ଯେତେବେଳେ ପର୍ଜନ୍ୟଙ୍କ ଦ୍ୱାରା ଆର୍ଦ୍ର ହୋଇ ଧୂମ୍ରବର୍ଣ୍ଣ ମଣ୍ଡୂକ ବିରାଟ ଏକ ଲମ୍ଫ ପ୍ରଦାନ କରି ହରିଦ୍‌ବର୍ଣ୍ଣ ମଣ୍ଡୂକ ସହିତ ଏକତ୍ରିତ ହୁଏ, ସେତେବେଳେ ଗୋଟିଏ ମଣ୍ଡୂକ ଅନ୍ୟ ମଣ୍ଡୂକଟିକୁ ଅନୁଗ୍ରହ ପ୍ରଦର୍ଶନ କରେ ।" ତୃତୀୟ ଋକ୍‌ରେ ଉଲ୍ଲେଖ ଅଛି ଯେ ବର୍ଷାଗମରେ ମଣ୍ଡୂକଗଣ "କାମନାଯୁକ୍ତ" ହୁଅନ୍ତି । ଅତଏବ ପରସ୍ପର ପ୍ରତି ପ୍ରଦର୍ଶିତ ଅନୁଗ୍ରହ ପ୍ରଣୟାନୁଗ୍ରହ ବୋଲି ମନେ ହୁଏ । ପୁଣି ବୃଷ୍ଟିଜଳ ହେତୁ ପୃଥିବୀ ଶସ୍ୟ ପ୍ରସବିନୀ ହୁଏ । ଡଃ.ଟି.ଜି. ମୈନକାରଙ୍କ ମତରେ (The Ṛgvedic Foundation of Classical Poetics) ଏହି ସୂକ୍ତଟି ଋଗ୍‌ବେଦୀୟ ଋଷି ବସିଷ୍ଠଙ୍କର ଏକ ବାସ୍ତବବାଦୀ ହାସ୍ୟରସାତ୍ମକ କବିତା । ବର୍ଷାକାଳରେ ମଣ୍ଡୂକଗଣଙ୍କର ନାନା ପ୍ରକାର ଆନନ୍ଦସୂଚକ ରବ ଶୁଣି ଓ ଲମ୍ଫ ଝମ୍ପ ଦେଖି ଋଷି ଏହା ରଚନା କରିଅଛନ୍ତି । ପରବର୍ତ୍ତୀ କାଳରେ ଏହାକୁ ଯଜ୍ଞକ୍ରିୟା ସହିତ ସମନ୍ୱିତ କରାଯାଇଛି, ବୃଷ୍ଟିଜନନକାରୀ ବା ସନ୍ତାନପ୍ରଜନନ-ସହାୟକାରୀ ମନ୍ତ୍ର ବୋଲି ବର୍ଣ୍ଣନା କରାଯାଇଅଛି ।

ଏହି ସୂକ୍ତରୁ ଋଗ୍‌ବେଦୀୟ ଯୁଗର ଯଜ୍ଞାନୁଷ୍ଠାନ ତଥା ଗୁରୁକୁଳରେ ଛାତ୍ରମାନଙ୍କର ଅଧ୍ୟୟନ ପ୍ରଣାଳୀ ବିଷୟରେ କିଛି ଧାରଣା ମିଳୁଅଛି । ତେବେ ବିସ୍ମୟର ବିଷୟ ହେଉଅଛି ଯେ ବସିଷ୍ଠଙ୍କ ପରି ଜଣେ ମହାନ୍ ଋଷି ଓ ଗୁରୁ ପୁଷ୍କରିଣୀର ଚତୁପାର୍ଶ୍ୱରେ ଅବସ୍ଥିତ ଉଲ୍ଲାସରେ ଧ୍ୱନିରତ ମଣ୍ଡୂକଗଣଙ୍କୁ ଯଜ୍ଞବେଦୀର ଚତୁର୍ପାର୍ଶ୍ୱସ୍ଥ ଯଜମାନଙ୍କ ସହିତ ତୁଳନା କରିଛନ୍ତି, ଗର୍ତ୍ତରୁ ନିର୍ଗତ ମଣ୍ଡୂକଙ୍କୁ ପ୍ରବର୍ଗଚାରୀଙ୍କ ସହିତ ତୁଳନା କରିଛନ୍ତି ଓ ଗୋଟିଏ ମଣ୍ଡୂକ ଅନ୍ୟ ଏକ ମଣ୍ଡୂକକୁ ଅନୁକରଣ କରି ରବ କରିବାକୁ ଛାତ୍ରମାନେ ଗୁରୁଙ୍କର ସ୍ତୋତ୍ରପାଠର ପଦ୍ଧତି ଅନୁସରଣ କରି ଅନୁରୂପ ଉଚ୍ଚାରଣ କରି ସ୍ତୋତ୍ରପାଠ କରିବା ସହିତ ତୁଳନା କରିଅଛନ୍ତି ।

Winternitz ତାଙ୍କର History of Indian Literature Vol.I ରେ କହିଛନ୍ତି , "ଏ ସମସ୍ତ ଅତ୍ୟନ୍ତ ହାସ୍ୟୋଦ୍ଦୀପକ ମନେ ହେଉଅଛି ଏବଂ ପ୍ରାୟ ସାଧାରଣତଃ, ଏହି ସଙ୍ଗୀତଟିକୁ ଯଜ୍ଞାନୁଷ୍ଠାନସଂପୃକ୍ତ ସଙ୍ଗୀତଗୁଡ଼ିକର ଏକ ବ୍ୟଙ୍ଗାତ୍ମକ ଅନୁକରଣ ଓ ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ଏକ ଦୁରୁଦ୍ଦେଶ୍ୟବିଶିଷ୍ଟ ସମାଲୋଚନାମୂଳକ ସଙ୍ଗୀତ ବୋଲି ବିଚାର କରାଯାଏ । "

ସେ ଆହୁରି ମଧ୍ୟ କହିଅଛନ୍ତି, Bloomfield ସୁନିଶ୍ଚିତ ଭାବରେ ପ୍ରମାଣ କରିଅଛନ୍ତି ଯେ ଏହା ଗୋଟିଏ ଯାଦୁକରୀ ସଙ୍ଗୀତ ଏବଂ ବର୍ଷାର ଉଦ୍‌ଗମ ପାଇଁ ଏହାର ପ୍ରୟୋଗ କରାଯାଉଥିଲା । ତାଙ୍କ ମତରେ ଭାରତୀୟମାନଙ୍କ ମଧ୍ୟରେ ଏକ ଲୋକପ୍ରିୟ ବିଶ୍ୱାସ ଥିଲା ଯେ ମଣ୍ଡୂକମାନେ ଜଳ ଆଣିପାରନ୍ତି ଏବଂ ତେଣୁ ସେମାନଙ୍କୁ ବର୍ଷା ଜନନକାରୀରୂପେ ସ୍ତୁତି କରି ସେମାନଙ୍କର ଆଶୀର୍ବାଦ ବା ଦୟା ପ୍ରାର୍ଥନା କରାଯାଉଥିଲା । ବ୍ରାହ୍ମଣଙ୍କ ସହିତ ସେମାନଙ୍କୁ ତୁଳନା ବ୍ରାହ୍ମଣଙ୍କୁ ବ୍ୟଙ୍ଗ କରିବା ଉଦ୍ଦେଶ୍ୟରେ କରା ହୋଇନାହିଁ । ବରଂ ତାହା କେବଳ ମଣ୍ଡୂକମାନଙ୍କୁ ତୋଷାମୋଦ କରିବା ପାଇଁ ଉଦ୍ଦିଷ୍ଟ ।

ତେବେ Winternitzଙ୍କ ମତରେ ପ୍ରଥମେ ଏହି ସଙ୍ଗୀତ ବ୍ୟଙ୍ଗ ପାଇଁ ଉଦ୍ଦିଷ୍ଟ ଥିଲା । ପରେ ତାହା ଏହିପରି ଏକ ଯାଦୁକରୀ ସଙ୍ଗୀତ ରୂପେ ପରିଣତ କରାହୋଇଛି ।

M. Hung ମଧ୍ୟ ଅନୁରୂପ ମତ ପୋଷଣ କରିଥିଲେ ବୋଲି Winternitz ଉଲ୍ଲେଖ କରିଛନ୍ତି । Hung ଙ୍କ ମତରେ ପର୍ଜନ୍ୟଙ୍କ ପ୍ରତି ଉଦ୍ଦିଷ୍ଟ ଏହି ସୂକ୍ତ ସଙ୍ଗୀତ ଓ ପୂର୍ବବର୍ତ୍ତୀ ସୂକ୍ତ ସଙ୍ଗୀତ ବର୍ତ୍ତମାନ ମଧ୍ୟ ଭୀଷଣ ମରୁଡି ପଡିଲେ ବର୍ଷାକୁ ଭୂପୃଷ୍ଠରେ ପତିତ ହେବାକୁ ପ୍ରବର୍ତ୍ତାଇବାକୁ କୋଡିଏ ତିରିଶ ଜଣ ବ୍ରାହ୍ମଣ ଗୋଟିଏ ନଦୀ ନିକଟକୁ ଯାଇ ଆବୃତ୍ତି କରନ୍ତି ।

ଏହିପରି ଏହି ମଣ୍ଡୂକ ସୂକ୍ତର ଋଗ୍‌ବେଦର ଅଧିକାଂଶ ସୂକ୍ତଠାରୁ ଏକ ବିସ୍ମୟକର ସ୍ୱାତନ୍ତ୍ୟ ଅଛି ।

## ପଦଟୀକା :

୧. ବର୍ଷବ୍ୟାପୀ ଗ୍ରୀଷ୍ମ ତାପତାପିତ ମଣ୍ଡୂକଗଣଙ୍କୁ ଯେପରି ବର୍ଷବ୍ୟାପୀ ତପଶ୍ଚରଣ କରି ବ୍ରତପାଳନ କରୁଥିବା ସ୍ତୁତିକାରୀଙ୍କ ସହିତ ତୁଳନା କରାହୋଇଅଛି । ମଣ୍ଡୂକଗଣ ଯେପରି ବର୍ଷାର ଆଗମନପାଇଁ ନୀରବତାର ବ୍ରତ ଗ୍ରହଣ କରିଥାଆନ୍ତି । ଏହି ବ୍ରତର ପରିସମାପ୍ତି ହୁଏ ବର୍ଷା ଆସିଲେ । ସେତେବେଳେ ସେମାନେ ଗର୍ତ୍ତରୁ ନିର୍ଗତ ହୋଇ ବୃଷ୍ଟିଦେବଙ୍କ ସ୍ତୁତିଗାନ କରନ୍ତି । ଏହି ସୂକ୍ତରେ 'ବ୍ରାହ୍ମଣ'ର ଅର୍ଥ ସ୍ତୁତିକାରୀ । ସେତେବେଳେ ଜାତିବିଭାଗ ନ ଥିଲା ।

୨. 'ମୂଳ ସୂକ୍ତରେ 'ଘର୍ମିଣ' ଅଛି । 'ଘର୍ମ'ର ଆଉ ଏକ ଅର୍ଥ ହେଉଛି ଏକ ଉତ୍ତପ୍ତ ପାତ୍ର ଯହିଁରେ ପ୍ରବର୍ଗଚାରୀ ଦୁଗ୍ଧ ଢାଳି ଦେବତାଙ୍କୁ ସମର୍ପଣ କରନ୍ତି । ତେଣୁ 'ଘର୍ମିଣ'ର ଅର୍ଥ 'ଘର୍ମ ଯେ ବ୍ୟବହାର କରୁଛନ୍ତି' ମଧ୍ୟ ହୋଇପାରେ । ତେବେ ପୂର୍ବାପର ସଙ୍ଗତି ରକ୍ଷା କରି 'ଘର୍ମାକ୍ତ' ଅର୍ଥ କରିବା ଯଥାର୍ଥ ମନେ ହେଉଛି ।

୩. ନିରୁକ୍ତକାର ଯାସ୍କ ମଧ୍ୟ କହିଅଛନ୍ତି ଯେ ବୃଷ୍ଟିକାମନା କରି ବସିଷ୍ଠ ପର୍ଜନ୍ୟଙ୍କୁ ସ୍ତବ କଲେ । ମଣ୍ଡୂକଗଣ ବସିଷ୍ଠ ସେପରି ସ୍ତବ କରୁଥିବାର ଦେଖି ତାଙ୍କୁ ସମର୍ଥନ କଲେ । ତେଣୁ ବସିଷ୍ଠ ମଣ୍ଡୂକଗଣଙ୍କୁ ସ୍ତୁତି କଲେ ।

୪. ମୂଳ ସୂକ୍ତରେ ଅଛି - 'ଅନ୍ୟୋ ଅନ୍ୟମନୁଗୃହ୍ଣାତ୍ୟେ...''

******

# ଅରଣ୍ୟାନୀ ସୂକ୍ତ ଓ ରାତ୍ରି ସୂକ୍ତ

ଋଗ୍‌ବେଦର ଅରଣ୍ୟାନୀ ସୂକ୍ତ (୧୦ମ ମଣ୍ଡଳ ୧୪୬ତମ ସୂକ୍ତ) କୌଣସି ଦେବ ବା ଦେବୀଙ୍କ ପାଇଁ ଉଦ୍ଦିଷ୍ଟ ସ୍ତୁତି ସୂକ୍ତ ନୁହେଁ, ଆଧ୍ୟାତ୍ମିକ ଚିନ୍ତାଧାରା ବିଶିଷ୍ଟ ବା ପ୍ରତୀକାତ୍ମକ ସୂକ୍ତ ନୁହେଁ ବା ଔଷଧିଗୁଣ ଯୁକ୍ତ ବୃକ୍ଷଲତାଙ୍କ ପାଇଁ ଉଦ୍ଦିଷ୍ଟ କୃତଜ୍ଞତାସୂଚକ ଔଷଧିସୂକ୍ତ ଅନୁରୂପ ଏକ ସୂକ୍ତ ନୁହେଁ । ଏହା ଅରଣ୍ୟାନୀର ଚିତ୍ରବିଚିତ୍ର ରୂପରେ ବିସ୍ମୟାନ୍ୱିତ ଦେବମୁନି ନାମକ ଋଷି କବିଙ୍କର କେତେକାଂଶରେ ନାଟକୀୟ ଏକକ ଉକ୍ତି ସମ୍ବଳିତ ଏକ ସୁନ୍ଦର କବିତା । ମଣ୍ଡୂକ ସୂକ୍ତରେ ବ୍ୟଙ୍ଗ, ହାସ୍ୟରସ ଅଛି, ପରୋକ୍ଷରେ ବର୍ଷାର ଆଗମନ ପାଇଁ କାମନା, ପ୍ରାର୍ଥନା ଅଛି । ଅକ୍ଷସୂକ୍ତରେ ସାମାଜିକ ଚିତ୍ର ଅଛି, ନୈତିକ ଉପଦେଶ ଅଛି, ହାସ୍ୟରସ ଓ କାରୁଣ୍ୟର ମିଶ୍ରଣ ହୋଇଅଛି କିନ୍ତୁ ଅରଣ୍ୟାନୀ ସୂକ୍ତଟି ଅରଣ୍ୟାନୀର ଦର୍ଶନରେ ଉଦ୍‌ବୁଦ୍ଧ କବିଙ୍କର ଏକ ସ୍ୱତଃସ୍ଫୂର୍ତ୍ତ କବିତା ବୋଲି ମନେ ହୁଏ ।

ଅରଣ୍ୟାନୀ କବିଙ୍କ ପାଇଁ ଏକ ମୂକ ପ୍ରାକୃତିକ ବିଭାବ ମାତ୍ର ନୁହେଁ, ବରଂ ଯେପରି ଏକ ଜୀବନ୍ତ ମାନବିକ ଅନୁଭୂତିସମ୍ପନ୍ନ ସତ୍ତା । ସୂକ୍ତର ପ୍ରାରମ୍ଭରେ କବି ପ୍ରଶ୍ନ କରୁଛନ୍ତି, ''ହେ ଅରଣ୍ୟାନି, ତୁମେ ଯେପରି ଚାହୁଁ ଚାହୁଁ ଅଦୃଶ୍ୟ ହୋଇଯାଅ । କାହିଁକି ତୁମେ କାହାକୁ ଗାଁକୁ ଯିବାର ବାଟ ପଚାର ନାହିଁ ? ତୁମକୁ କ'ଣ ଏକା ରହିବାକୁ ଭୟ ଲାଗେ ନି ?'' ରହସ୍ୟ-ମୟ ଅରଣ୍ୟାନୀ, କବିମୁନି ଚାଲିଛନ୍ତି ତାରି ଭିତରେ । ଚାହୁଁ ଚାହୁଁ କେତେବେଳେ ଅରଣ୍ୟ ସରିଗଲାଣି । ଏହି ଅନୁଭୂତି କବିଙ୍କର ପ୍ରଥମ ପ୍ରଶ୍ନରେ ପ୍ରକାଶ ପାଇଥାଇପାରେ । କିମ୍ବା ସୂକ୍ତଟିର ଶେଷାଂଶରେ ସନ୍ଧ୍ୟାର ଆଗମନର ସୂଚନା ଅଛି । ସନ୍ଧ୍ୟା ଆସିଗଲେ ଚାହୁଁ ଚାହୁଁ ଅରଣ୍ୟାନୀର ବୃକ୍ଷଲତାଗୁଡ଼ିକର ନିର୍ଦ୍ଦିଷ୍ଟ ରୂପ ଲୁଚିଯାଏ - ତାହା ହିଁ ବୋଧ ହୁଏ କବିଙ୍କ ପ୍ରଶ୍ନରେ ସୂଚିତ ହୋଇଅଛି । ଜନପଦର ବହୁଦୂରରେ ଅବସ୍ଥିତ ଅରଣ୍ୟାନୀ, ତା'ରି ଭିତରେ ପଥିକ କବି ପ୍ରବେଶ କରି ବୋଧହୁଏ ବାଟ ହରାଇଛନ୍ତି । ନିଜର ସେହି ଦିଗ୍‌ଭ୍ରାନ୍ତତା ଯେପରି ସେ ଅରଣ୍ୟାନୀଠାରେ ଆରୋପ କରି ପଚାରିଛନ୍ତି, ''ଲୋକାଳୟ ଠାରୁ ଦୂରସ୍ଥ ଅରଣ୍ୟାନୀଙ୍କୁ କଣ ଏକାକୀ ରହିବାକୁ (ତାଙ୍କରି ପରି) ଭୟ ଲାଗେ ନାହିଁ ?''

ସୂକ୍ତର ଦ୍ୱିତୀୟ ଋକ୍‌ରେ ସୂକ୍ତକାର ଅରଣ୍ୟାନୀର ଜୀବଜନ୍ତୁଙ୍କର ବିଚିତ୍ର ଶବ୍ଦ-ଗୁଡ଼ିକର କବିସୁଲଭ ବର୍ଣ୍ଣନା ଦେଇଅଛନ୍ତି - ''ଗୋଟିଏ ଜନ୍ତୁ ବୃଷ ତୁଲ୍ୟ ଶବ୍ଦ କରୁଛି; ଆଉ ଗୋଟିଏ ଚି ଚି ଶବ୍ଦ କରି ଯେପରି ତାକୁ ଉତ୍ତର ଦେଉଛି ।'' କବିଙ୍କର ମନେ ହେଉଛି ଯେ ସବୁ ଯେପରି ଜୀବଜନ୍ତୁମାନଙ୍କର ରବ ବା ଉକ୍ତି ପ୍ରତ୍ୟୁକ୍ତି ମାତ୍ର ନୁହେଁ, ସେମାନେ ଯେପରି ବୀଣାର ବିଭିନ୍ନ ତାନର ଝଙ୍କାର ସୃଷ୍ଟି କରି ଅରଣ୍ୟାନୀଙ୍କୁ ବନ୍ଦନା କରୁଅଛନ୍ତି । ଅରଣ୍ୟାନୀ ମଧ୍ୟରେ ଆଲୋକ ଅନ୍ଧକାରର କ୍ରୀଡ଼ା ସୃଷ୍ଟିକରୁଛି ନାନା ପ୍ରକାର ଚିତ୍ର । ଋଷି କବି ଲେଖିଛନ୍ତି, ''ଅରଣ୍ୟାନୀ ମଧ୍ୟରେ କେଉଁଠି ଗାଈମାନେ ଚରୁଛନ୍ତି ବୋଲି ଭ୍ରମ ହୁଏ, କେଉଁଠି ବା ବିରାଟ ପ୍ରାସାଦ ପରି କଣ ଗୋଟିଏ ଦେଖାଯାଏ । ସନ୍ଧ୍ୟାବେଳେ ଯେପରି ସେହି ଅରଣ୍ୟାନୀରୁ

ବାହାରି ଆସନ୍ତି ଶହ ଶହ ଶଗଡ ।'' ଅରଣ୍ୟାନୀରେ ଶୁଣାଯାଉଥିବା ନାନା ପ୍ରକାର ବିଚିତ୍ର ଶବ୍ଦ ସବୁ କିଏ କରୁଛି ବାରି ନ ପାରି କବି ମନକୁ ମନ ପଚାରୁଛନ୍ତି, ''ତେବେ କଣ ଜଣେ ଲୋକ ଗାଈକୁ ଡାକୁଛି ? ଆଉ ଜଣେ ଲୋକ ତେବେ କଣ କାଠ କାଟୁଛି ?'' ତାପରେ କହୁଛନ୍ତି, ''ଅରଣ୍ୟାନୀ ମଧ୍ୟରେ ଯେଉଁ ଲୋକଥାଏ, ସନ୍ଧ୍ୟା ବେଳେ ତାର ମନେ ହୁଏ ଯେପରି କିଏ ଚିତ୍କାର କଲା ।'' ସୂକ୍ତଟିର ଶେଷାଂଶରେ ଅରଣ୍ୟାନୀର ରହସ୍ୟମୟତା, କବିଙ୍କର ସପ୍ରଶ୍ନ ମନୋଭାବ, ଦ୍ୱନ୍ଦ୍ୱ,ଭୀତି, ବିସ୍ମୟର ଭାବ ଆଉ ପକାଶ ପାଉନାହିଁ, ବରଂ ପ୍ରକାଶ ପାଇଛି ଅରଣ୍ୟାନୀ ପ୍ରତି ଆଗ୍ରହ, ଆତ୍ମୀୟତାର ଭାବ । କବି କହୁଛନ୍ତି, ''ବାସ୍ତବିକ୍ ଅରଣ୍ୟାନୀ କାହାରି ହେଲେ ପ୍ରାଣ ନାଶ କରନ୍ତି ନାହିଁ । ଅନ୍ୟାନ୍ୟ (ହିଂସ୍ର) ପଶୁ ଯଦି ନ ଆସନ୍ତି, ତେବେ (ଅରଣ୍ୟାନୀ ମଧ୍ୟରେ) ଭୟ କରିବାର କିଛି ନାହିଁ । ସେଠାରେ ସୁମିଷ୍ଟ ଫଳ ଭକ୍ଷଣ କରି ଅତି ଆନନ୍ଦରେ ଯଥେଚ୍ଛା କାଳାତିପାତ କରିହେବ ।'' ଅରଣ୍ୟାନୀ ସୌରଭମୟ । କବିଙ୍କ ଭାଷାରେ ''ମୃଗନାଭିପରି ଅରଣ୍ୟାନୀର କେତେ ସୌରଭ'' । ଅରଣ୍ୟାନୀରେ ଅଭାବ କିଛି ନାହିଁ, କୃଷକ କେହି ସେଠି ନାହାନ୍ତି, ତଥାପି ଖାଦ୍ୟ ଯଥେଷ୍ଟ ରହିଛି । ଅରଣ୍ୟାନୀକୁ ପ୍ରଶଂସା କରି କବି କହିଛନ୍ତି, ''ଅରଣ୍ୟାନୀ ମୃଗମାନଙ୍କର (ହରିଣମାନଙ୍କର ବା ପଶୁମାନଙ୍କର) ମାତୃତୁଲ୍ୟ ।'' ଶେଷରେ କବି ବିନୟର ସହିତ କହିଛନ୍ତି, ''ମୁଁ ଅରଣ୍ୟାନୀକୁ ଏହିପରି ବର୍ଣ୍ଣନା କଲି ।''

ଅରଣ୍ୟପ୍ରେମୀ ଋଷି ଦେବମୁନି ଅରଣ୍ୟାନୀର ରୂପବୈଚିତ୍ର୍ୟ, ଶବ୍ଦବୈଚିତ୍ର୍ୟ ଓ ସୁରଭିସମ୍ଭାର ସରଳ କଥୋପକଥନର ଭାଷାରେ ବର୍ଣ୍ଣନା କରିଅଛନ୍ତି । ମନରେ ଯେଉଁ ପ୍ରଶ୍ନଗୁଡିକ ଉଠିଛି, ସେଗୁଡିକ ପ୍ରକାଶ କରିଅଛନ୍ତି । ଉଷା ସୂକ୍ତଗୁଡିକର ବର୍ଣ୍ଣନାବିଭବ, ଅଳଙ୍କାରବାହୁଲ୍ୟ, ଉଚ୍ଛ୍ୱସିତ ଆବେଗମୟତା ଏଥିରେ ନାହିଁ । ଉଷାଙ୍କୁ ଦେବୀରୂପେ କଳ୍ପନା ଓ ସମ୍ବୋଧନ କରାଯାଇଅଛି । ସରସ୍ୱତୀସୂକ୍ତଗୁଡିକରେ ଉଷା ସୂକ୍ତଗୁଡିକର ବର୍ଣ୍ଣନାବିଭବ ନ ଥିଲେ ମଧ୍ୟ କେତେକାଂଶରେ ଆବେଗାନ୍ୱିତ ଭାଷା ଓ ଭାବ ପରିଲକ୍ଷିତ ହୁଏ । ଆଉ ମଧ ସରସ୍ୱତୀ ନଦୀ ଉଷାଙ୍କ ପରି ଦେବୀରୂପେ ପରିକଳ୍ପିତ ହୋଇଅଛନ୍ତି । ଅରଣ୍ୟାନୀ ସୂକ୍ତରେ ଅରଣ୍ୟାନୀଠାରେ ଦେବତ୍ୱ ଆରୋପିତ ହୋଇ ନାହିଁ । ସୂକ୍ତର ଶୀର୍ଷରେ ଅରଣ୍ୟାନୀ ଦେବତା ବୋଲି ଦର୍ଶାଯାଇଅଛି । ତହିଁର ଅର୍ଥ ନୁହେଁ ଯେ ଅରଣ୍ୟାନୀଠାରେ ଦେବତ୍ୱ ଆରୋପ କରାଯାଇଅଛି । ବେଦର ଅନେକ ସୂକ୍ତର ଦେବତା ଶବ୍ଦ ସୂକ୍ତର ବିଷୟବସ୍ତୁ ସୂଚାଉଅଛି । ଉଦାହରଣସ୍ୱରୂପ ମଣ୍ଡୂକ ସୂକ୍ତର ଶୀର୍ଷରେ 'ମଣ୍ଡୂକ ଦେବତା' ବୋଲି ସୂଚିତ ହୋଇଅଛି । ଅକ୍ଷସୂକ୍ତରେ 'ଅକ୍ଷ ଦେବତା' ବୋଲି ଉଲ୍ଲେଖ କରାଯାଇଅଛି । ୧୦ମ ମଣ୍ଡଳର ଶତ୍ରୁବିନାଶମୂଳକ ମନ୍ତ୍ରସମ୍ବଳିତ ସୂକ୍ତଟିର ଦେବତା 'ଶତ୍ରୁବିନାଶ' । ଅରଣ୍ୟାନୀ ସୂକ୍ତରେ ଋଷିଙ୍କର ଅରଣ୍ୟାନୁଭୂତି ମାତ୍ର ପ୍ରକାଶ ପାଇଛି । କୌଣସି ସ୍ତୁତି ବା ପ୍ରାର୍ଥନା ନାହିଁ । କେବଳ ମାତ୍ର ପ୍ରକୃତିବର୍ଣ୍ଣନାତ୍ମକ କବିତାରୂପେ ଅରଣ୍ୟାନୀ ସୂକ୍ତ ସାରା ଋଗ୍‌ବେଦରେ ଅଦ୍ୱିତୀୟ ମନେହୁଏ ।

ରାତ୍ରି ସୂକ୍ତ (୧୦ମ ମଣ୍ଡଳ ୧୨୭ ତମ ସୂକ୍ତ)ର ଏହି ଅରଣ୍ୟାନୀ ସୂକ୍ତ ସହିତ କେତେକାଂଶରେ ସାମଞ୍ଜସ୍ୟ ଅଛି । ଅବଶ୍ୟ ରାତ୍ରିକୁ ରାତ୍ରି ଦେବୀ ରୂପେ ସମ୍ମାନର ସହିତ ସମ୍ବୋଧନ କରାଯାଇଛି । ରାତ୍ରିଦେବୀ ଓ ଊଷାଦେବୀ ଦୁଇ ଭଗ୍ନୀରୂପେ ଚିତ୍ରିତ ହୋଇଅଛନ୍ତି । କିନ୍ତୁ ସୂକ୍ତର ଅନେକାଂଶରେ ରାତ୍ରିର ଏକ ବାସ୍ତବବାଦୀ ବର୍ଣ୍ଣନା ଦିଆହୋଇଛି । ସୂକ୍ତକାର କୁଶିକ ମୁନିଙ୍କର ସୌନ୍ଦର୍ଯ୍ୟବୋଧ ମଧ୍ୟ ପ୍ରକାଶ ପାଇଅଛି । ସୂକ୍ତର ପ୍ରାରମ୍ଭରେ ରାତ୍ରିର ଆଗମନ ଓ ନକ୍ଷତ୍ରବିମଣ୍ଡିତ ଆକାଶ ବର୍ଣ୍ଣନା କରି ମୁନି କହୁଅଛନ୍ତି, ''ରାତ୍ରି ଦେବୀ ଆଗମନ କରି ଚତୁର୍ଦ୍ଦିଗକୁ ବ୍ୟାପିଯାଇଛନ୍ତି । ନକ୍ଷତ୍ରଗଣଙ୍କ ଦ୍ୱାରା ସେ ବିଶ୍ୱର ଶୋଭା ସୁସମୃଦ୍ଧ କରିଅଛନ୍ତି ।'' ରାତ୍ରିଦେବୀ ଯେପରି ଏକ ସାମ୍ରାଜ୍ଞୀ । କୁଶିକ ମୁନି କହୁଅଛନ୍ତି, ''ଦେବୀରୂପିଣୀ ରାତ୍ରିଦେବୀ ସର୍ବତ୍ର ବିସ୍ତାର ଲାଭ କରିଛନ୍ତି, ନୀଚରେ ଯେଉଁମାନେ ଅଛନ୍ତି, ଉର୍ଦ୍ଧ୍ୱରେ ଯେଉଁମାନେ ଅଛନ୍ତି, ସମସ୍ତଙ୍କୁ ସେ ସମାଚ୍ଛାଦିତ କରିଦେଇଅଛନ୍ତି ।'' ତାପରେ କବି ଆପାତତଃ ଏକ ଅସ୍ୱାଭାବିକ ବର୍ଣ୍ଣନା ଦେଉଅଛନ୍ତି - ''ରାତ୍ରିଦେବୀ ଆଲୋକଦ୍ୱାରା ଅନ୍ଧକାରକୁ ଧ୍ୱଂସ କରିଦେଉଛନ୍ତି (ଜ୍ୟୋତିଷା ବାଧତେ ତମଃ) ।'' ଅର୍ଥ ସୁସ୍ପଷ୍ଟ ହେଉନାହିଁ । ବୋଧହୁଏ ରାତ୍ରିଦେବୀ ନକ୍ଷତ୍ରଗଣଙ୍କ ଆଲୋକଦ୍ୱାରା ଅନ୍ଧକାର ଦୂର କରୁଛନ୍ତି ବୋଲି ଏହା ସୂଚାଉଅଛି । ପରବର୍ତ୍ତୀ ଋକ୍‌ରେ କୁହାଯାଉଅଛି, ''ରାତ୍ରିଦେବୀ ଆସି ଊଷାଦେବୀଙ୍କୁ ଭଗିନୀରୂପେ ଗ୍ରହଣ କଲେ, ସେ ଅନ୍ଧକାର ଦୂର କଲେ ।'' (ଅନ୍ୟ କେତେକ ସୂକ୍ତରେ, ବିଶେଷତଃ ଊଷାସୂକ୍ତଗୁଡିକର ଅନେକ ସ୍ଥାନରେ ରଜନୀ ଓ ଊଷାଙ୍କୁ ପରସ୍ପରର ଭଗ୍ନୀରୂପେ ବର୍ଣ୍ଣନା କରାଯାଇଛି) । ରାତ୍ରି ଶେଷର ଏହି ଚିତ୍ର ରାତ୍ରି ଓ ଊଷାର ପରସ୍ପରବିରୋଧିତା ନ ଦର୍ଶାଇ ରାତ୍ରି ଯେପରି ଊଷାର ଆଗମନର ଏକ ପ୍ରସ୍ତୁତି ମାତ୍ର, ରାତ୍ରିର ଅନ୍ଧକାର ଯେପରି ଊଷାରେ ଆଲୋକର ଆଗମନ ପାଇଁ ପଥ ପ୍ରସ୍ତୁତି କରେ, ତାହା ସୂଚାଉଅଛି । ଗଭୀର ରାତ୍ରିର ଓ ଜୀବଜଗତ ଉପରେ ତାର ପ୍ରଭାବର ଏକ ବାସ୍ତବବାଦୀ ବର୍ଣ୍ଣନା ସୂକ୍ତଟିରେ ଅଛି । ପ୍ରଥମେ ଋଷି କହୁଅଛନ୍ତି, ''ପକ୍ଷୀମାନେ ଯେପରି ବୃକ୍ଷରେ ଆଶ୍ରୟ ଗ୍ରହଣ କରନ୍ତି, ନିବାସ କରନ୍ତି, ସେହିପରି ଯାହାଙ୍କର ଆଗମନରେ ଆମେ ଶୟନ କରିଛୁ, ସେହି ରାତ୍ରିଦେବୀ ଆମର ମଙ୍ଗଳବିଧାନ କରନ୍ତୁ ।'' ତାପରେ ଗଭୀର ରାତ୍ରିର ଚିତ୍ର ଉପସ୍ଥାପିତ ହୋଇଅଛି- ''ଗ୍ରାମଗୁଡିକ ନୀରବ, ନିସ୍ତବ୍ଧ ହୋଇଯାଇଛି । ପଦଚାରୀଗଣ, ପକ୍ଷୀଗଣ, ଦ୍ରୁତଗାମୀ ଶ୍ୟେନଗଣ, ସମସ୍ତେ ନୀରବ, ନିସ୍ତବ୍ଧ ହୋଇ ଶୟନ କରୁଛନ୍ତି ।'' ରାତ୍ରିର ଭୟାନକତାର ଅବତାରଣା କରି କୁଶିକ ମୁନି ପ୍ରାର୍ଥନା କରିଅଛନ୍ତି, ''ହେ ରାତ୍ରି, ବୃକ ଓ ବୃକୀଙ୍କୁ ଆମ ନିକଟରୁ ଦୂରକୁ ନେଇଯାଅ,ଚୋରକୁ ଦୂରକୁ ନେଇଯାଅ । ଆମ୍ଭମାନଙ୍କର ବିଶେଷ ମଙ୍ଗଳବିଧାନ କର ।'' ରାତ୍ରିର ଅନ୍ଧକାରର ଆଦିଗ୍‌ଚକୟ ବ୍ୟାପକତା ବର୍ଣ୍ଣିତ ହୋଇଅଛି । ପରବର୍ତ୍ତୀ ଋକ୍‌ରେ ଅଛି, ''କାଳିମାମୟ ଅନ୍ଧକାର ସୁସ୍ପଷ୍ଟ ରୂପେ ଦେଖାଦେଇଅଛି, ଆମ୍ଭମାନଙ୍କର ସମୀପ ପର୍ଯ୍ୟନ୍ତ ସମସ୍ତ ଆଚ୍ଛନ୍ନ କରି ଦେଇଅଛି ।'' ରାତ୍ରିର ଅନ୍ଧକାରାକ୍ରାନ୍ତ ଭୀତ ମୁନି ପ୍ରାର୍ଥନା କରିଛନ୍ତି ଊଷାଦେବୀଙ୍କୁ, ''ହେ ଊଷାଦେବୀ, ଆମ୍ଭମାନଙ୍କର ଋଣ ଯେପରି ପରିଶୋଧ କରି ନଷ୍ଟ କରିଦିଅ, ସେହିପରି

ଘନ ଅନ୍ଧକାରକୁ ନଷ୍ଟକର ।'' ଅନ୍ଧକାରକୁ ଋଣ ସହିତ ତୁଳନା କରାହୋଇଅଛି । ଊଷା ସୂକ୍ତ ଗୁଡିକରେ ଅନେକ ସମୟରେ ଊଷାଦେବୀଙ୍କୁ 'ଧନବତୀ', 'ଧନରତ୍ନଦାୟିନୀ' ବୋଲି ବର୍ଣ୍ଣନା କରାହୋଇଛି । ସେହି ଦୃଷ୍ଟିରୁ ଏହି ସୂକ୍ତରେ ତାଙ୍କୁ ଋଣବିନଷ୍ଟକାରିଣୀରୂପେ ଚିତ୍ରଣ କରାହୋଇଅଛି ବୋଲି ମନେ ହୁଏ । ଊଷାଦେବୀ ପ୍ରାର୍ଥନା ଶୁଣିଛନ୍ତି । ରାତ୍ରିର ଅନ୍ଧକାରର ଅବସାନ ଘଟିଛି । ଋଷି କବି ରାତ୍ରି ଦେବୀଙ୍କୁ ବିଦାୟ ଦେଇ କହୁଅଛନ୍ତି, ''ହେ ଆକାଶକନ୍ୟା ରାତ୍ରି, ତୁମେ ଯାଉଛ, - ତୁମକୁ ଗାଈପରି ଏହି ସବୁ ସ୍ତବ ଅର୍ପଣ କରୁଛି, ତୁମେ ଗ୍ରହଣ କର ।'' 'ଗୋ' ଶବ୍ଦର ଗୋଟିଏ ଅର୍ଥ ରଶ୍ମି । ସ୍ତବଗୁଡିକୁ ପକ୍ଷାନ୍ତରେ ସୂର୍ଯ୍ୟରଶ୍ମି ସହିତ ତୁଳନା କରାଯାଇଥାଇପାରେ । କାରଣ ସ୍ତୋତା ଆଲୋକକାମୀ । ଊଷାଦେବୀଙ୍କ ସହିତ ଆସନ୍ତି ସୂର୍ଯ୍ୟଙ୍କ ରଶ୍ମିସମୂହ ।

ସୂକ୍ତର ଆରମ୍ଭ ହୋଇଛି ରାତ୍ରିଦେବୀଙ୍କ ଆଗମନର ବର୍ଣ୍ଣନାରେ, ଶେଷ ହୋଇଛି ରାତ୍ରିଦେବୀଙ୍କ ବିଦାୟରେ । ମଧ୍ୟରେ ରହିଛି, ରାତ୍ରିର ବ୍ୟାପକ କାଳିମା, ଚୌର ହିଂସଜନ୍ତୁଜନିତ ଭୟାବହତା, ଗଭୀର ରାତ୍ରିକାଳୀନ ନିସ୍ତବ୍ଧତା, ନିର୍ଜନତା, ନିଷ୍ପନ୍ଦତା- ଏକପ୍ରକାର ସର୍ବବ୍ୟାପୀ ନିର୍ଜୀବତାର ବର୍ଣ୍ଣନା ।

T.S. Eliot କହିଲା ଭଳି In the beginning is the end । ସୂକ୍ତର ପ୍ରାରମ୍ଭରେ ହିଁ ଶେଷର ସୂଚନା । ରାତ୍ରିଦେବୀ ଆଲୋକର ପଥ ଉନ୍ମୁକ୍ତ କରିଦିଅନ୍ତି । ଊଷାଦେବୀଙ୍କୁ ଭଗିନୀରୂପେ ଦେଖନ୍ତି । ଶେଷରେ ଊଷାଦେବୀ ଅନୁରୁଦ୍ଧ ହୋଇଛନ୍ତି ଅନ୍ଧକାର ବିନାଶ କରିବାକୁ । ରାତ୍ରି ବିଦାୟନେଇଛନ୍ତି ଋଷିଙ୍କଠାରୁ ଗୋଧନ ତୁଲ୍ୟ ସ୍ତବସମ୍ଭାରର ଅର୍ଘ୍ୟ ନେଇ ।

ରାତ୍ରିସୂକ୍ତ ଅରଣ୍ୟାନୀ ସୂକ୍ତ ପରି ପ୍ରକୃତିର ଏକ ବିଶିଷ୍ଟଦୃଶ୍ୟପ୍ରଚୋଦିତ ଶୁଦ୍ଧ କବିତା ମାତ୍ର ନୁହେଁ । ଏଥିରେ ରାତ୍ରିକୁ ଦେବୀରୂପେ କଳ୍ପନା କରାଯାଇ ସ୍ତୁତି କରାଯାଇଅଛି । କିନ୍ତୁ ରାତ୍ରିର ଯେଉଁ ସ୍ୱଚ୍ଛ ବାସ୍ତବବାଦୀ ବର୍ଣ୍ଣନା ଏଥିରେ ମିଳୁଅଛି, ତାହା ଦେବସ୍ତୁତିମୂଳକ ଅନ୍ୟ ସମସ୍ତ ସୂକ୍ତଠାରୁ ଏହାକୁ ଏକ ସ୍ୱାତନ୍ତ୍ର୍ୟ ପ୍ରଦାନ କରୁଛି ।

******

# ଋଗ୍‌ବେଦରେ ଆଙ୍ଗିରସ କୁତ୍ସଙ୍କର ଅଗ୍ନିସୂକ୍ତ
# (୧ମ ମଣ୍ଡଳ, ୯୭ତମ ସୂକ୍ତ)

ଋଷି କୁତ୍ସ ଋଗ୍‌ବେଦର ପନ୍ଦର ଜଣ ଶତର୍ଚ୍ଚୀ (ଶତଋକ୍‌ପ୍ରଣେତା)ଙ୍କ ମଧ୍ୟରେ ଅନ୍ୟତମ । ସେ ମଧ୍ୟ ଋଷି ଅଗସ୍ତ୍ୟଙ୍କ ପରି ଦ୍ୱିଶତର୍ଚ୍ଚୀ, ତାଙ୍କରି ପରି ଦ୍ୱିଶତରୁ ଅଧିକ ଋକ୍ ରଚନା କରିଅଛନ୍ତି । ପ୍ରଥମ ମଣ୍ଡଳର ୨୧୨ ଟି ଋକ୍ ବିଶିଷ୍ଟ କୋଡିଏଟି ସୂକ୍ତ (୯୪ ସୂ - ୯୮ସୂ ଓ ୧୦୧ ସୂ - ୧୧୫ ସୂ) ତାଙ୍କ ଦ୍ୱାରା ପ୍ରଣୀତ । ତଦ୍‌ବ୍ୟତୀତ ନବମ ମଣ୍ଡଳର ୯୭ତମ ସୂକ୍ତର ଶେଷ ୧୪ଟି ଋକ୍ ମଧ୍ୟ ସେ ପ୍ରଣୟନ କରିଅଛନ୍ତି । ପ୍ରଥମ ମଣ୍ଡଳସ୍ଥ ତାଙ୍କର ପ୍ରାୟ ପ୍ରତ୍ୟେକ ସୂକ୍ତର ଶେଷ ଧାଡି ହେଉଛି - ତନ୍ନୋ ମିତ୍ରୋ ବରୁଣୋ ମାମହନ୍ତାମଦିତିଃ ସିନ୍ଧୁଃ ପୃଥିବୀ ଉତ ଦ୍ୟୌଃ - ଅର୍ଥାତ୍, ମିତ୍ର, ବରୁଣ, ଅଦିତି, ସିନ୍ଧୁ, ପୃଥିବୀ ଓ ଦ୍ୟୌଃ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ନବମ ମଣ୍ଡଳର ଉପରୋକ୍ତ ସୂକ୍ତର ଶେଷ ଧାଡିଟି ମଧ୍ୟ ତାହା ।

କୁତ୍ସ ଅଙ୍ଗିରାଙ୍କ ପୁତ୍ର । ଯାସ୍କ ଅଙ୍ଗିରା ଶବ୍ଦର ଅର୍ଥ କରିଛନ୍ତି, 'ଜ୍ୱଳନ୍ତ ଅଙ୍ଗାର' । ଐତରେୟ ବ୍ରାହ୍ମଣରେ ଅଛି ଯେ ଅଙ୍ଗିରା ଋଷିଗଣ ପ୍ରଥମେ ଯଜ୍ଞାଗ୍ନିର ଅଙ୍ଗାର ମାତ୍ର ଥିଲେ । କିନ୍ତୁ ଋଗ୍‌ବେଦର ପ୍ରଥମ ମଣ୍ଡଳ ତଥା ଅନ୍ୟାନ୍ୟ ମଣ୍ଡଳସ୍ଥ କେତେକ ସୂକ୍ତରୁ ମନେ ହୁଏ ଯେ ଅଙ୍ଗିରା ଗୋଟିଏ ଅତି ପ୍ରାଚୀନ ଋଷିବଂଶର ନାମ । ଅଙ୍ଗିରାଗଣ ଅଗ୍ନିପୂଜା ପ୍ରବର୍ତ୍ତନ କରିଥିଲେ । ୧ମ ମଣ୍ଡଳର ୭୧ ତମ ସୂକ୍ତର ୨ୟ ଓ ୩ୟ ଋକ୍‌ରେ ଅଛି ଯେ ଅଙ୍ଗିରାଗଣ ମନ୍ତ୍ରଦ୍ୱାରା ଅଗ୍ନିଙ୍କ ସ୍ତୁତି କରି ତାରି ଧ୍ୱନି ଦ୍ୱାରା ଶକ୍ତିଶାଳୀ ଦୈତ୍ୟ ପଣିକୁ ନିହତ କରିଥିଲେ, ଯଜ୍ଞରୂପକ ଅଗ୍ନିଙ୍କୁ ଧାରଣ କରିଥିଲେ । Wilson ଙ୍କ ମତରେ ଅଙ୍ଗିରାଗଣ ଅଗ୍ନି ପୂଜାର ପ୍ରଥମ ପ୍ରବର୍ତ୍ତକ ହୋଇଥାଆନ୍ତୁ ବା ନ ଥାଆନ୍ତୁ, କିନ୍ତୁ ସେଥିର ନିଶ୍ଚିତ ରୂପେ ସଂଗଠକ ଥିଲେ । ୧ମ ୮୩ସୂ, ୪ର୍ଥ ଋକ୍‌ରେ ଅଛି ଯେ ଅଙ୍ଗିରାଗଣ ଅଗ୍ନି ପ୍ରଜ୍ୱଳିତ କରି ଯଜ୍ଞ କରି ଇନ୍ଦ୍ରଙ୍କର ପୂଜା କରିଥିଲେ । ଅଙ୍ଗିରସ ଶବ୍ଦ ବିଭିନ୍ନ ଅର୍ଥରେ ପ୍ରୟୋଗ କରା ହୋଉଛି, ଯଥା- ଅଗ୍ନିଙ୍କ ନାମ, ଅଗିଙ୍କ ପୁତ୍ରଙ୍କ ନାମ । ଇନ୍ଦ୍ର, ବୃହସ୍ପତି ଓ ଅଶ୍ୱିଦ୍ୱୟଙ୍କୁ ମଧ୍ୟ ବେଦର କେତେକ ସ୍ଥାନରେ ଅଙ୍ଗିରସ ବୋଲି ଅଭିହିତ କରା ହୋଇଅଛି । ଉଷାଙ୍କୁ ଇନ୍ଦ୍ରତମା, ଅଙ୍ଗିରସତମା ବୋଲି ବର୍ଣ୍ଣନା କରା ହୋଇଅଛି (ତେଣୁ ଶ୍ରୀ ଅରବିନ୍ଦଙ୍କ ମତରେ ଅଙ୍ଗିରସ ଏକ ଋଷିକୁଳର ନାମ ମାତ୍ର ନୁହେଁ, ଏହା ଅଗ୍ନିଙ୍କର ପ୍ରଭା, ଆଲୋକ, ଶକ୍ତିର ସୂଚକ-ଏକ ପ୍ରତୀକାତ୍ମକ ଶବ୍ଦ) ।

ନିଘଣ୍ଟୁରେ କୁତ୍ସର ଅର୍ଥ ବଜ୍ର ବୋଲି ପ୍ରଦତ୍ତ ହୋଇଅଛି । ସେହି ଦୃଷ୍ଟିରୁ ସେ ବଜ୍ରଧାରୀ ଇନ୍ଦ୍ରଙ୍କର ଯଥାର୍ଥ ସଖା । ୧ମ, ୬୩ ସୂ, ୩ୟ ଋକ୍‌ରେ ଉଲ୍ଲେଖ ଅଛି ଯେ ଇନ୍ଦ୍ର ଉଜ୍ଜ୍ୱଳରୂପ ଯୁବା କୁତ୍ସଙ୍କୁ ସାହାଯ୍ୟ କରି ଶୁଷ୍ଣଙ୍କୁ ବଧ କରିଥିଲେ (ତ୍ୱଂ ଶୁଷ୍ଣଂ ବୃଜନେ............ଯୂନେ କୁତ୍ସାୟ ଦ୍ୟୁମତେ ସଚାହନ୍) । କୁତ୍ସ ଏହି ସୂକ୍ତରେ ଋଷି ରୂପେ

ନୁହେଁ, ଦସ୍ୟୁଗଣଙ୍କ ସହିତ ସଂଗ୍ରାମରତ ଯୋଦ୍ଧାରୂପେ ବର୍ଣ୍ଣିତ ହୋଇଅଛନ୍ତି । ସେଥିପାଇଁ ପ୍ରଖ୍ୟାତ ଟୀକାକାର ଓ ଅନୁବାଦକ Wilson କହିଛନ୍ତି - "...Kutsa would be a prince who bore an active part in the subjugation of the original tribes of India." ୧ମ, ୩୩ ସୂ, ୧୪ର, ରେ ଇନ୍ଦ୍ରଙ୍କୁ କୁସଙ୍କ ରକ୍ଷାକର୍ତ୍ତା ବୋଲି ବର୍ଣ୍ଣନା କରାହୋଇଅଛି । ୧ମ, ୧୦୬ ସୂ, ୬ ର, ରେ କୂପରେ ପତିତ କୁସ ଇନ୍ଦ୍ରଙ୍କୁ ସେଥିରୁ ଉଦ୍ଧାର କରିବାକୁ ପ୍ରାର୍ଥନା କରିଅଛନ୍ତି ବୋଲି ବର୍ଣ୍ଣିତ ହୋଇଅଛି ।

କିନ୍ତୁ ଆଉ କେତେକ ସୂକ୍ତରେ କୁସ ଇନ୍ଦ୍ରଙ୍କ ଦ୍ୱାରା ପ୍ରପୀଡିତ ହୋଇଥିଲେ ବୋଲି ଉଲ୍ଲେଖ ଅଛି । ୧ମ, ୫୩ସୂ, ୧୦ମ ଋକ୍‌ରେ ବର୍ଣ୍ଣିତ ହୋଇଅଛି ଯେ ଇନ୍ଦ୍ର କୁସ, ଅତିଥିଗ୍ୱ ଓ ଆୟୁଙ୍କୁ ସୁଶ୍ରବା ରାଜାଙ୍କର ଅଧୀନ କରିଥିଲେ । କେତେକ ବିଦ୍ୱାନ୍‌ଙ୍କ ମତରେ ଦୁଇଜଣ କୁସ ଥିଲେ । ଜଣେ ଇନ୍ଦ୍ରଙ୍କର ପ୍ରିୟ ଥିଲେ , ଆଉ ଜଣେ ଇନ୍ଦ୍ର ବରୋଧୀ ଥିଲେ ।

୪ମ, ୨୬ସୂ, ୨ୟ ଋକ୍‌ରେ କୁସଙ୍କୁ ଆର୍ଜ୍ଜୁନେୟ ବୋଲି ମଧ ଅଭିହିତ କରାହୋଇ ଅଛି (କୁସଂ ଆର୍ଜ୍ଜୁନେୟଂ -)। ଅତି ପ୍ରାଚୀନ ଋଷି ତ୍ରିତ ଓ କୁସ ଅଭିନ୍ନ ବୋଲି ମଧ ବହୁ ବିଦ୍ୱାନ୍‌ଙ୍କର ମତ ।

ଇନ୍ଦ୍ରଙ୍କ ପରେ ଅଗ୍ନିଙ୍କ ପାଇଁ ଋଗ୍‌ବେଦର ସର୍ବାଧିକ ସୂକ୍ତ (୨୦୦ସୂକ୍ତ) ଉଦ୍ଦିଷ୍ଟ । କୁସଙ୍କର ପ୍ରଥମ ମଣ୍ଡଳସ୍ଥ ୨୦ଟି ସୂକ୍ତରୁ ୬ଟି ଅଗ୍ନିଙ୍କ ପ୍ରତି, ଦୁଇଟି ଅଗ୍ନି ଓ ଇନ୍ଦ୍ର ଉଭୟଙ୍କ ପ୍ରତି ଓ ୫ଟି ତାଙ୍କ ସଖା ଇନ୍ଦ୍ରଙ୍କ ପ୍ରତି ଉଦ୍ଦିଷ୍ଟ । ବାକିତକ ଋଭୁ, ବିଶ୍ୱେଦେବା, ସୂର୍ଯ୍ୟ, ଉଷା ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଅଛି ।

୯୪ ତମ ସୂକ୍ତର ୬ଷ୍ଠ ଋକ୍‌ରେ କୁସ ଋଷି ଉଲ୍ଲସିତ ହୃଦୟରେ ଅଗ୍ନିଙ୍କୁ ସମ୍ବୋଧନ କରି କହିଅଛନ୍ତି - "ତ୍ୱମଧ୍ୱର୍ଯ୍ୟୁରୁତ ହୋତାସି ପୂର୍ବାଃ ପ୍ରଶାସ୍ତା ପୋତା ଜନୁଷ୍ୟ ପୁରୋହିତଃ - ହେ ଅଗ୍ନି, ତୁମେ ଅଧ୍ୱର୍ଯ୍ୟୁ, ତୁମେ ମୁଖ୍ୟ ହୋତା, ତୁମେ ପ୍ରଶାସ୍ତା ପୋତା (ଅର୍ଥାତ୍ ହୋତାଙ୍କ ମୁଖ୍ୟ ସହକାରୀ, ଯଜ୍ଞ ଶୋଧନକାରୀ, ତୁମେ ଜନ୍ମରୁହିଁ ପୁରୋହିତ)।" ୯୮ ତମ ସୂକ୍ତର ୨ୟ ଋକ୍‌ରେ ଅଛି - ପୃଷ୍ଟୋ ଦିବି ପୃଷ୍ଟୋ ଅଗ୍ନିଃ ପୃଥିବ୍ୟାଂ ପୃଷ୍ଟୋ ବିଶ୍ୱା ଓଷଧୀରା ବିବେଶ, ଅର୍ଥାତ୍ ଅଗ୍ନି (ସୂର୍ଯ୍ୟ ରୂପରେ) ଆକାଶରେ ଅବସ୍ଥାନ କରୁଅଛନ୍ତି, (ଗାର୍ହପତ୍ୟାଦି ଅଗ୍ନି ରୂପରେ) ପୃଥିବୀରେ ଅବସ୍ଥାନ କରୁଛନ୍ତି ଏବଂ ଶସ୍ୟମାନଙ୍କ ମଧ୍ୟରେ ମଧ ଅବସ୍ଥାନ କରୁଛନ୍ତି ; ସେମାନଙ୍କୁ ପରିପକ୍ୱ କରିବାକୁ ସେମାନଙ୍କ ମଧ୍ୟରେ ପ୍ରବେଶ କରିଅଛନ୍ତି ।

ଋଗ୍‌ବେଦର ବହୁ ସୂକ୍ତରେ ଥିବା ପରି କୁସଙ୍କ କେତେକ ଅଗ୍ନି ସୂକ୍ତରେ ମଧ ଘୋଷାପଦ ରହିଅଛି । ୯୪ତମ ସୂକ୍ତର ୧୬ଟି ଋକ୍‌ମଧ୍ୟରୁ ପ୍ରଥମ ୧୪ଟି ଋକ୍‌ର ଶେଷାଂଶରେ ଘୋଷା ରୂପେ ରହିଛି - ଅଗ୍ନେ ସଖ୍ୟେମା ରିଷାମା ବୟଂ ତବ - ଅର୍ଥାତ୍, ହେ ଅଗ୍ନି, ତୁମେ ଆମର ସଖା ହୋଇ ରହିଲେ ଆମ ପ୍ରତି କେହି ହିଂସାନ୍ୱିତ ହେବେ ନାହିଁ । ୯୬ ତମ ସୂକ୍ତର ୯ଟି ଋକ୍ ମଧ୍ୟରୁ ପ୍ରଥମ ୬ଟି ଋକ୍‌ର ଶେଷାଂଶରେ ରହିଛି -ଦେବା ଅଗ୍ନିଂ ଧାରୟନ୍ଦ୍ରବିଣୋଦାମ୍ - ଦେବତାମାନେ ସେହି ଆଲୋକରୂପକ ଧନଦାନକାରୀ ଅଗ୍ନିଙ୍କୁ (ଦୂତ ରୂପେ) ନିୟୋଜିତ

କରିଛନ୍ତି । ୧୦୬ତମ ସୂକ୍ତ କେବଳ ଅଗ୍ନିଙ୍କପାଇଁ ଉଦ୍ଦିଷ୍ଟ ନୁହେଁ, ସମସ୍ତ ଦେବତାଗଣଙ୍କ ପାଇଁ ଉଦ୍ଦିଷ୍ଟ । ସେଥିରେ ମଧ୍ୟ ୭ମ ଋକ୍ ଛାଡି ବାକି ପ୍ରତ୍ୟେକ ଋକ୍‌ର ଦ୍ୱିତୀୟ ଧାଡିଟି ସମାନ - ରଥଂ ନ ଦୁର୍ଗାଦ୍ୱସବଃ ସୁଦାନବୋ ବିଶ୍ୱସ୍ମାନ୍ନୋ ଅହଂସୋ ନିଷ୍ପିପର୍ତନ, ଅର୍ଥାତ୍ ଲୋକମାନେ ଯେପରି ଦୁରୂହ ପଥରୁ ରଥକୁ ଉଦ୍ଧାର କରି ଆଣନ୍ତି, ସେହିପରି ଦାନୀ ଓ ନିବାସସଦନ-ପ୍ରଦାତା ଦେବତାଗଣ ଆମକୁ ସମସ୍ତ ପାପରୁ ଉଦ୍ଧାର କରି ପରିପାଳନ କରନ୍ତୁ । ୧୦୮ତମ ସୂକ୍ତଟି ଇନ୍ଦ୍ର ଓ ଅଗ୍ନି ଉଭୟଙ୍କ ପ୍ରତି ଉଦ୍ଦିଷ୍ଟ । ସେଥିର ୧୩ଟି ଋକ୍ ମଧ୍ୟରୁ ୭ମରୁ ୧୨ଶ ପର୍ଯ୍ୟନ୍ତ ପ୍ରତ୍ୟେକ ଋକ୍‌ର ଦ୍ୱିତୀୟ ଧାଡି ସମାନ - ଅତଃ ପରି ବୃଷଣାବା ହି ଯାତମଥା ସୋମସ୍ୟ ପିବତଂ ସୁତସ୍ୟ, ଅର୍ଥାତ୍ ତେବେ ହେ ଅଭିଷ୍ଟଦାନୀ ଦେବତାଯୁଗଳ, ସେହି ସମସ୍ତ ସ୍ଥାନରୁ ଆସ, ଏହି ଅଭିଷୁତ ସୋମ ପାନ କର । ୧୧୨ ତମ ସୂକ୍ତଟି ଅଶ୍ୱିଦ୍ୱୟଙ୍କ ପ୍ରତି ଉଦ୍ଦିଷ୍ଟ । ସେଥିର ୨୫ଟି ଋକ୍ ମଧ୍ୟରୁ ୨୩ଟି ଋକ୍‌ର ଶେଷକୁ ଅଛି ... ତାଭିରୁ ଯୁ ଊତିଭିରଶ୍ୱିନା ଗତମ୍ । ଅର୍ଥାତ୍ ... ହେ ଅଶ୍ୱିଗଣ, ତୁମେ ସେହି ସବୁ ଉପାୟ ସଙ୍ଗରେ ଆସ ।

କୁସଙ୍କ ରଚିତ (ପ୍ରଥମ ମଣ୍ଡଳର) ୧୧୪ତମ ସୂକ୍ତଟି ରୁଦ୍ରଙ୍କ ପ୍ରତି ଉଦ୍ଦିଷ୍ଟ । ଶୁନଃଶେପ ଋଷି ପ୍ରଥମ ମଣ୍ଡଳର ୨୭ ତମ ସୂକ୍ତର ୧୦ମ ଋକ୍‌ରେ ଅଗ୍ନିଙ୍କୁ ରୁଦ୍ରରୂପେ ଅଭିହିତ କରିଅଛନ୍ତି । ଯାସ୍କ ନିରୁକ୍ତରେ କହିଛନ୍ତି "ଅଗ୍ନିରପି ରୁଦ୍ର ଉଚ୍ୟତେ"। ସାୟଣ ମଧ୍ୟ ଅନୁରୂପ ମତ ବ୍ୟକ୍ତ କରିଛନ୍ତି - "ରୁଦ୍ରାୟ କ୍ରୁରାୟ ଅଗ୍ନୟେ ।" ତେଣୁ କୁସଙ୍କ ରୁଦ୍ର ସ୍ତୁତି ପ୍ରକାରାନ୍ତରେ ଅଗ୍ନି ସ୍ତୁତି କହିବାକୁ ହେବ । ୧୧୫ ତମ ସୂକ୍ତଟି କୁସଙ୍କର ସୂର୍ଯ୍ୟଙ୍କ ପାଇଁ ଉଦ୍ଦିଷ୍ଟ ସୂକ୍ତ । ୯୮ ତମ ସୂକ୍ତରେ କୁସ ଅଗ୍ନି ଆକାଶରେ ସୂର୍ଯ୍ୟ ରୂପେ ଅବସ୍ଥାନ କରନ୍ତି ବୋଲି କହିଛନ୍ତି । ସୂର୍ଯ୍ୟ ସୂକ୍ତରେ କୁସଙ୍କର ଏକ ଅତ୍ୟନ୍ତ ପ୍ରସିଦ୍ଧ ଋକ୍ ଲକ୍ଷିତ ହୁଏ -

ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରା ଦ୍ୟାବାପୃଥିବୀ ଅନ୍ତରୀକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ।।

ଅର୍ଥାତ୍ ବିଚିତ୍ର ତେଜରାଶିବିଶିଷ୍ଟ, ମିତ୍ର, ବରୁଣ ଓ ଅଗ୍ନି ଦେବତାଙ୍କର ଚକ୍ଷୁସ୍ୱରୂପ ସୂର୍ଯ୍ୟ ଉଦୟ ହୋଇଅଛନ୍ତି, ସ୍ୱକୀୟ ପ୍ରଭାରେ ଦ୍ୟାବା, ପୃଥିବୀ ଓ ଅନ୍ତରୀକ୍ଷ ପରିପୂର୍ଣ୍ଣ କରି ଦେଇଅଛନ୍ତି । ସୂର୍ଯ୍ୟ ସ୍ଥାବର, ଜଙ୍ଗମ ସମସ୍ତଙ୍କର ଆତ୍ମା ।

କୁସଙ୍କ ରଚିତ (ପ୍ରଥମ ମଣ୍ଡଳର) ୧୧୩ତମ ସୂକ୍ତଟି ଉଷାଙ୍କ ପ୍ରତି ଉଦ୍ଦିଷ୍ଟ । ଉଷାଙ୍କ ଆବିର୍ଭାବ ପରେ ସୂର୍ଯ୍ୟ ଉଦୟ ହୁଅନ୍ତି । ତେଣୁ କୁସ ଦୀପ୍ତିମୟୀ ଶୁଭ୍ରା ଉଷାଙ୍କୁ ସୂର୍ଯ୍ୟଙ୍କର ମାତା ବୋଲି ଅଭିହିତ କରିଅଛନ୍ତି (୨ୟ ଋକ୍‌ରେ), ୯ମ ଋକ୍‌ରେ ଉଷା ଅଗ୍ନି ପ୍ରଜ୍ୱଳିତ କରିଛନ୍ତି, ସୂର୍ଯ୍ୟଙ୍କ କିରଣରେ ପୃଥିବୀ ଆଲୋକିତ କରିଛନ୍ତି ବୋଲି ବର୍ଣ୍ଣନା କରିଛନ୍ତି ।

ଏହିପରି ଅଙ୍ଗିରା ପୁତ୍ର, ଅଗ୍ନିପୁତ୍ର କୁସରଷି କେବଳ ଅଗ୍ନିଙ୍କର ସ୍ତୁତି କରିନାହାନ୍ତି, ଅଗ୍ନି ସ୍ୱରୂପ ସୂର୍ଯ୍ୟଙ୍କୁ, ଅଗ୍ନିଙ୍କ ଜନନୀତୁଲ୍ୟା ଉଷାଙ୍କୁ, ଓ ଅଗ୍ନିଙ୍କ ରୂପବିଶେଷ ରୁଦ୍ରଙ୍କୁ ସ୍ତୁତି କରିଛନ୍ତି ।

ପ୍ରଥମ ମଣ୍ଡଳର କୁସରଚିତ ଅଗ୍ନିସୂକ୍ତମାନଙ୍କ ମଧ୍ୟରେ ୯୭ ତମ ସୂକ୍ତଟି ଅପେକ୍ଷାକୃତ କ୍ଷୁଦ୍ର ହେଲେ ମଧ୍ୟ ପ୍ରଭାବଶାଳୀ ।

ବ୍ୟାକୁଳ ହୋଇ କୁସ ମୁନି ପ୍ରାର୍ଥନା କରିଛନ୍ତି -

ହେ ଅଗ୍ନି, ଦୂର କରିଦିଅ, ଜାଳି ପୋଡିଦିଅ ଆମର ସମସ୍ତ ପାପ । ଦାଉ ଦାଉ ହୋଇ ଜଳି ଉଠ, ପ୍ରକାଶ କର ଆମର ଧନକୁ (ଅର୍ଥାତ୍ ଆମର ଧନର ଅଭିବୃଦ୍ଧି କର) । ଦୂର କରି ଦିଅ, ଜାଳି ପୋଡିଦିଅ ଆମର ସମସ୍ତ ପାପ (ଅପନଃ ଶୋଶୁଚଦଘମ୍)

(ଧନର ବିକଳ୍ପ ଅର୍ଥ କରାହୋଇଅଛି-ସୃଷ୍ଟିର ଆକାଂକ୍ଷା – ସୃଷ୍ଟିର ଆକାଂକ୍ଷା ସ୍ୱରୂପ ଆଲୋକ ଆମ ମଧରେ ଜାଗରିତ ହେଉ)

ପ୍ରତ୍ୟେକ ଋକ୍‌ର ଶେଷରେ ରହିଛି ପାପ ନଷ୍ଟ କରି ଦେବା ପାଇଁ ଆକୁଳ ପ୍ରାର୍ଥନା-ଅପନଃ ଶୋଶୁଚଦଘମ୍ । ସେହି ପଦରେ ଆରମ୍ଭ ହୋଇଛି ସ୍ତୋତ୍ରଟି ।

ଦ୍ୱିତୀୟ ଋକ୍‌ରେ କୁସ ଋଷି ପ୍ରାର୍ଥନା କରି କହିଛନ୍ତି - ସୁରମ୍ୟ କ୍ଷେତ୍ର ପାଇଁ, ସୁନ୍ଦର-ଗାନ ମୁଖରିତ ମାର୍ଗ ପାଇଁ, ଧନ ପାଇଁ ଆମେ ତୁମର ଯଜନ କରୁ, ତୁମକୁ ଅର୍ଚ୍ଚନା କରୁ । ଦୂର କରି ଦିଅ, ଜାଳି ପୋଡି ଦିଅ ଆମର ସମସ୍ତ ପାପ । ( କ୍ଷେତ୍ରର ବିକଳ୍ପ ଅର୍ଥ କେତେକ ପ୍ରକାରେ କରାଯାଇଅଛି, ଯଥା : ଐଶ୍ୱର୍ଯ୍ୟ ବା ନିବାସ ବା ପ୍ରତିଷ୍ଠା, 'ଗାନ ମୁଖ.ରିତ ପଥ' ଦ୍ୱାରା ଋଷି କହୁଛନ୍ତି ଯେ ସ୍ତୋତାଗଣ ଅଗ୍ନିଙ୍କର ସ୍ତୁତି ଗାଇ ଗାଇ ପଥରେ ଯିବାକୁ ଚାହାନ୍ତି ।)

ପୁଣି ନିବେଦନ କରୁଛନ୍ତି କୁସ - ତୁମର ବନ୍ଦନାକାରୀ ସ୍ତୋତାଗଣଙ୍କ ମଧରେ ଆମକୁ ସର୍ବତୋଭାବେ ଶ୍ରେଷ୍ଠକର ।(ବନ୍ଦନା ଗାଇ ଗାଇ ଆମେ ଏପରି ଉଜ୍ଜ୍ୱଳ ହେଉ, ଯେପରି ଆଉ କେହି କେବେ ହୋଇନାହାନ୍ତି) । ଆମର ଆପଣା ସ୍ତୋତାଗଣ (ସୂରୟଃ - ବିକଳ୍ପ ଅର୍ଥ ସୂର୍ଯ୍ୟତୁଲ୍ୟ କବିଗଣ) ସମୁଜ୍ଜ୍ୱଳ ହୁଅନ୍ତୁ ଅର୍ଥାତ୍ ସୁପ୍ରତିଷ୍ଠିତ ହୁଅନ୍ତୁ । ଦୂର କରିଦିଅ, ଜାଳି ପୋଡି ଦିଅ ଆମର ସମସ୍ତ ପାପ ।

ଭବିଷ୍ୟତ୍‌ରେ ମଧ ଅଗ୍ନିଙ୍କ କୃପାରୁ ସ୍ତୋତାରୂପେ ଉତ୍ତରୋତ୍ତର ଉନ୍ନତି କାମନା କରି ଋଷି ପ୍ରାର୍ଥନା କରିଛନ୍ତି - ହେ ଅଗ୍ନି, ଆମ୍ଭେମାନେ ଯେପରି ତୁମର ସୂର୍ଯ୍ୟ ତୁଲ୍ୟ ସମୁଜ୍ଜ୍ୱଳ କବି ହୋଇ ଜନ୍ମ ପାଇପାରୁ (ଅର୍ଥାତ୍ ଜନ୍ମଜନ୍ମାନ୍ତରରେ ତୁମର ଉତ୍ତରୋତ୍ତରପ୍ରତିଭାସମୁଜ୍ଜ୍ୱଳ ସୂର୍ଯ୍ୟ ତୁଲ୍ୟ କବିରୂପେ ଜନ୍ମ ଲାଭ କରୁ) । ଦୂର କରିଦିଅ, ଜାଳି ପୋଡିଦିଅ ଆମର ସମସ୍ତ ପାପ ।

(ଏହି ୪ର୍ଥ ଋକ୍‌ର ଆଉ ଗୋଟିଏ ଅର୍ଥ କରାହୋଇଅଛି - ହେ ଅଗ୍ନି, ତୁମର ସ୍ତୋତାଗଣ ପୁତ୍ରପୌତ୍ରାଦି ଲାଭ କରନ୍ତି, ତେଣୁ ଆମେ ମଧ ତୁମର ସ୍ତୋତା ହୋଇଥିବାରୁ ପୁତ୍ରପୌତ୍ରାଦି ଲାଭ କରିବା । ଦୂର କରିଦିଅ, ଜାଳିପୋଡ଼ିଦିଅ ଆମର ସମସ୍ତ ପାପ)

ଯେହେତୁ ବଳବାନ୍ ଅଗ୍ନିଙ୍କର ବିଜୟୀ ପ୍ରଭାଗଣ ସର୍ବତ୍ର ଅଗ୍ରସର ହୋଇ ବିଚ୍ଛୁରିତ ହୋଇଯାଉଛନ୍ତି, ତେଣୁ ଦୂର ହୋଇଯାଉ, ଜଳି ପୋଡ଼ିଯାଉ ଆମର ସମସ୍ତ ପାପ ।

ବିଶ୍ୱତୋମୁଖ ଅଗ୍ନିଙ୍କୁ ପୁଣି କବି ପ୍ରାର୍ଥନା କରିଛନ୍ତି - ହେ ଅଗ୍ନି, ତୁମେ ବିଶ୍ୱତୋମୁଖ (ତୁମର ଶିଖାରୂପକ ମୁଖ ସର୍ବତ୍ର ବିଦ୍ୟମାନ) । ସମସ୍ତ ଦିଗରୁ ତୁମେ ପରିବେଷ୍ଟନ କରି ରହିଛ । ଆମର ରକ୍ଷାକର୍ତ୍ତା ତୁମେ । ଦୂର କରିଦିଅ, ଜାଳି ପୋଡ଼ି ଦିଅ ଆମର ସମସ୍ତ ପାପ ।

ହେ ବିଶ୍ୱତୋମୁଖ ଅଗ୍ନି - ସର୍ବଦିଗବ୍ୟାପୀ ଅଗ୍ନି । ନୌକାପରି ସମସ୍ତ ଦ୍ୱେଷ ଓ ଦ୍ୱେଷକାରୀଙ୍କ ଠାରୁ ଆମକୁ ପାର କରି ନେଇଯାଅ । ଦୂର କରିଦିଅ, ଜାଳି ପୋଡ଼ି ଦିଅ ଆମର ସମସ୍ତ ପାପ ।

ନୌକାରେ ଯେପରି ନଦୀ ପାର କରାଯାଏ, ସେହିପରି ତୁମେ ଆମକୁ (ଶତ୍ରୁଙ୍କ ଠାରୁ) ପାର କରି ନେଇଯାଅ । ଆମେ ଯେପରି ସ୍ୱସ୍ତି ଲାଭ କରୁ । ଦୂର କରିଦିଅ, ଜାଳି ପୋଡ଼ି ଦିଅ ଆମର ସମସ୍ତ ପାପ ।

ଏହିପରି ଅଙ୍ଗିରା ପୁତ୍ର, ଅଗ୍ନିପୁତ୍ର, ବଜ୍ରବାଣୀ ସୂରୀକବି କୁତ୍ସ ଋଷି ପ୍ରାର୍ଥନା କରିଛନ୍ତି ଜାତବେଦା (ଯେ ସୃଷ୍ଟିର ସମସ୍ତଙ୍କୁ ଜାଣନ୍ତି) ଦ୍ରାବିଣୋଦା (ଯେ ହବ୍ୟ ପ୍ରଦାତା, ଯଜ୍ଞକର୍ତ୍ତା ସମସ୍ତଙ୍କର ଆପଣାର), "ହୋତା କବିକ୍ରତୁଃ ସତ୍ୟଶ୍ଚିତ୍ର ଶ୍ରବସ୍ତମଃ (ଋଷି ମଧୁଚ୍ଛନ୍ଦାଙ୍କ ଭାଷାରେ - ଦେବଗଣଙ୍କର ଆବାହନକାରୀ, ପ୍ରଜ୍ଞାବାନ୍ କର୍ମକୁଶଳ ସତ୍ୟଶୀଳ, ବହୁବିଧ-କୀର୍ତ୍ତି-ସମନ୍ୱିତ) ଅଗ୍ନିଙ୍କୁ ଧନ ପାଇଁ, ପ୍ରଜ୍ଞାଲୋକ ରୂପକ ଧନ ପାଇଁ, ସୃଜନୀ- ଶକ୍ତି ରୂପକ ଧନ ପାଇଁ, କବି ରୂପେ ଅଗ୍ନିସ୍ତୁତିରଚୟିତା ରୂପେ ପ୍ରତିଷ୍ଠା ପାଇଁ । ସତ୍ୟାଲୋକର ତୀର୍ଥକୁ ଯାତ୍ରା କରୁଛନ୍ତି ସେ, ପ୍ରାର୍ଥନା କରୁଛନ୍ତି ତାଙ୍କର ସେହି ତୀର୍ଥଯାତ୍ରାର ମାର୍ଗ ସୁଗମ,ସୁନ୍ଦର କରିଦିଅନ୍ତୁ ଅଗ୍ନି - ପ୍ରେରଣା ଦିଅନ୍ତୁ ତାଙ୍କୁ ବଜ୍ର ଗମ୍ଭୀର କିନ୍ତୁ ସୁନ୍ଦର ସ୍ତୋତ୍ର ରଚନା କରିବାକୁ, ଗାନ କରିବାକୁ - ଗାନରେ ମୁଖରିତ କରିବାକୁ ତାଙ୍କର ଯାତ୍ରାପଥ, ଯେଉଁ ଗାନର ଧ୍ୱନି ବି ଶତ୍ରୁଙ୍କୁ ଧ୍ୱଂସ କରିଦିଏ । ପ୍ରାର୍ଥନା କରିଛନ୍ତି ସେ କେବଳ ବର୍ତ୍ତମାନ୍ ଏ ଜୀବନରେ ଅଗ୍ନିବନ୍ଦନାକାରୀଙ୍କ ମଧ୍ୟରେ ତାଙ୍କୁ ଶ୍ରେଷ୍ଠ କରିବାକୁ ନୁହେଁ - ଜନ୍ମଜନ୍ମାନ୍ତରରେ ମଧ ଅଧିକରୁ ଅଧିକ ଉଚ୍ଚକୋଟୀର ସ୍ତୁତି, ଗାନ ରଚନା କରିବାକୁ ସକ୍ଷମ କରିବାକୁ - ସୂରୀ କରିବାକୁ, ସୂର୍ଯ୍ୟଙ୍କ ତୁଲ୍ୟ ସମୁଜ୍ଜ୍ୱଳ କବି କରିବାକୁ । ବୃହସ୍ପତି ମଧ ଅଙ୍ଗିରସ । ତେଣୁ କୁତ୍ସ ବୃହସ୍ପତିଙ୍କ ଦାୟାଦ ମଧ । ବାଣୀର, ସଙ୍ଗୀତର, ମଧୁର ସ୍ତୁତିର ମୂଳଉତ୍ସ ବୃହସ୍ପତି ।

କ୍ରାନ୍ତଦର୍ଶୀ, ବଜ୍ରବାଣୀ କବି କୁସ ଅଗ୍ନିଙ୍କୁ ପ୍ରାର୍ଥନା କରିଛନ୍ତି, ସ୍ତୋମରଚନାକାରୀ ଗାନକାରୀ ରୂପେ ପ୍ରତିଷ୍ଠା, ଉତ୍ତରୋତ୍ତର ଅଭିବୃଦ୍ଧି ପାଇଁ; ଅନୁଭବ କରୁଛନ୍ତି ଭକ୍ତ କୁସ ଅଗ୍ନିଙ୍କ ସହିତ ଏକାତ୍ମତା । ଅଗ୍ନିଙ୍କର ସର୍ବବ୍ୟାପୀ କିରଣଜାଲ ତାଙ୍କର ସମସ୍ତ ପାପକୁ ଦହନ କରିଦିଅନ୍ତୁ । ବିଶ୍ୱତୋମୁଖ ଅଗ୍ନି ତାଙ୍କୁ ପରିବେଷ୍ଟିତ କରିଛନ୍ତି । ସେ ତାଙ୍କୁ ରକ୍ଷା କରନ୍ତୁ ବୋଲି ପ୍ରାର୍ଥନା କରିଛନ୍ତି କୁସ । ପୁଣି ପ୍ରାର୍ଥନା କରିଛନ୍ତି, ଶତ୍ରୁସଙ୍କୁଳ ଭବସାଗରରେ ନୌକା ରୂପେ ଅଗ୍ନି ତାଙ୍କୁ ପାର କରିଦିଅନ୍ତୁ ସମସ୍ତ ହିଂସାରୁ, ଦ୍ୱେଷରୁ, ସମସ୍ତ ଶତ୍ରୁଙ୍କ ଠାରୁ - ପାର କରି ନେଇଯାଆନ୍ତୁ ସ୍ୱସ୍ତିକୁ - ଶାନ୍ତିକୁ, ସୌଭାଗ୍ୟକୁ, ସଫଳତାକୁ ।

ଋଗ୍‌ବେଦର ବହୁ ସୂକ୍ତରେ ସ୍ତୋତାଙ୍କର ପାପ ବୋଧ ଓ ସେହି ପାପରୁ ମୁକ୍ତ କରିଦେବା ପାଇଁ ଦେବତାଙ୍କୁ ଆକୁଳ ପ୍ରାର୍ଥନା ପ୍ରକାଶ ପାଇଅଛି । କୁସଙ୍କର ଅଗ୍ନିସୂକ୍ତମାନଙ୍କ ମଧ୍ୟରୁ ଏହି ସୂକ୍ତରେ ସେହି ପ୍ରାର୍ଥନା ସର୍ବାଧିକ ପ୍ରାଧାନ୍ୟ ପାଇଅଛି । ସୂକ୍ତର ପ୍ରାରମ୍ଭରେ ଓ ଘୋଷାରୂପେ ପ୍ରତ୍ୟେକ ଋକ୍‌ର ଶେଷରେ ରହିଛି ସେହି ପ୍ରାର୍ଥନା ପାବନ ଅଗ୍ନିଙ୍କୁ "ଅପ ନଃ ଶୋଶୁଚଦଘମ୍ - ଦୂର କରିଦିଅ, ଜାଳି ପୋଡି ଦିଅ ଆମର ସମସ୍ତ ପାପ ।"

******

# ଋଗ୍‌ବେଦରେ ଶ୍ୟେନଚିତ୍ର

ଋଗ୍‌ବେଦରେ ବହୁ ପକ୍ଷୀଙ୍କର ଚିତ୍ର ମିଳେ । ସେ ସମସ୍ତ ଚିତ୍ରମାନଙ୍କ ମଧ୍ୟରେ ଶ୍ୟେନପକ୍ଷୀର ଚିତ୍ର ସର୍ବାଧିକ ସଂଖ୍ୟକ । କେତେ କେତେ ବେଳେ କେବଳ ପକ୍ଷୀରୂପେ, କେତେବେଳେ ବା ଚିତ୍ରକଳ୍ପରୂପେ, ବହୁସ୍ଥଳରେ ଉପମାନ ବା ଉପମେୟ ରୂପେ ଶ୍ୟେନର ଉଲ୍ଲେଖ ପରିଦୃଷ୍ଟ ହୁଏ । ବିଶେଷତଃ ସୋମଙ୍କ ପ୍ରତି ଉଦ୍ଦିଷ୍ଟ ସ୍ତୁତିସମନ୍ୱିତ ନବମ ମଣ୍ଡଳରେ ସର୍ବାଧିକ ସ୍ଥଳରେ ଶ୍ୟେନର ଚିତ୍ର ଲକ୍ଷିତ ହୁଏ । ଶ୍ୟେନ, ଶ୍ୱାନ ଓ ଶୃଗାଳ ସାଧାରଣଙ୍କ ଅନିଷ୍ଟକର ବା ଅମଙ୍ଗଳସୂଚକ ବୋଲି ପରିଗଣିତ ହୋଇଥାଆନ୍ତି । କିନ୍ତୁ ଋଗ୍‌ବେଦରେ ଶ୍ୟେନକୁ ସମୁଚ୍ଚ ସ୍ଥାନ ପ୍ରଦତ୍ତ ହୋଇଅଛି ।

ପ୍ରଥମ ମଣ୍ଡଳର ୧୧୮ତମ ସୂକ୍ତର ପ୍ରାରମ୍ଭରେ ଶ୍ୟେନ ପକ୍ଷୀର ଉଲ୍ଲେଖ ଅଛି । ପ୍ରଥମ ଋକ୍‌ରେ ଦୀର୍ଘତମାଙ୍କ ପୁତ୍ର କକ୍ଷୀବାନ୍ ଋଷି ସ୍ୱର୍ଗୀୟରଥବାହୀ ଅଶ୍ୱିଯୁଗଳଙ୍କୁ ପ୍ରାର୍ଥନା କରୁଅଛନ୍ତି, ''ହେ ଅଶ୍ୱିଦ୍ୱୟ, ତୁମ୍ଭମାନଙ୍କର ଶ୍ୟେନତୁଲ୍ୟ ଦ୍ରୁତଗାମୀ, ପ୍ରୀତିକର ଓ ସୁସମୃଦ୍ଧ ରଥ ଆମ ନିକଟକୁ ଆସୁ ।'' ପୁଣି ସେହି ସୂକ୍ତର ଶେଷ ଋକ୍ (ଏକାଦଶ ଋକ୍)ରେ ଋଷି ପୁନରାୟ ପ୍ରାର୍ଥନା କରିଛନ୍ତି, ''ହେ ନାସତ୍ୟ ଦ୍ୱୟ, ସମପ୍ରୀତିଭାବାପନ୍ନ ହୋଇ ଶ୍ୟେନ ପକ୍ଷୀର ନୂତନ ବେଗରେ ଆମ୍ଭମାନଙ୍କ ନିକଟକୁ ଆସ ।''

ଶ୍ୟେନପକ୍ଷୀ ଦ୍ୟୁଲୋକରୁ ସୋମ ଆହରଣ କରି ଆଣେ । ପ୍ରଥମ ମଣ୍ଡଳର ୮୦ ତମ ସୂକ୍ତର ଦ୍ୱିତୀୟ ଋକ୍‌ରେ ଋଷି ଗୌତମ ଇନ୍ଦ୍ରଙ୍କୁ ସମ୍ବୋଧନ କରି କହୁଅଛନ୍ତି, ''ହେ ଇନ୍ଦ୍ର, ସିଞ୍ଚନଶୀଳ, ଆହ୍ଲାଦଜନକ, ଶ୍ୟେନପକ୍ଷୀଦ୍ୱାରା ଆହୃତ, ନିଷ୍ପୀଡ଼ିତ ସୋମରସ ତୁମକୁ ଉଲ୍ଲସିତ କରିଅଛି ।''

ସେହି ମଣ୍ଡଳର ୯୩ ତମ ସୂକ୍ତର ଷଷ୍ଠ ଋକ୍‌ରେ ଋଷି ଗୌତମ ଅଗ୍ନି ଓ ସୋମଙ୍କୁ କହୁଅଛନ୍ତି, ''ହେ ଅଗ୍ନି ଓ ସୋମ, ତୁମ ଦୁହିଁଙ୍କ ମଧ୍ୟରୁ ଜଣଙ୍କୁ (ଅର୍ଥାତ୍ ଅଗ୍ନିଙ୍କୁ) ମାତରିଶ୍ୱା ଆକାଶରୁ ଆଣି ଅଛନ୍ତି, ଆଉ ଜଣଙ୍କୁ (ଅର୍ଥାତ୍ ସୋମଙ୍କୁ) ଅଦ୍ରିର ଉପରୁ ବା ପର୍ବତ ଉପରୁ ଶ୍ୟେନପକ୍ଷୀ ବଳପ୍ରୟୋଗ ପୂର୍ବକ ଆହରଣ କରିଥିଲା ।'' ୧୦ମ ମଣ୍ଡଳରେ ଏହି ପର୍ବତର ନାମ ମୂଜବତ୍ ବୋଲି ଉଲ୍ଲେଖ ଅଛି ।

ପୁନଶ୍ଚ ସେହି ପ୍ରଥମ ମଣ୍ଡଳର ୧୬୫ତମ ସୂକ୍ତର ପ୍ରଥମ ଦୁଇ ଋକ୍‌ରେ ଶ୍ୟେନ ପକ୍ଷୀର ଅବତାରଣା କରାଯାଇଅଛି । ଅଗସ୍ତ୍ୟ ଋଷି ମରୁଦ୍‌ଗଣଙ୍କର ବର୍ଣ୍ଣନା କରି ପ୍ରଶ୍ନ କରୁଛନ୍ତି, ''ଏମାନେ କଣ ଭାବି ଧନଲାଭ କାମନା କରି ଶ୍ୟେନ ପକ୍ଷୀର ବଳର ଅର୍ଚ୍ଚନା କରୁଅଛନ୍ତି ?'' ଦ୍ୱିତୀୟ ଋକ୍‌ରେ ମରୁଦ୍‌ଗଣଙ୍କୁ ବର୍ଣ୍ଣନା କରି ଋଷି କହିଅଛନ୍ତି, ''ସେମାନେ ଅନ୍ତରୀକ୍ଷଚାରୀ ଶ୍ୟେନପକ୍ଷୀ ତୁଲ୍ୟ ।''

ଦ୍ୱିତୀୟ ମଣ୍ଡଳର ୪୨ତମ ସୂକ୍ତରେ ଶ୍ୟେନର ହିଂସ୍ର ଶକ୍ତିମତ୍ତାର ପରିଚୟ ମିଳେ । ଗୃତ୍ସମଦ ଋଷି ଦ୍ୱିତୀୟ ଋକ୍‌ରେ ଶକୁନିପକ୍ଷୀକୁ ସମ୍ବୋଧନ କରି କହୁଅଛନ୍ତି, " ହେ ଶକୁନି, ତୁମକୁ ଯେପରି ଶ୍ୟେନ ପକ୍ଷୀ ବଧ ନ କରେ, ସୁପର୍ଣ୍ଣ ପକ୍ଷୀ ବଧ ନ କରେ.....।" ସାଧାରଣତଃ ଶକୁନିର ଶବ୍ଦ ଅମଙ୍ଗଳସୂଚକ ବୋଲି ବିଚାର କରାଯାଇଥାଏ । କିନ୍ତୁ ଏହି ସୂକ୍ତରେ ଋଷି ତାକୁ ବାରମ୍ବାର କଲ୍ୟାଣସୂଚକ ଧ୍ୱନି କରିବାକୁ କହୁଛନ୍ତି । ପ୍ରକାରାନ୍ତରେ ଋଷି ଯେପରି ସୂଚାଇ ଦେଉଅଛନ୍ତି ଯେ ଶକୁନି କଲ୍ୟାଣସୂଚକ ଧ୍ୱନି କଲେ ଶ୍ୟେନ ବା ସୁପର୍ଣ୍ଣ ପକ୍ଷୀ ତାକୁ ବଧ କରିବେ ନାହିଁ । ଶ୍ୟେନ ବା ସୁପର୍ଣ୍ଣ ପକ୍ଷୀ ମଙ୍ଗଳକର, ଅମଙ୍ଗଳନାଶକ ବୋଲି ପ୍ରତୀୟମାନ ହେଉଅଛି ।

୩ୟ ମଣ୍ଡଳର ୪୩ତମ ସୂକ୍ତର ସପ୍ତମ ଋକ୍‌ରେ ଋଷି ବିଶ୍ୱାମିତ୍ର ଇନ୍ଦ୍ରଙ୍କୁ ସମ୍ବୋଧନ କରି କହୁଅଛନ୍ତି, "ହେ ଇନ୍ଦ୍ର ! ତୁମେ ସୋମରସ କାମନା କରୁଛ । ତୁମେ ପ୍ରସ୍ତରଦ୍ୱାରା ନିଷ୍ପୀଡିତ ଆତ୍ମତୃପ୍ତିଦାୟକ, ଫଳସେଚକ ସୋମରସ ପାନ କର । ଶ୍ୟେନ ପକ୍ଷୀ ତୁମପାଇଁ ଏହା ସଂଗ୍ରହ କରି ଆଣିଅଛି ।"

୪ର୍ଥ ମଣ୍ଡଳର ୨୬ ତମ ସୂକ୍ତରେ ଋଷି ବାମଦେବ ଶ୍ୟେନପକ୍ଷୀ ସୋମ ଆହରଣ କରିବାର ବର୍ଣ୍ଣନା ଦେଇଅଛନ୍ତି । ୪ର୍ଥ ଋକ୍‌ରେ କହିଛନ୍ତି, "ହେ ମରୁଦ୍‌ଗଣ, ଶ୍ୟେନ ପକ୍ଷୀ ପକ୍ଷୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ସ୍ଥାନ ଲାଭ କରୁ । ଅନ୍ୟାନ୍ୟ ଶ୍ୟେନମାନଙ୍କ ଅପେକ୍ଷା ଦ୍ରୁତଗାମୀ ଶ୍ୟେନ ଅଧିକ ପ୍ରାଧାନ୍ୟ ଲାଭ କରୁ ।" ତାର କାରଣ ମଧ୍ୟ ଦେଇଛନ୍ତି, "ସେ ଚକ୍ରଶୂନ୍ୟ ରଥ ଦ୍ୱାରା ଦେବସେବିତ ସୋମରୂପକ ହବ୍ୟ ମନୁଙ୍କ ପାଇଁ ଆଣିଥିଲା ।" ଶ୍ୟେନପକ୍ଷୀ ପରମଶକ୍ତିମୟ । ୫ମ ଋକ୍‌ରେ ଋଷି କହୁଅଛନ୍ତି, "ଯେତେବେଳେ (ଶ୍ୟେନ) ପକ୍ଷୀ ସେଠାରେ ସମସ୍ତଙ୍କୁ ଭୟଭୀତ କରି (ସୋମ) ନେଇ ଆସିଥିଲା, ସେତେବେଳେ ସେ ସୁବିସ୍ତୃତ ଅନ୍ତରୀକ୍ଷ ପଥରେ ମନ ପରି ଦ୍ରୁତ ବେଗରେ ଉଡିଆସିଥିଲା, ସୋମରୂପକ ମଧୁ ବା ଅମୃତ ସଙ୍ଗରେ ନେଇ ଆସିଥିଲା । (ସେହି କାରଣରୁ) ଶ୍ୟେନ ଏହି ଜଗତରେ ଯଶ ଲାଭ କରିଅଛି । " ୬ଷ୍ଠ ଋକ୍‌ରେ ଋଷି ପୁଣି କହୁ ଅଛନ୍ତି, "ସରଳ ରେଖାପରି ଗତି କରି ଶ୍ୟେନପକ୍ଷୀ ବହୁଦୂରରୁ ଆଣିଥିଲା ସୋମକୁ । ଦେବତାମାନଙ୍କ ତୁଲ୍ୟ ପ୍ରାର୍ଥନାଯୋଗ୍ୟ ବା ପୂଜ୍ୟ ମଦମତ୍ତକାରୀ ସୋମକୁ ଏହି ଶ୍ୟେନ ପକ୍ଷୀ ସମୁନ୍ନତ ଦ୍ୟୁଲୋକରୁ ଆହରଣ କରି ଦୃଢଭାବରେ ଧାରଣ କରି ଆଣିଥିଲା ।" ଶେଷ (୭ମ) ଋକ୍‌ରେ ଋଷି ଆହୁରି ଶ୍ୟେନକୁ ପ୍ରଶଂସା କରିଛନ୍ତି - "ଶ୍ୟେନ ସହସ୍ର ସହସ୍ର, ଅୟୁତ ଅୟୁତ ଯଜ୍ଞ ପାଇଁ ସୋମକୁ ଆହରଣ କରି ଆଣିଥିଲା । ସୋମ ଅଣାହେଲାରୁ ବିବିଧକର୍ମକର୍ତ୍ତା ପ୍ରଜ୍ଞାଶୀଳ ଇନ୍ଦ୍ର ତାହା ପାନ କରି ପ୍ରମତ୍ତ ହୋଇ ନିର୍ବୋଧ ଶତ୍ରୁମାନଙ୍କୁ ବଧ କରିଥିଲେ ।"

ଏହି ସୂକ୍ତର ପ୍ରଥମ ତିନୋଟି ଋକ୍‌ରେ ଇନ୍ଦ୍ର ବା ପରମାତ୍ମା ତାଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିଅଛନ୍ତି । କେତେକଙ୍କ ମତରେ ବାମଦେବ ଋଷିହିଁ ମାତୃଗର୍ଭରେ ଥାଇ ସେହି ଋକ୍‌ଗୁଡିକ ଉଚ୍ଚାରଣ କରିଥିଲେ ଯେତେବେଳେ ତାଙ୍କ ମଧ୍ୟରେ ସତ୍ୟର ଜ୍ଞାନ ଉଦ୍ଭୂତ ହେଲା

ଏବଂ ସେ ନିଜକୁ ବିଶ୍ୱସୃଷ୍ଟି ସହିତ ଏକ ବୋଲି ଅନୁଭବ କରିବାକୁ ସମର୍ଥ ହେଲେ, ମନେ କଲେ ପରମାର୍ଥଦୃଷ୍ଟିଦ୍ୱାରା ସେ ସମସ୍ତଙ୍କ ସହିତ ଐକ୍ୟ ଲାଭ କରିଛନ୍ତି ।

ଶେଷ ଚାରୋଟି ଋକ୍‌ରେ ସୂକ୍ତର ଦେବତା ହେଉଛନ୍ତି ଶ୍ୟେନ ପକ୍ଷୀ । ବାମଦେବ ଋଷି ଶ୍ୟେନ ପକ୍ଷୀର ମାହାତ୍ମ୍ୟ ବର୍ଣ୍ଣନା କରିଅଛନ୍ତି । ସାୟଣଙ୍କ ମତରେ ଏହି ସୂକ୍ତରେ ପରବ୍ରହ୍ମ ଅର୍ଥରେ ଶ୍ୟେନ ନାମର ପ୍ରୟୋଗ କରା ହୋଇଅଛି । Wilson ମନେ କରନ୍ତି ଯେ ଏହା ମୂଳ ଅର୍ଥ ନୁହେଁ, ପରବର୍ତ୍ତୀକାଳରେ ଏପରି ଅର୍ଥ କରା ହୋଇଅଛି ।

ପରବର୍ତ୍ତୀ ୨୭ତମ ସୂକ୍ତର ଦେବତା ଶ୍ୟେନ ପକ୍ଷୀ ଅର୍ଥାତ୍ ସମଗ୍ର ସୂକ୍ତଟି ଶ୍ୟେନ ପକ୍ଷୀର ଗୌରବମୂଳକ ରଚନା । Wilson ଙ୍କ ମତରେ ଶ୍ୟେନରୂପୀ ପରବ୍ରହ୍ମହିଁ ଏଥିର ଦେବତା ।

ବାମଦେବ ଋଷି ପ୍ରଥମ ଓ ଦ୍ୱିତୀୟ ଋକ୍‌ରେ ତାଙ୍କର ଅପୂର୍ବ ଜନ୍ମବୃତ୍ତାନ୍ତ ଦେଇଅଛନ୍ତି - "ମୁଁ ମାତୃଗର୍ଭରେ ଥାଇ ହିଁ ଏହି ସମସ୍ତ ଦେବତାଗଣଙ୍କର କ୍ରମାନ୍ୱୟରେ ଜନ୍ମର ବୃତ୍ତାନ୍ତ ଅବଗତ ହୋଇଅଛି । ଲୌହନିର୍ମିତ ଶତ ଶରୀର ମତେ ଆବଦ୍ଧ କରି ରଖିଥିଲା, କିନ୍ତୁ ଶ୍ୟେନପରି ସବେଗରେ ମୁଁ ବର୍ତ୍ତମାନ ତହିଁରୁ ନିର୍ଗତ ହୋଇଅଛି ।" 'ନୀତିମଞ୍ଜରୀ'ରେ ବର୍ଣ୍ଣିତ ହୋଇଅଛି, "ବାମଦେବ ଶ୍ୟେନରୂପଂ ଅସ୍ଥାୟ ଗର୍ଭାଦ୍ ଯୋଗେନ ନିଃସୃତଃ ।" ଅର୍ଥାତ୍ ବାମଦେବ ଶ୍ୟେନରୂପ ଧାରଣ କରି ଯୋଗ ବଳରେ ଗର୍ଭରୁ ନିଃସୃତ ହେଲେ ।

ସେହି ୪ର୍ଥ ମଣ୍ଡଳର ଏକ ପୂର୍ବବର୍ତ୍ତୀ ସୂକ୍ତରେ (୧୮ଶ ସୂକ୍ତରେ) ଇନ୍ଦ୍ର, ବାମଦେବ ଓ ଅଦିତିଙ୍କର ଏକ କଥୋପକଥନ ପ୍ରଦତ୍ତ ହୋଇଅଛି । ସେଥିରେ ଇନ୍ଦ୍ର ପ୍ରଥମେ ବାମଦେବ ଋଷିଙ୍କୁ ଚିରାଚରିତ ମାର୍ଗରେ ମାତୃଗର୍ଭରୁ ନିଃସୃତ ହେବାକୁ ଏବଂ ତାହା ନ କଲେ ସେ ତାଙ୍କ ମାତାଙ୍କ ମୃତ୍ୟୁର କାରଣ ହେବେ ବୋଲି କହିଛନ୍ତି, କିନ୍ତୁ ବାମଦେବ ଉତ୍ତର ଦେଇଅଛନ୍ତି, "ମୁଁ ଏହି ମାର୍ଗରେ ନିର୍ଗତ ହେବିନାହିଁ କାରଣ ଏହା ଦୁର୍ଗମ ମାର୍ଗ । ମୁଁ (ମାତାଙ୍କ) ପାର୍ଶ୍ୱଦେଶରୁ ବକ୍ର ଭାବରେ ନିର୍ଗତ ହେବି ।" ସାୟଣ ଅନୁରୂପ ଏକ କିମ୍ବଦନ୍ତୀ ଉଦ୍ଧାର କରିଅଛନ୍ତି (ବୁଦ୍ଧ ମଧ୍ୟ ବାମଦେବଙ୍କ ପରି ମାତୃଗର୍ଭରୁ ତାଙ୍କ ମାତାଙ୍କ ପାର୍ଶ୍ୱଦେଶରୁ ନିର୍ଗତ ହୋଇଥିଲେ ବୋଲି କଥିତ ଅଛି) । ଏହାର ଅବଶ୍ୟ ଆଧ୍ୟାତ୍ମିକ ଅର୍ଥ କରାଯାଇଅଛି । ଯେ ପର୍ଯ୍ୟନ୍ତ ଋଷି ବାମଦେବ ଦେହ ଓ ଆତ୍ମାର ପାର୍ଥକ୍ୟ ଉପଲବ୍ଧି କରି ନ ଥିଲେ, ସେ ପର୍ଯ୍ୟନ୍ତ ପୁନଃପୁନଃ ଜନ୍ମଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ଯେତେବେଳେ ଆତ୍ମା ଓ ଶରୀରର ବିଭିନ୍ନତା ସମ୍ପର୍କୀୟ ଦିବ୍ୟଜ୍ଞାନ ଲାଭ କଲେ, ସେତେବେଳେ ଶ୍ୟେନ ତା'ର ନୀଡ଼ରୁ ସବେଗରେ ନିର୍ଗତ ହେଲା ପରି ଜନ୍ମବନ୍ଧନ ଛେଦ କରି ବାହାରି ଆସିଲେ ମୁକ୍ତ ଅବସ୍ଥାକୁ । ଜନ୍ମବନ୍ଧନକୁ ଲୌହମୟ ଗର୍ଭ ଓ ଜନ୍ମଜନ୍ମାନ୍ତରକୁ ଶତଶରୀର ରୂପରେ ବର୍ଣ୍ଣନା କରା ହୋଇଅଛି ।

ଦ୍ୱିତୀୟ ଋକ୍‌ରେ ଋଷି ଘୋଷଣା କରିଛନ୍ତି, ''ସେହି (ଲୌହାବୃତ) ଗର୍ଭ ମତେ ସମ୍ପୂର୍ଣ୍ଣ ରୂପେ (ଲୋକଦୃଷ୍ଟିରୁ) ଅପହରଣ କରି ରଖିପାରିଲା ନାହିଁ । ମୁଁ ତାକୁ ସୁତୀକ୍ଷ୍ଣ ବୀର୍ଯ୍ୟଦ୍ୱାରା (ଶକ୍ତିଶାଳୀ ଦିବ୍ୟଜ୍ଞାନ ଦ୍ୱାରା) ପରାହତ କରିଅଛି । ସୋମ ଶତ୍ରୁଗଣଙ୍କୁ ବଧ କରିଅଛନ୍ତି ଓ ବୃଦ୍ଧିପ୍ରାପ୍ତ ହୋଇ ବାୟୁରାଶିକୁ ମଧ ଅତିକ୍ରମ କରିଅଛନ୍ତି । (ଏଥିର ଆଧାତ୍ମିକ ଅର୍ଥ କରା ହୋଇଅଛି-ସର୍ବଶକ୍ତିର ମୂଳ, ସମସ୍ତଙ୍କର ରକ୍ଷକ, ଦିବ୍ୟଜ୍ଞାନର ଶତ୍ରୁଗଣଙ୍କୁ ତ୍ୟାଗ କଲେ, ପରାହତ କଲେ, ଓ ବୃଦ୍ଧି ପ୍ରାପ୍ତ ହୋଇ ସମସ୍ତ ବାୟୁରାଶି ବା ସାଂସାରିକ ଦୁଃଖରାଶିରୂପକ ବାୟୁମଣ୍ଡଳକୁ ଅତିକ୍ରମ କରିଥିଲେ ।)

ତୃତୀୟ ଓ ଚତୁର୍ଥ ଋକ୍‌ରେ ପୁଣି ଶ୍ୟେନର ଚିତ୍ର ପ୍ରଦତ୍ତ ହୋଇଅଛି । ଯେତେବେଳେ ଶ୍ୟେନ ଦ୍ୟୁଲୋକରୁ ଅବତରଣ କରୁ କରୁ ଉଲ୍ଲାସରେ ରବ କଲା ଏବଂ ସେମାନେ (ସୋମର ରକ୍ଷକଗଣ) ସେ (ଶ୍ୟେନ) ସୋମ ଅପହରଣ କରି ନେଇଯାଉଥିବାର ଲକ୍ଷ୍ୟ କଲେ, ସେତେବେଳେ ଧନୁର୍ଦ୍ଧାରୀ କୃଶାନୁ ମନର ବେଗରେ ତାହାକୁ ଅନୁସରଣ କରି ଓ ଧନୁରେ ଜ୍ୟା ଯୋଜିତ କରି ତାହାକୁ ଲକ୍ଷ୍ୟ କରି ଏକ ଶର ନିକ୍ଷେପ କଲା (୩ୟ ଋକ୍) ।

ଅଶ୍ୱିଗଣ ଯେପରି ଇନ୍ଦ୍ରଙ୍କ ଅଞ୍ଚଳରୁ ଭୁଜ୍ୟୁକୁ ନେଇଯାଇଥିଲେ, ସେହିପରି ଋଜୁଗତି ଶ୍ୟେନ ବିଶାଳ ଦ୍ୟୁଲୋକରୁ ସୋମ ଅପହରଣ କରି ନେଇଥିଲା । ସେତେବେଳେ ସମରରେ ଆହତ ଶ୍ୟେନର ମଧଦେଶରୁ ଗୋଟିଏ ପକ୍ଷ୍ମ ଖସି ଖସି (ଭୂତଳକୁ) ପଡିଯାଇଥିଲା ।

ଏ ଦୁଇଟି ଋକ୍‌ର ବର୍ଣ୍ଣନାରେ ବାସ୍ତବବାଦିତା ଲକ୍ଷ୍ୟ କରିବା କଥା ।

୪ର୍ଥ ମଣ୍ଡଳର ଷଷ୍ଠ ସୂକ୍ତରେ ବାମଦେବ ଋଷି ଅଗ୍ନିଙ୍କୁ ସମ୍ବୋଧନ କରି ୧୦ମ ଋକ୍‌ରେ କହୁଅଛନ୍ତି, ''ହେ ଅଗ୍ନି । ତୁମର ଅଭିଭୂତକାରୀ ଗତିଶୀଳ ପ୍ରଦୀପ୍ତ ଏବଂ ପୂଜ୍ୟ ରଶ୍ମିସମୂହ ମରୁତ୍‌ଗଣଙ୍କ ତୁଲ୍ୟ ଅତ୍ୟନ୍ତ ଶବ୍ଦ କରି ଶ୍ୟେନପକ୍ଷୀ ପରି ଗନ୍ତବ୍ୟ ସ୍ଥାନକୁ ଗମନ କରନ୍ତି ।'' ତେଜୋମୟ, ଦ୍ରୁତଗତିଶୀଳ ଶ୍ୟେନ ପକ୍ଷୀ ଅମୃତ ଆହରଣ କରିବାକୁ ଅନ୍ତରୀକ୍ଷକୁ ଉଡିଯାଉଥିବା ବେଳେ ସେହି ଦୃଶ୍ୟ ସମସ୍ତଙ୍କୁ ଅଭିଭୂତ କରିପକାଏ ବୋଲି ଏତଦ୍ୱାରା ସୂଚିତ ହେଉଅଛି ।

ସେହି ମଣ୍ଡଳର ଅଷ୍ଟାଦଶ ସୂକ୍ତର ତ୍ରୟୋଦଶ (ଶେଷ) ଋକ୍‌ରେ ଇନ୍ଦ୍ରଙ୍କ ପ୍ରତି କୃତଜ୍ଞ ବାମଦେବ ଋଷି କହୁଛନ୍ତି ''ଅନନ୍ତର ଶ୍ୟେନ ଇନ୍ଦ୍ର ମୋ ପାଇଁ ସୁସ୍ୱାଦୁ ଜଳ ସଂଗ୍ରହ କରି ଆଣି ଥିଲେ ।'' ଯେପରି ଶ୍ୟେନ ସୁସ୍ୱାଦୁ ସୋମ ଆହରଣ କରି ଆଣେ, ସେହିପରି ଇନ୍ଦ୍ର ମଧୁର ଜଳ ଆଣିଥିଲେ ବୋଲି ସୂଚିତ ହେଉଛନ୍ତି । ଶ୍ୟେନକୁ ଦେବତା ଆସନ ଦିଆହୋଇଅଛି । ଇନ୍ଦ୍ର ଯେପରି ନିଜେ ଅମୃତଦାୟୀ ଶ୍ୟେନଠାରୁ ଅଭିନ୍ନ ।

ସେହି ମଣ୍ଡଳର ୩୫ତମ ସୂକ୍ତର ୮ମ ଋକ୍‌ରେ ବାମଦେବ ଋଭୁଗଣଙ୍କୁ ସମ୍ବୋଧନ କରି କହିଅଛନ୍ତି "ହେ ବଳଙ୍କ ପୁତ୍ରଗଣ, ତୁମ୍ଭେମାନେ ଶ୍ୟେନ ତୁଲ୍ୟ ଦ୍ୟୁଲୋକରେ ଅବସ୍ଥାନ କରିଅଛ । ତୁମ୍ଭେମାନେ ଧନରତ୍ନ ଦାନ କର । (କଳାକୁଶଳ, ଶିଳ୍ପୀ ଋଭୁଗଣ ବା ବାଜଗଣ ଦ୍ୟୁଲୋକବାସୀ । ସେମାନେ ଇନ୍ଦ୍ରଙ୍କ ଅଶ୍ୱ, ବୃହସ୍ପତିଙ୍କ ଗାଭୀ ଓ ଅଶ୍ୱିଦ୍ୱୟଙ୍କ ରଥ ପ୍ରସ୍ତୁତ କରିଥିଲେ । ଅର୍ଦ୍ଧସ୍ୱର୍ଗୀୟ ଋଭୁଗଣ ଦେବଶିଳ୍ପୀ ତ୍ୱଷ୍ଟାଙ୍କ କୃତ ଚଷକର ଅନୁରୂପ ଏକ ଚଷକ ନିର୍ମାଣ କରିବାକୁ ସକ୍ଷମ ହେବାରୁ ଦେବଗଣଙ୍କ ମଧ୍ୟରେ ସ୍ଥାନ ପାଇଥିଲେ ।)

ପ୍ରସିଦ୍ଧ ହଂସବତୀ ସୂକ୍ତରେ (୪ର୍ଥ ମ, ୪୦ତମ ସୂ, ୩ୟ ଋକ୍) ବାମଦେବ ଋଷି ଦଧିକ୍ରାଙ୍କର ସ୍ତୁତି କରି ତାଙ୍କୁ ଶ୍ୟେନ ସହିତ ତୁଳନା କରିଛନ୍ତି, "....ଶ୍ୟେନ ପକ୍ଷୀ ତୁଲ୍ୟ କ୍ଷିପ୍ରଗତି ଓ ତ୍ରାଣକାରୀ ଦଧିକ୍ରାଙ୍କର ବକ୍ଷଦେଶର ଚତୁର୍ଦ୍ଦିଗରେ ସମସ୍ତେ ଏକତ୍ର ହୋଇ ଗମନ କରନ୍ତି ।" (ଦଧିକ୍ରା ଦିବ୍ୟ ଅଶ୍ୱ, ପ୍ରାତଃକାଳୀନ ସୂର୍ଯ୍ୟଙ୍କର ମୂର୍ତ୍ତିମନ୍ତ ପ୍ରକାଶ; ସାୟଣଙ୍କ ମତରେ ଅଶ୍ୱରୂପଧାରୀ ଅଗ୍ନିଙ୍କର ନାମ ଦଧିକ୍ରା) ।

ଶ୍ୟେନ ପକ୍ଷୀ ଯେ ସର୍ବାପେକ୍ଷା ଦ୍ରୁତଗାମୀ ପକ୍ଷୀ ତାହା ସେହି ଋକ୍‌ର ପ୍ରଥମ ଭାଗ ପଢ଼ିଲେ ଜଣାଯାଏ - "ପକ୍ଷୀମାନେ ଯେପରି (ସେମାନଙ୍କଠାରୁ ଅଧିକ ଦ୍ରୁତଗାମୀ) ପକ୍ଷୀର ଗତି ଅନୁସରଣ କରନ୍ତି, ସେହିପରି ସମସ୍ତେ ଗତିଶୀଳ, କ୍ଷିପ୍ରବେଗଶୀଳ ଓ ଲକ୍ଷ୍ୟରେ ଉପନୀତ ହେବା ପାଇଁ ଆକାଂକ୍ଷୀ ଦଧିକ୍ରାଙ୍କର ଗତିପଥ ଅନୁସରଣ କଲେ ।" ଟୀକାକାର ମାନେ ପ୍ରକାଶ କରିଅଛନ୍ତି ଯେ ଦଧିକ୍ରା ଓ ପରମାତ୍ମା ଅଭିନ୍ନ । ଦଧିକ୍ରାଙ୍କୁ ଶ୍ୟେନପକ୍ଷୀସହ ତୁଳନା କରିବା ଦ୍ୱାରା ଶ୍ୟେନକୁ ପରମାତ୍ମାଙ୍କ ସହିତ ସମସ୍ଥାନ ଦିଆହୋଇଛି ବୋଲି କୁହାଯାଇ ପାରେ, ଯେପରି ୨୬ ଓ ୨୭ତମ ସୂକ୍ତରେ ହୋଇଅଛି ।

୫ମ ମଣ୍ଡଳର ୪୫ତମ ସୂକ୍ତର ୯ମ ଋକ୍‌ରେ ଅତ୍ରିବଂଶୀୟ ଋଷି ସୂର୍ଯ୍ୟଙ୍କୁ ବର୍ଣ୍ଣନା କରି କହିଅଛନ୍ତି, " ସପ୍ତାଶ୍ୱଙ୍କର ଅଧିପତି ସୂର୍ଯ୍ୟ ....ଶ୍ୟେନ ପକ୍ଷୀତୁଲ୍ୟ ଦ୍ରୁତଗାମୀ ହୋଇ (ଯଜ୍ଞରେ) ପ୍ରଦତ୍ତ ହବ୍ୟ ଗ୍ରହଣ କରିବା ପାଇଁ ଅବତରଣ କରୁଅଛନ୍ତି ... ।"

ଏଥିପୂର୍ବରୁ ଉଦ୍ଧୃତ କେତେକ ସୂକ୍ତରେ ଶ୍ୟେନ ଇନ୍ଦ୍ରଙ୍କ ପାଇଁ ସୋମ ଆହରଣ କରି ଆଣିବା ବର୍ଣ୍ଣିତ ହୋଇଅଛି । ଷଷ୍ଠ ମଣ୍ଡଳର ବିଂଶତମ ସୂକ୍ତର ଷଷ୍ଠ ଋକ୍‌ରେ ଅନୁରୂପ ଏକ ବର୍ଣ୍ଣନା ଭରଦ୍ୱାଜ ମୁନି ଦେଇଛନ୍ତି- "ଯେତେବେଳେ ଇନ୍ଦ୍ର ନାନାପ୍ରକାର ଉପଦ୍ରବ ସୃଷ୍ଟି କରୁଥବା ନମୁଚିର ଶିର ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଲେ ଓ ସୟର ପୁତ୍ର ନିଦ୍ରାଗତ ନମୀଙ୍କୁ ରକ୍ଷା କରି ତାଙ୍କୁ ଅଶେଷ ସମ୍ପଦ ଓ ଅନ୍ନ ଦ୍ୱାରା ସୁସମୃଦ୍ଧ କଲେ, ସେତେବେଳେ ଶ୍ୟେନ ପକ୍ଷୀ ଇନ୍ଦ୍ରଙ୍କ ସମୀପକୁ ମାଦକତାସୃଷ୍ଟିକାରୀ ସୋମକୁ ବହନକରି ଆଣିଥିଲା । "

୪ର୍ଥ ମଣ୍ଡଳର ୬ଷ୍ଠ ସୂକ୍ତରେ ଯେପରି ଅଗ୍ନିଙ୍କ ରଶ୍ମିସମୂହଙ୍କୁ କ୍ଷିପ୍ରଗତି ଦୃଷ୍ଟିରୁ ତେଜ ଦୃଷ୍ଟିରୁ ଶ୍ୟେନ ସହିତ ତୁଳନା କରାଯାଇଛି ସେହିପରି ୭ମ ମଣ୍ଡଳର ୧୫ ଶ ସୂକ୍ତର ୪ର୍ଥ ଋକ୍‌ରେ ଅଗ୍ନିଙ୍କୁ ଶ୍ୟେନ ସହିତ ବସିଷ୍ଠ ମୁନି ତୁଳନା କରିଅଛନ୍ତି- "ମୁଁ ଦ୍ୟୁଲୋକର ଶ୍ୟେନତୁଲ୍ୟ ଦ୍ରୁତଗାମୀ ଅଗ୍ନିଙ୍କ ଉଦ୍ଦେଶ୍ୟରେ (ଏକ) ନୂତନ ସ୍ତୋତ୍ର ରଚନା କରୁଛି ।"

୮ମ ମଣ୍ଡଳର ୯୫ତମ ସୂକ୍ତର ୩ୟ ଋକ୍‌ରେ ତିରଶ୍ଚୀ ଋଷି ଇନ୍ଦ୍ରଙ୍କୁ ସ୍ତୁତି କରି କହିଛନ୍ତି, ''ହେ ଇନ୍ଦ୍ର, ଶ୍ୟେନ ଦ୍ୱାରା ଆହରଣ କରାଯାଇଥିବା ନିଷ୍ପୀଡିତ ସୋମ ଆନନ୍ଦ ଲାଭ ପାଇଁ ପ୍ରୀତିପୂର୍ବକ ପାନ କର ।''

ସେହି ମଣ୍ଡଳର ୮୨ ତମ ସୂକ୍ତର ଶେଷରେ କଣ୍ୱପୁତ୍ର କୁସୀଦୀ ଋଷି ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଛନ୍ତି, ''ଶ୍ୟେନ ପକ୍ଷୀ ଅନ୍ତରୀକ୍ଷକୁ ପରାହତ କରି ପାଦଦ୍ୱାରା ଯେଉଁ ସୋମ ସଂଗ୍ରହ କରିଆଣିଥିଲା, ହେ ଇନ୍ଦ୍ର ! ଈଶ୍ୱର ତୁମେ, ତୁମେ ସେହି ସୋମ ପାନ କର ।''

କଣ୍ୱଗୋତ୍ରୀୟ ନୀପାତିଥି ଋଷି ୩୪ ତମ ସୂକ୍ତର ୯ମ ଋକ୍‌ରେ ଇନ୍ଦ୍ରଙ୍କୁ ସମ୍ବୋଧନ କରି କହିଛନ୍ତି, ''ଶ୍ୟେନ ପକ୍ଷୀକୁ ଯେପରି ତାର ପକ୍ଷ ଦୁଇଟି ବହନ କରନ୍ତି ସେହିପରି ମଦଜଳସ୍ରାବୀ ଅଶ୍ୱଦ୍ୱୟ ତୁମକୁ ବହନ କରନ୍ତୁ । '' ଶ୍ୟେନପକ୍ଷୀ ସୋମରସ ଆଣିବା ପାଇଁ ଦ୍ୟୁଲୋକକୁ ଗମନ କରେ । ଇନ୍ଦ୍ର ଦ୍ୟୁଲୋକଶାସନକର୍ତ୍ତା । ତେଣୁ ଶ୍ୟେନ ସହ ଇନ୍ଦ୍ରଙ୍କର ତୁଳନା ସ୍ୱାଭାବିକ ।

୮ମ ମଣ୍ଡଳର ୧୦୦ ତମ ସୂକ୍ତର ୮ମ ଋକ୍‌ରେ ଭୃଗୁଗୋତ୍ରଜ ନେମ ଋଷି ଇନ୍ଦ୍ରଙ୍କ ପାଇଁ ସୋମ ଆହରଣ କଥା ବର୍ଣ୍ଣନା କରିଛନ୍ତି - ''ମନପରି ବେଗଶାଳୀ, ଗତିଶୀଳ ସୁପର୍ଣ୍ଣ ଲୌହମୟ ନଗର ଅତିକ୍ରମ କଲାପରେ ସ୍ୱର୍ଗକୁ ଯାଇ ଇନ୍ଦ୍ରଙ୍କ ପାଇଁ ସୋମ ସଂଗ୍ରହ କରି ଆଣିଥଲେ ।'' 'ସୁପର୍ଣ୍ଣ' ଏଠାରେ ଶ୍ୟେନ ଅର୍ଥରେ ବ୍ୟବହୃତ ହୋଇଅଛି । ୧୦ମ ମଣ୍ଡଳର ୧୪୪ତମ ସୂକ୍ତର ୪ର୍ଥ ଋକ୍‌ରେ ସୁପର୍ଣ୍ଣଙ୍କୁ ଶ୍ୟେନର ପୁତ୍ର ବୋଲି ଅଭିହିତ କରାହୋଇଅଛି ।

ନବମ ମଣ୍ଡଳଟିର ପ୍ରତ୍ୟେକ ସୂକ୍ତ ସୋମ ଦେବତାଙ୍କ ପାଇଁ ଉଦ୍ଦିଷ୍ଟ । ଅବଶ୍ୟ ଅଙ୍ଗିରା ବା ତାଙ୍କ ବଂଶୀୟ ମଧୁଚ୍ଛନ୍ଦା, ଶୂନଃଶେଫ, ଦେବଳ ପ୍ରଭୃତି ଋଷିଗଣ ଏହି ମଣ୍ଡଳର ଋଷି । ସୋମ, ଇନ୍ଦୁ ବା ଚନ୍ଦ୍ର । ସୋମ, ସୋମଲତା ଯାହା ଦ୍ୟୁଲୋକରୁ ବା ସୁଦୂର ମୂଜବତ୍ ପର୍ବତରୁ ଶ୍ୟେନ ଆହରଣ କରି ଆଣେ । ସେହି ସୋମଲତାରୁ ନିଃସାରିତ ଅମୃତତୁଲ୍ୟ ରସ ଦେବଗଣଙ୍କୁ ଯଜ୍ଞରେ ନିବେଦନ କରାଯାଏ । ଇନ୍ଦ୍ର ସେହି ମଧୁମୟ ରସ ପାନ କରି ମଦମତ୍ତ ହୋଇ ଉଲ୍ଲସିତ ହୋଇ ଯୁଦ୍ଧକ୍ଷେତ୍ରରେ ଶତ୍ରୁଙ୍କୁ, ଦସ୍ୟୁଙ୍କୁ ବିନାଶ କରନ୍ତି । ସେହି ରସ ମଧ୍ୟ ମେଧାବୀ କବି ସ୍ତୋତାମୁନିଙ୍କୁ ଉଦ୍‌ବୁଦ୍ଧ କରେ ଦେବଯୋଗ୍ୟ ନୂତନ ନୂତନ ସ୍ତୁତି ରଚନା କରିବାକୁ, ଗାନ କରିବାକୁ । କୃତଜ୍ଞ ଋଷିଗଣ ସୋମକୁ ଦେବତା ରୂପେ ଗ୍ରହଣ କରିଛନ୍ତି, ସୋମର ସ୍ତୁତି ଗାନ କରିଛନ୍ତି । ମନ ପରି, ବାୟୁ ପରି, ସୂର୍ଯ୍ୟରଶ୍ମି ପରି ବେଗଗାମୀ ଶ୍ୟେନ ସେହି ସୋମ ଦ୍ୟୁଲୋକରୁ ଆହରଣ କରି ଆଣୁଥିବାରୁ ଶ୍ୟେନ ପ୍ରତି ମଧ୍ୟ କୃତଜ୍ଞ ହୋଇ ତାକୁ ମଧ୍ୟେ ମଧ୍ୟେ ଇନ୍ଦ୍ରଙ୍କ ସହିତ ତୁଳନା କରିଛନ୍ତି ବା ଦେବତାରୂପେ ଗ୍ରହଣ କରିଛନ୍ତି, ମଧ୍ୟେ ମଧ୍ୟେ ସୋମକୁ ଶ୍ୟେନ ସହିତ ତୁଳନା କରିଛନ୍ତି ।

୯ମ ମଣ୍ଡଳର ୩୮ତମ ସୂକ୍ତର ୪ର୍ଥ ଋକ୍‌ରେ ସ୍ତୋତା ସୋମକୁ ବର୍ଣ୍ଣନା କରି କହୁଅଛନ୍ତି, ''ଏହି ସୋମ ମନୁଷ୍ୟ ପ୍ରଜାଗଣଙ୍କ ମଧ୍ୟରେ ଶ୍ୟେନ ପକ୍ଷୀପରି ବସିଛନ୍ତି.....'' । ୬୨ତମ ସୂକ୍ତର ୪ର୍ଥ ଋକ୍‌ରେ ଜମଦଗ୍ନି ଋଷି ବର୍ଣ୍ଣନା କରିଛନ୍ତି,'' ''ପର୍ବତରୁ ଉତ୍ପନ୍ନ ସୋମ ଆନନ୍ଦ ପ୍ରଦାନ କରିବା ପାଇଁ ନିଷ୍ପୀଡିତ ହେଲେ ଓ ଜଳମଧ୍ୟରେ ବୃଦ୍ଧିପ୍ରାପ୍ତ ହେଲେ । ଶ୍ୟେନ ପକ୍ଷୀ ପରି ଦ୍ରୁତଗତିରେ ନିଜ ସ୍ଥାନକୁ ଯାଇ ଉପବେଶନ କଲେ ।'' ଏହି ପରି ଏକ ପକ୍ଷୀ ଉପମା ସେହି ସୂକ୍ତର ପଞ୍ଚଦଶ ଋକ୍‌ରେ ଅଛି -''ଏହି ସୋମ ଇନ୍ଦ୍ର ଗ୍ରହଣ କଲା ପରେ ନାନା ସ୍ତୁତିବାକ୍ୟ ଲାଭ କରି, ଯେପରି ପକ୍ଷୀ ଆପଣା ନୀଡରେ ଯାଇ ରହେ, ସେହିପରି ଇନ୍ଦ୍ରଙ୍କ ପାନ ପାଇଁ ଯଥାଯୋଗ୍ୟ ପାତ୍ରରେ ଉପସ୍ଥାପିତ ହେଉଅଛନ୍ତି ।'' ପକ୍ଷୀର ନାମ ନ ଥିଲେ ମଧ୍ୟ ଶ୍ୟେନ ପକ୍ଷୀ ସୂଚିତ ହେଲା ପରି ମନେହୁଏ । ଅନୁରୂପ ଉପମା ଲକ୍ଷିତ ହୁଏ ୬୫ତମ ସୂକ୍ତର ଊନବିଂଶ ଋକ୍‌ରେ - ''ହେ ସମୁଜ୍ଜ୍ୱଳ ସୋମ, ଯେପରି ଶ୍ୟେନ ପକ୍ଷୀ ନିଜର ନୀଡରେ ଉପବେଶନ କରେ, ସେହିପରି ତୁମେ ଶବ୍ଦ କରି କରି ତେଜୋମୟ ମୂର୍ତ୍ତି ଧାରଣ କରି କାଷ୍ଠନିର୍ମିତ କଳସରେ ପ୍ରବେଶ କର ।'' ୬୭ ତମ ସୂକ୍ତର ୧୪ଶ ଓ ୧୫ଶ ଋକ୍‌ରେ ପୁଣି ଶ୍ୟେନ ପକ୍ଷୀକୁ ସୋମରସ ସହିତ ତୁଳନା କରାଯାଇଅଛି - ''ଯେପରି ଶ୍ୟେନ ପକ୍ଷୀ ତାର ସୁଦୃଶ୍ୟ ନୀଡ ଆଡକୁ ଦ୍ରୁତଗତିରେ ଯାଇ ସେଥିରେ ପ୍ରବେଶ କରେ, ସେହିପରି ଏହି ସୋମରସ ଶବ୍ଦ କରି କରି କଳସରେ ପ୍ରବେଶ କରୁଛି '' (୧୪) । ''ହେ ସୋମ, ତୁମକୁ ନିଷ୍ପୀଡିତ କରି ଯେଉଁ ରସ ନିର୍ଗତ ହେଉଅଛି, ତାହା ଚତୁର୍ଦ୍ଦିଗସ୍ଥ କଳସଗୁଡିକ ମଧ୍ୟରେ ପ୍ରସ୍ଥାପିତ ହୋଇଅଛି, ଶ୍ୟେନପକ୍ଷୀ ପରି ତାହା ସର୍ବତ୍ର ଯାତାୟାତ କରୁଅଛି ।'' (୧୫) । ୭୧ ତମ ସୂକ୍ତର ୬ଷ୍ଠ ଋକ୍‌ରେ ଋଷଭ ଋଷି କହୁଛନ୍ତି, ''ଯେପରି ଶ୍ୟେନ ପକ୍ଷୀ ନିଜର ନୀଡରେ ପ୍ରବେଶ କରେ, ସେହିପରି ତେଜୋମୟ ସୋମରସ ସୁଗଠିତ ସୁବର୍ଣ୍ଣନିର୍ମିତ କଳସରେ ପ୍ରବେଶ କରନ୍ତି ।'' ବାରମ୍ବାର ଋଗ୍‌ବେଦରେ ସୋମରସର କଳସରେ ପ୍ରବେଶକୁ ଶ୍ୟେନର ନୀଡରେ ପ୍ରବେଶ ସହିତ ତୁଳନା କରା ହୋଇଅଛି । ସେହି ସୂକ୍ତର ୯ମ ଋକ୍‌ରେ ପୁନର୍ବାର ସୋମରସକୁ ସୁପର୍ଣ୍ଣ ସହିତ ତୁଳନା କରାହୋଇଅଛି । ''ଏହାଙ୍କର (ସୋମରସର) ପ୍ରଭାବରେ ସୂର୍ଯ୍ୟଙ୍କ ପ୍ରଭା ଆକାଶରେ ସ୍ଥାପିତ ହୁଏ (ବା ସୋମରସ ସୂର୍ଯ୍ୟଙ୍କ ପ୍ରଭାକୁ ଆହରଣ କରନ୍ତି) । ସେ ବ୍ୟୋମବିହାରୀ ସ୍ୱର୍ଗୀୟ ସୁପର୍ଣ୍ଣ ପକ୍ଷୀତୁଲ୍ୟ ପୃଥିବୀ ପ୍ରତି ସସ୍ନେହ ଦୃଷ୍ଟି ନିକ୍ଷେପ କରନ୍ତି, ସତ୍‌କର୍ମାନୁଷ୍ଠାନ ଦ୍ୱାରା ପ୍ରଜାଙ୍କର (ଜନସମାଜର) ମଙ୍ଗଳ ବିଧାନ କରନ୍ତି ।'' ସୁପର୍ଣ୍ଣ ପକ୍ଷୀ ଆକ୍ଷରିକ ଅର୍ଥରେ ସୁନ୍ଦର-ପକ୍ଷ-ବିଶିଷ୍ଟ ପକ୍ଷୀ ବୁଝାଇପାରେ । କିନ୍ତୁ ପୂର୍ବରୁ କୁହାଯାଇଅଛି, ସୁପର୍ଣ୍ଣ ଶ୍ୟେନର ସନ୍ତାନ ରୂପେ ବେଦର କେତେକ ସ୍ଥାନରେ ବର୍ଣ୍ଣିତ ହୋଇଅଛି । ୭୭ ତମ ସୂକ୍ତର ୨ୟ ଋକ୍‌ରେ ବର୍ଣ୍ଣିତ ହୋଇଅଛି, ''ଶ୍ୟେନ ପକ୍ଷୀ ନିଜ ମାତାଙ୍କ କର୍ତ୍ତୃକ ପ୍ରେରିତ ହୋଇ ଯାହାଙ୍କୁ ଆକାଶର ବାୟୁ ମଧ୍ୟ ଦେଇ (ଭୃତଳକୁ) ଓହ୍ଲାଇ ଆଣିଥିଲେ ସେହି ପ୍ରାଚୀନ ଦେବତା ସୋମ କ୍ଷରିତ ହେଉଅଛନ୍ତି ।'' ସୋମଙ୍କୁ ପକ୍ଷୀରୂପେ ବର୍ଣ୍ଣନା କରା ହୋଇଅଛି ୮୫ ତମ ସୂକ୍ତର ୧୧ଶ ଋକ୍‌ରେ - ଯେପରି ସୋମ ଓ ସୁପର୍ଣ୍ଣ ପକ୍ଷୀ ଏକ ଓ ଅଭିନ୍ନ - ''ଏହି ସୁପର୍ଣ୍ଣ ସୋମ

ଆକାଶରେ ଉଡୁଥିଲେ, ବେନନାମଧାରୀ ବ୍ୟକ୍ତିଗଣ ବହୁ ଚେଷ୍ଟା କରି ଏହାଙ୍କୁ ଆଣିଛନ୍ତି । ଯେ ସୁବର୍ଣ୍ଣ (ସୁଶୋଭନ ବର୍ଣ୍ଣ ବିଶିଷ୍ଟ ହୋଇପାରେ) ପକ୍ଷୀ ପୃଥିବୀକୁ ଆସିଅଛନ୍ତି ।'' ୮୬ତମ ସୂକ୍ତର ୩୫ତମ ଋକ୍‌ରେ ପୁଣି ପୂର୍ବ ପରି ବର୍ଣ୍ଣନା କରାହୋଇଛି - ''ହେ ସୋମ ... ଶ୍ୟେନପକ୍ଷୀ ଯେଉଁପରି ନିଜର ନୀଡରେ ବସେ, ତୁମେ ମଧ୍ୟ ସେହିପରି କଳସ ମଧ୍ୟରେ ବସ । '' ପ୍ରାୟ ଅନୁରୂପ ତୁଳନା ୯୬ତମ ସୂକ୍ତର ୧୯ ତମ ଋକ୍‌ରେ ମିଳେ- ''ଶ୍ୟେନ ପକ୍ଷୀ ପରି ସୋମ ପାନପାତ୍ରରେ ବସିଅଛନ୍ତି ।'' ସେହି ସୂକ୍ତର ଏକ ପୂର୍ବବର୍ତ୍ତୀ (୬ଷ୍ଠ) ଋକ୍‌ରେ ସୋମଙ୍କୁ ଗୃଧ୍ର ସହିତ ତୁଳନା କରା ହୋଇଅଛି । ତାଙ୍କୁ ''ଗୃଧ୍ର ମାନଙ୍କ ମଧ୍ୟରେ ପକ୍ଷୀରାଜ (ଶ୍ୟେନୋ ଗୃଧ୍ରାଣାଂ ସ୍ୱଧିତି)'' ରୂପେ ବର୍ଣ୍ଣନା କରାହୋଇଅଛି । ପୁଣି ୨୩ ତମ ଋକ୍‌ରେ ସ୍ତୋତା କହୁଅଛନ୍ତି, ''ଯେପରି ପକ୍ଷୀ ଉଡି ଉଡି ଯାଇ ବନରେ ବସେ, ସେହିପରି ସୋମ ଶୋଧିତ ହୋଇ କଳସରେ ବସିଛନ୍ତି ।'' ପକ୍ଷୀ ସହିତ ସୋମଙ୍କୁ ତୁଳନା କଲାବେଳେ ସ୍ତୋତାଙ୍କ ମନରେ ଶ୍ୟେନପକ୍ଷୀର ଦୃଷ୍ଟାନ୍ତ ରହିଛି ବୋଲି ମନେ ହୁଏ । ୮୭ ତମ ସୂକ୍ତରେ ପୁଣି ଶ୍ୟେନ ସୋମରସ ଆହରଣ କରି ଆଣିବାର ବର୍ଣ୍ଣନା ଅଛି - ''ହେ ସୋମ, ତୁମକୁ ଶ୍ୟେନପକ୍ଷୀ ଆଣିଅଛି ।'' ୯୭ ତମ ସୂକ୍ତର ୩୩ତମ ଋକ୍‌ରେ ସୋମଙ୍କୁ ଆକାଶବିହାରୀ ''ଦିବ୍ୟସୁପର୍ଣ୍ଣ'' ରୂପେ ବର୍ଣ୍ଣନା କରା ହୋଇଅଛି ।

ଦଶମ ମଣ୍ଡଳର ଏକାଦଶ ସୂକ୍ତର ୪ର୍ଥ ଋକ୍‌ରେ ହବିର୍ଧାନ ଋଷି କହିଛନ୍ତି, ''ଶ୍ୟେନ ଅଗ୍ନିଙ୍କ ଦ୍ୱାରା ପ୍ରେରିତ ହୋଇ ଯଜ୍ଞକୁ ଦ୍ରବଣଶୀଳ ସର୍ବବ୍ୟାପୀ ସର୍ବଜ୍ଞ ସୋମଙ୍କୁ ଆଣିଥିଲେ ।''

ଋଗ୍‌ବେଦର ବିଭିନ୍ନ ସ୍ଥାନରେ ଶ୍ୟେନ ଅଦ୍ରିରୁ ବା ପର୍ବତରୁ ସୋମ ଆହରଣ କରି ଆଣିଥିଲା ବୋଲି ଉଲ୍ଲେଖ ଅଛି । ପ୍ରସିଦ୍ଧ ଅକ୍ଷସୂକ୍ତର (୩୪ ତମ ସୂକ୍ତ) ପ୍ରଥମ ଋକ୍‌ରେ ମିଳେ - ''ମୂଜବାନ୍ ନାମକ ପର୍ବତରେ ଯେଉଁ ଚମତ୍କାର ସୋମଲତା ଉତ୍ପନ୍ନ ହୁଏ, ତାହାରି ରସ ପାନ କରି ଯେପରି ଆନନ୍ଦ ଲାଭ ହୁଏ, ସେହିପରି ବିଭୀତକାଷ୍ଠରେ ଗଠିତ ଅକ୍ଷ ମୋ ପାଇଁ ଆନନ୍ଦଜନକ ଓ ଉତ୍ସାହଦାୟକ ।''

୧୦ମ ମଣ୍ଡଳର ୧୭୮ ସୂକ୍ତର ୧ମ ଋକ୍‌ରେ ଅରିଷ୍ଟନେମି ଋଷି ତାର୍କ୍ଷ୍ୟପକ୍ଷୀର ସ୍ତୁତିଗାନ କରି କହିଛନ୍ତି- ''ଯେଉଁ ତାର୍କ୍ଷ୍ୟପକ୍ଷୀ ବଳଶାଳୀ, ଯାହାଙ୍କୁ ଦେବତାଗଣ ସୋମ ଆହରଣ କରିବା ପାଇଁ ପଠାଇଥିଲେ, ଯେ ଶତ୍ରୁ ପରାଜୟକାରୀ ଓ ଶତ୍ରୁରଥବିନଷ୍ଟକାରୀ, ଯାହାଙ୍କର ରଥ କେହି ଧ୍ୱଂସ କରିପାରନ୍ତି ନାହିଁ, ଯେ ସୈନିକଗଣଙ୍କୁ ଯୁଦ୍ଧକୁ ପଠାନ୍ତି, ସେହି ତାର୍କ୍ଷ୍ୟପକ୍ଷୀଙ୍କୁ ମୁଁ ମୋର ଶୁଭକାମନା କରି ଏଠାକୁ ଆବାହନ କରୁଛି ।'' ବାସ୍ତବରେ ସମସ୍ତ ସୂକ୍ତଟିରେ ତାର୍କ୍ଷ୍ୟଙ୍କୁ ଦେବତାରୂପେ ପରିଗଣିତ କରି ସ୍ତୁତି କରାହୋଇଛି, ଠିକ୍ ଯେପରି ୪ର୍ଥ ମଣ୍ଡଳର ଗୋଟିଏ ସୂକ୍ତରେ ଶ୍ୟେନଙ୍କୁ ଦେବତାରୂପେ ସ୍ତୁତିକରା ହୋଇଛି । ଉଭୟ ତାର୍କ୍ଷ୍ୟ ଓ ଶ୍ୟେନ ସୋମାହରଣକାରୀ ବୋଲି ବର୍ଣ୍ଣିତ ହୋଇଛନ୍ତି । ମନେ ହେଉଛି ତାର୍କ୍ଷ୍ୟ ଓ ଶ୍ୟେନ ଅଭିନ୍ନ ।

ସେହି ୧୦ମ ମଣ୍ଡଳର ୨୮ ତମ ସୂକ୍ତର ୧୦ମ ଋକ୍‌ରେ ଶ୍ୟେନର ହିଂସ୍ରତାର ଚିତ୍ର ମିଳେ - "ଯେପରି ସିଂହ ପିଞ୍ଜରାରେ ରୁଦ୍ଧ ହୋଇ ଚତୁର୍ଦ୍ଦିଗରେ ପଦଘର୍ଷଣ କରେ, ସେହିପରି ଶ୍ୟେନପକ୍ଷୀ ନିଜର ନଖଘର୍ଷଣ କରିବାକୁ ଲାଗିଲା ।"

୧୪୪ ତମ ସୂକ୍ତର ଋଷି ହେଉଛନ୍ତି ସୁପର୍ଣ୍ଣ । ସୂକ୍ତଟି ଏକ ଇନ୍ଦ୍ରସ୍ତୁତି । ୩ୟ ଋକ୍‌ରେ ପ୍ରାର୍ଥନା କରାହୋଇଛି, "ମୁଁ ଶ୍ୟେନ ଋଷି । ସେ (ଅର୍ଥାତ୍ ଇନ୍ଦ୍ର) ମୋର ବଂଶ ବୃଦ୍ଧି କରନ୍ତୁ" । ୪ର୍ଥ ଋକ୍‌ରେ ଶ୍ୟେନଙ୍କର ପୁତ୍ର ସୁପର୍ଣ୍ଣ ବୋଲି ସ୍ପଷ୍ଟ ବର୍ଣ୍ଣିତ ହୋଇଅଛି - "ଶ୍ୟେନଙ୍କର ପୁତ୍ର ସୁପର୍ଣ୍ଣ ବହୁଦୂର ଦେଶରୁ ସୋମ ଆଣିଛନ୍ତି ......।" ୫ମ ଋକ୍‌ରେ ସୋମର ଗୁଣ ବର୍ଣ୍ଣନା କରି ଶେଷରେ ଋଷି କହିଛନ୍ତି, "ତାହା (ସେହି ସୋମକୁ) ଶ୍ୟେନ ନିଜ ପାଦଦ୍ୱାରା ଆହରଣ କରିଅଛି ।"

ସେହି ମଣ୍ଡଳର ଏକ ପୂର୍ବବର୍ତ୍ତୀ ସୂକ୍ତ (୩୦ତମ)ର ୨ୟ ଋକ୍‌ରେ କବଷ ଋଷି ପୁରୋହିତଗଣଙ୍କୁ ସମ୍ବୋଧନ କରି କହୁଅଛନ୍ତି, "..... ଲୋହିତ ବର୍ଣ୍ଣର ସୁପର୍ଣ୍ଣ ତୁଲ୍ୟ ଏହି ଯେଉଁ ସୋମ (ଦ୍ୟୁଲୋକରୁ) ନିମ୍ନକୁ ପତିତ ହେଉଅଛନ୍ତି, ହେ ସୁଚାରୁହସ୍ତବିଶିଷ୍ଟ ବ୍ୟକ୍ତିଗଣ, ତାଙ୍କୁ ଲହରୀ ରୂପରେ ଯଥାସ୍ଥାନରେ ନିକ୍ଷେପ କର ।"

ଶ୍ୟେନ ସହିତ ଏହି ମଣ୍ଡଳର ଏକ ସୂକ୍ତରେ ମଧ (୭୭ତମ, ସୂକ୍ତ ୫ମ ଋକ୍) ମରୁତ୍‌ଗଣଙ୍କୁ ତୁଳନା କରା ହୋଇଅଛି । ଋଷି ମରୁତ୍‌ଗଣଙ୍କୁ ପ୍ରାର୍ଥନା କରିଅଛନ୍ତି, । "......... ଶ୍ୟେନ ପକ୍ଷୀ ପରି ତୁମେ ଶତ୍ରୁଙ୍କୁ ଦୂର କର.......।"

ଆଉ ଗୋଟିଏ ସୂକ୍ତରେ (୭୩ତମ) ସୁପର୍ଣ୍ଣ ଶବ୍ଦର ଉଲ୍ଲେଖ ମିଳେ । ସେଥିର ୧୧ଶ ଋକ୍‌ରେ ବର୍ଣ୍ଣିତ ହୋଇଅଛି - "କେତେକ ସୁପର୍ଣ୍ଣ ପକ୍ଷୀ ଇନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହେଲେ .... ସେମାନେ ପ୍ରାର୍ଥନା କଲେ - ହେ ଇନ୍ଦ୍ର ! ଅନ୍ଧକାର ଦୂର କର, ଦୃଷ୍ଟି ଆଲୋକରେ ପରିପୂର୍ଣ୍ଣ କର, ଆମ୍ଭେମାନେ ଯେପରି ପାଶବଦ୍ଧ ହୋଇ ରହିଅଛୁ । ଆମ୍ଭମାନଙ୍କୁ ମୁକ୍ତ କରିଦିଅ । " ଏ କ୍ଷେତ୍ରରେ କେତେକ ଟୀକାକାର ମତ ଦିଅନ୍ତି ଯେ ଋଷିମାନେ ଇନ୍ଦ୍ରଙ୍କୁ ପ୍ରାର୍ଥନା କରି ନିଜ ନିଜକୁ ପାଶବଦ୍ଧ ସୁନ୍ଦର ପର୍ଣ୍ଣ ବା ପକ୍ଷ ବିଶିଷ୍ଟ ପକ୍ଷୀମାନଙ୍କସହିତ ତୁଳନା କରିଛନ୍ତି ଓ ମୁକ୍ତି କାମନା କରିଛନ୍ତି । ସାଧାରଣତଃ ଶ୍ୟେନ ବା ସୁପର୍ଣ୍ଣ ବଳଶାଳୀ ବୋଲି ଅନ୍ୟ ସମସ୍ତ ସ୍ଥାନରେ ବର୍ଣ୍ଣିତ ହୋଇଅଛି । ସେଇଥିପାଇଁ ବୋଧହୁଏ ଏଠାରେ ସୁପର୍ଣ୍ଣର ଅର୍ଥ ସୁଶୋଭନ ପକ୍ଷବିଶିଷ୍ଟ ପକ୍ଷୀ କରିଛନ୍ତି, ଶ୍ୟେନ ବା ସୁପର୍ଣ୍ଣ ପକ୍ଷୀ କରିନାହାନ୍ତି ।

ଏହିପରି ଋଗ୍‌ବେଦର ପ୍ରତ୍ୟେକ ମଣ୍ଡଳରେ ଶ୍ୟେନର ଗୌରବାବହ ଚିତ୍ର ମିଳେ ଏବଂ ଜଣେ ଋଷିଙ୍କ ସ୍ତୁତିରେ ନୁହେଁ, ବିଭିନ୍ନ ମଣ୍ଡଳରେ ବିଭିନ୍ନ ଋଷିଙ୍କ ଦ୍ୱାରା ରଚିତ ସ୍ତୁତିମାନଙ୍କରେ ଏପରି ଚିତ୍ର ମିଳେ ।

କେବଳ ଋଗ୍‌ବେଦରେ ନୁହେଁ, ଯଜୁର୍ବେଦରେ ମଧ ଶ୍ୟେନର ଚିତ୍ର ମିଳେ । ଅବଶ୍ୟ ସେଥିର ଦୃଷ୍ଟାନ୍ତ ଅତି ବିରଳ ।

ଶ୍ୟେନ ଶବ୍ଦ 'ଶୈ' ଧାତୁରୁ ନିଷନ୍ନ ଶବ୍ଦ; 'ଶ୍ୟୈ ଧାତୁର ଅର୍ଥ ଅତି ବେଗରେ ଗତି କରିବା । 'ତଦ୍‌ଯଦ୍ ସଂଶ୍ୟାୟତି ତସ୍ମାଦ୍ ଶ୍ୟେନଃ' । ଋଗ୍‌ବେଦରେ ବାରମ୍ବାର ଶ୍ୟେନର ବେଗକୁ ବାୟୁର ବେଗ, ମନର ବେଗ ସହିତ ତୁଳନା କରାଯାଇଅଛି । ଅଭିଧାନରେ ବର୍ଣ୍ଣିତ ହୋଇଅଛି ଯେ 'ଶ୍ୟେନୋ ବୈ ବାୟସାଂ କ୍ଷେପିଷ୍ଠ -ଶ୍ୟେନ (କାକଜାତୀୟ) ପକ୍ଷୀମାନଙ୍କ ମଧ୍ୟରେ କ୍ଷିପ୍ରତମ ।' ଶ୍ୟେନର ଆଉ ଗୋଟିଏ ଅର୍ଥ ଦ୍ରୁତତମଗତିବିଶିଷ୍ଟ ଅଗ୍ନି । ଶ୍ୟେନର ଉଜ୍ଜ୍ୱଳତା, ତେଜୋମୟତା ହେତୁ ବୋଧହୁଏ ଅଗ୍ନି ଶ୍ୟେନପଦବାଚ୍ୟ ହେଲେ ।

ପୂର୍ବୋକ୍ତ ଦୃଷ୍ଟାନ୍ତମାନଙ୍କରୁ ଏହା ସ୍ପଷ୍ଟ ହେଉଅଛି ଯେ ଋଗ୍‌ବେଦୀୟ ଯୁଗରେ ଶ୍ୟେନ ଦ୍ୟୁଲୋକରୁ, ସୁଦୂର ମୂଜବତ୍ ପର୍ବତରୁ ସୋମ ଆଣୁଥିଲା । ଋଗ୍‌ବେଦରେ ସୋମ 'ଶ୍ୟେନଭୃତଃ' ବା ଶ୍ୟେନଦ୍ୱାରା ଆନୀତ ରୂପେ ବର୍ଣ୍ଣିତ ହୋଇଅଛି । ପରବର୍ତ୍ତୀ ଯୁଗରେ ଶତପଥବ୍ରାହ୍ମଣ ଓ କାତ୍ୟାୟନୀ ସୂତ୍ରରେ ସୋମ ଅର୍ଥରେ ''ଶ୍ୟେନାହୃତ'' ଶବ୍ଦ ବ୍ୟବହୃତ ହୋଇଅଛି ।

ଐତରେୟ ବ୍ରାହ୍ମଣର ତୃତୀୟ ପଞ୍ଚିକାର ତ୍ରୟୋଦଶ ଅଧ୍ୟାୟରେ ଶ୍ୟେନ ସୋମରସ ଆହରଣ କରିବାର ବର୍ଣ୍ଣନା ଅଛି ଏବଂ ସେହି ଉପାଖ୍ୟାନର ଅର୍ଥ କରି ପ୍ରାଚୀନ ଟୀକାକାର ଯାସ୍କ କହିଅଛନ୍ତି ଯେ ସୋମଲତା ପ୍ରଥମେ ଦ୍ୟୁଲୋକରେ ଉତ୍ପନ୍ନ ହେଉଥିଲା । ଋଷି ଓ ଦେବତାଗଣ କିପରି ତାହାକୁ ପୃଥିବୀକୁ ଆଣିବେ ସେ ବିଷୟରେ ଚିନ୍ତା କରି ଅବଶେଷରେ ଛନ୍ଦମାନଙ୍କୁ (ବେଦର ଛନ୍ଦଗଣଙ୍କୁ) ଅନୁରୋଧ କଲେ ତାହାକୁ ପୃଥିବୀ ପୃଷ୍ଠକୁ ଆଣିବାକୁ । ଛନ୍ଦଗୁଡ଼ିକ ସୁପର୍ଣ୍ଣ ବା ପକ୍ଷୀରୂପ ଧରି ତାହା କରିବାକୁ ଉଦ୍ୟମ କଲେ । ତାଙ୍କ ମଧ୍ୟରୁ କେବଳ ଗାୟତ୍ରୀ ଛନ୍ଦ ଶ୍ୟେନରୂପ ଧରି ଦ୍ୟୁଲୋକକୁ ଯାଇ ସୋମ ଆହରଣ କରି ଆଣିବାକୁ ସମର୍ଥ ହେଲେ । ସେ ସୋମ ନେଇ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରୁଥିବା ବେଳେ ସୋମରକ୍ଷକ ସୋମପାଳଗଣ ବା ଗନ୍ଧର୍ବଗଣଙ୍କ ମଧ୍ୟରୁ ଜଣେ (ସୋମଭ୍ରଜ ରୂପେ ପରେ ନାମିତ ହେଲେ) ତାଙ୍କୁ ଲକ୍ଷ୍ୟ କରି ଶର ନିକ୍ଷେପ କଲେ । ଫଳତଃ ଶ୍ୟେନର ବାମପାଦର ଗୋଟିଏ ନଖ କଟିଗଲା । ସେହି କ୍ଷତ ସ୍ଥାନରୁ ନିଃସୃତ ତରଳୀୟ ପଦାର୍ଥ (ରକ୍ତ) ଦଗ୍ଧହବ୍ୟର 'ବସ' ବା ଶ୍ରେଷ୍ଠାଂଶରେ ପରିଣତ ହେଲା । ଋଗ୍‌ବେଦ ପୂର୍ବୋଲ୍ଲିଖିତ ଏକ ସୂକ୍ତରେ ସୋମାପହରଣକାରୀ ଧନୁର୍ଦ୍ଧାରୀ କୃଶାନୁଶର ନିକ୍ଷେପ କରିବାର ଓ ଫଳତଃ ତାର ଏକ ପକ୍ଷୀ ବା ପର ଖସିପଡ଼ିବାର ଉଲ୍ଲେଖ ଅଛି । କିନ୍ତୁ ଋଗ୍‌ବେଦର କୌଣସି ସ୍ଥାନରେ ଗାୟତ୍ରୀ ଛନ୍ଦ ଶ୍ୟେନ ରୂପ ଧରି ସୋମଲତା ଆହରଣ କରିବାର ବର୍ଣ୍ଣନା ନାହିଁ । ଏହି ଉପାଖ୍ୟାନ ପରବର୍ତ୍ତୀ ଯୁଗରେ କଳ୍ପିତ ହୋଇଅଛି ବୋଲି ମନେ ହୁଏ । (Wilson ଏହି ଉପାଖ୍ୟାନର ମର୍ମ ବିଶ୍ଳେଷଣ କରି କହିଅଛନ୍ତି ଯେ ଦେବତାମାନଙ୍କୁ ସୋମରସ ହବ୍ୟରୂପେ ପ୍ରଦାନ କଲାବେଳେ ପ୍ରଥମେ ଗାୟତ୍ରୀ ଛନ୍ଦରେ ରଚିତ ଋକ୍ ବା ମନ୍ତ୍ରମାନ ବୋଲା ହେଉଥିଲା) । ସାୟଣ ମଧ୍ୟ ଶ୍ୟେନ ପକ୍ଷୀ ଗାୟତ୍ରୀର ପ୍ରତୀକ ବୋଲି କହିଅଛନ୍ତି ।

ଋଗ୍‌ବେଦର ଶ୍ୟେନ କଣ ପରବର୍ତ୍ତୀ ଯୁଗରେ ଗରୁଡ଼ ନାମରେ ପରିଚିତ ହେଲେ ? 'ଗ୍ରୀ' ଧାତୁରୁ (ଗିଳି ପକାଇବା) ଗରୁଡ଼ ଶବ୍ଦର ଉତ୍ପତ୍ତି ହୋଇଅଛି । ମନିଅର୍

ଉଇଲିଅମ୍‌ସ୍‌ଙ୍କ ମତରେ ବୋଧହୁଏ ପ୍ରଥମେ ଗରୁଡ ଓ ସର୍ବଦାହକାରୀ ସୂର୍ଯ୍ୟରଶ୍ମିଜ ଅଗ୍ନି ଏକ ଓ ଅଭିନ୍ନ ବୋଲି ଧାରଣା କରାଯାଇଥିଲା । ମହାଭାରତରେ ବର୍ଣ୍ଣିତ ହୋଇଅଛି ଯେ କାଶ୍ୟପ ଓ ବିନତାଙ୍କ ସୁତ ଗରୁଡ ଜନ୍ମ ହେଉ ହେଉ ନିଜ ଅତ୍ୟୁଜ୍ଜ୍ୱଳ ତେଜରେ ଦେବତାମାନଙ୍କୁ ଭୀତତ୍ରସ୍ତ କରିଦେଇଥିଲେ । ସେମାନେ ତାଙ୍କୁ ଅଗ୍ନି ବୋଲି ମନେ କରି ସେମାନଙ୍କୁ ରକ୍ଷା କରିବାକୁ ପ୍ରାର୍ଥନା କରିଥିଲେ । ଯେତେବେଳେ ସେମାନେ ତାଙ୍କୁ ଗରୁଡ ବୋଲି ଜାଣିଲେ, ସେତେବେଳେ ସେମାନେ ତାଙ୍କୁ ପରମାତ୍ମାରୂପେ ସମ୍ବୋଧନ କରି ଅଗ୍ନି ଓ ସୂର୍ଯ୍ୟ ରୂପେ ଗ୍ରହଣ କଲେ ।

ସର୍ପବିଧ୍ୱଂସୀ ଗରୁଡ ପକ୍ଷୀକୁଳର ରାଜା ଓ ବିଷ୍ଣୁଙ୍କର ବାହନ ରୂପେ ମହାଭାରତ ଓ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛନ୍ତି । ତାଙ୍କର ଭ୍ରାତା ହେଉଛନ୍ତି 'ଅରୁଣ', ସୂର୍ଯ୍ୟଙ୍କର ସାରଥୀ ବା ମୂର୍ତ୍ତିମନ୍ତ ଉଷା । ମହାଭାରତର ତୃତୀୟ ସର୍ଗରେ ବର୍ଣ୍ଣିତ ହୋଇଅଛି ଯେ ଅଗ୍ନିଙ୍କ ସ୍ତ୍ରୀ ସୁପର୍ଣ୍ଣୀ ରୂପ ଧାରଣ କରିଥିଲେ ।

ସେହି ମହାଭାରତରେ ଆହୁରି ମଧ ବର୍ଣ୍ଣିତ ହୋଇଅଛି ଯେ କାଶ୍ୟପଙ୍କ କନ୍ୟା ଶ୍ୟେନା ଶ୍ୟେନକୁଳର ମାତା । ତେଣୁ ଗରୁଡ ଓ ଶ୍ୟେନା ଭ୍ରାତା ଭଗିନୀ । ଋଗ୍‌ବେଦରେ ଶ୍ୟେନ ଅନ୍ତରୀକ୍ଷର ସର୍ବୋଚ୍ଚ ଅଞ୍ଚଳରୁ ବା ଦ୍ୟୁଲୋକରୁ ଗନ୍ଧର୍ବଗଣଙ୍କଦ୍ୱାରା ଗୁପ୍ତରେ ସୁରକ୍ଷିତ ସୋମ ଆହରଣ କରି ଆଣିଥିଲା ବୋଲି ବାରମ୍ବାର ଉଲ୍ଲେଖ ଅଛି । ଏହି ସୋମ ସମ୍ଭବତଃ ପରବର୍ତ୍ତୀ କାଳରେ ଅମୃତ ବୋଲି କଥିତ ହେଲା । ଋଗ୍‌ବେଦର ଶେଷାଂଶରେ ଓ ମଧ୍ୟେ ମଧ୍ୟେ ଅଥର୍ବ ବେଦରେ ଓ ବ୍ରାହ୍ମଣମାନଙ୍କରେ ସୋମ ଓ ଚନ୍ଦ୍ର ଅଭିନ୍ନ ବୋଲି ବର୍ଣ୍ଣନା କରାହୋଇଅଛି । 'ଚନ୍ଦ୍ର ଓଷଧୀନାଂ ଅଧିପତି,'- ଅମୃତର ଆଧାର ବୋଲି କାଳକ୍ରମେ ବର୍ଣ୍ଣିତ ହେଲେ ଓ ବିଷ୍ଣୁ ଶିବ ପ୍ରଭୃତିଙ୍କ ପରି ଦେବତାରୂପେ ପରିଗଣିତ ହେଲେ । ଏଥିପୂର୍ବରୁ ଦର୍ଶାଯାଇଅଛି କିପରି ଋଗ୍‌ବେଦରେ ଅନେକ ସ୍ଥଳରେ ସୋମ ଦେବତାରୂପେ ଗୃହୀତ ହୋଇଅଛନ୍ତି ଓ ସମଗ୍ର ନବମ ମଣ୍ଡଳରେ ଦେବତାରୂପେ ତାଙ୍କର ସ୍ତୁତି କରାଯାଇଅଛି । ୧୦ମ ମଣ୍ଡଳର ୧୪୪ତମ ସୂକ୍ତରେ ଶ୍ୟେନ ନିଜ ପାଦ ଦ୍ୱାରା ସୋମ ଆହରଣ କରିଆଣିଥିଲା ବୋଲି ଉଲ୍ଲେଖ ଅଛି । ବେଦପରବର୍ତ୍ତୀ ଯୁଗରେ ଗରୁଡ ଦେବତାମାନଙ୍କ ପାଇଁ ସ୍ୱର୍ଗରୁ ପାଦରେ ଅମୃତ ଧରି ଆସିଥିଲା ବୋଲି ବର୍ଣ୍ଣନା କରାଯାଇଅଛି ।

ଋଗ୍‌ବେଦରେ ଗରୁଡ ନାମର ଉଲ୍ଲେଖ ନାହିଁ । କିନ୍ତୁ ଉପର୍ଯ୍ୟୁକ୍ତ କାରଣମାନଙ୍କରୁ ଋଗ୍‌ବେଦର ଶ୍ୟେନ ପରବର୍ତ୍ତୀ କାଳରେ ଗରୁଡ ରୂପେ ପରିଚିତ ହେଲା ବୋଲି ମନେ ହୁଏ । ଅବଶ୍ୟ ରୂପ ଓ ଚରିତ୍ରର ପରିବର୍ତ୍ତନ ହୋଇଅଛି । ଗରୁଡ ହିଂସ୍ର ଗୃଧ୍ର ଗୋଷ୍ଠୀର ଜନକ ତୁଲ୍ୟ । ସମସ୍ତ ଶିକାରୀ ପକ୍ଷୀ 'ଗାରୁଡାଃ' 'ଗରୁଡାତ୍ମଜାଃ ' ଇତ୍ୟାଦି ନାମରେ ଅଭିହିତ ।

ମହାଭାରତରେ ବାରମ୍ବାର ଶ୍ୟେନର ଉଲ୍ଲେଖ ଅଛି । ଶ୍ୟେନଜିତ୍ ଆଖ୍ୟାନ,ଶ୍ୟେନ-କପୋତ ଉପାଖ୍ୟାନ ପ୍ରଭୃତି ଏଥିର ଦୃଷ୍ଟାନ୍ତ । କିନ୍ତୁ ମହାଭାରତର ଶ୍ୟେନ ସୋମହରଣକାରୀ ଦିବ୍ୟପକ୍ଷୀ ନୁହେଁ, ଏକ ମାଂସଭକ୍ଷଣକାରୀ, ଏପରିକି ଶବଭକ୍ଷଣକାରୀ ଗୃଧ୍ରଶ୍ରେଣୀୟ

ପକ୍ଷୀ, 'ଗୃଧ୍ରା ଶ୍ୟେନା ବକାଃ କଙ୍କା ବାୟସାଷ୍ଚ ସହସ୍ରଶଃ' (ମହାଭାରତ ୭ମ ସର୍ଗ) । ହରିବଂଶରେ ମଧ୍ୟ ଶ୍ୟେନକୁ ଗୃଧ୍ରଶ୍ରେଣୀର ବୋଲି ବର୍ଣ୍ଣନା କରାହୋଇଅଛି ।

ଭାସାମିଷାଦାନୁସୃତୈଃ ଶ୍ୟେନୈଷ୍ଚାଭିଷଗୃଧ୍ରିଭିଃ

ଋଗ୍‌ବେଦର ଶ୍ୟେନ ଏହି ଗୃଧ୍ରଜାତୀୟ ନୁହେଁ । କେ.ଏନ୍. ଦାଭେ ତାଙ୍କର 'Birds in Sanskrit Literature' ଗ୍ରନ୍ଥରେ ଲେଖିଛନ୍ତି - ଋଗ୍‌ବେଦର ଶ୍ୟେନ ଶବଭକ୍ଷଣକାରୀ, ମାଂସଭକ୍ଷଣକାରୀ ଗୃଧ୍ର ନୁହେଁ । ଶ୍ୟେନ ହେଉଛି ସୁପର୍ଣ୍ଣ, ହିମାଳୟର Golden Eagle ଯେ କୌଣସି ପ୍ରକାର ମାଂସ ଭକ୍ଷଣ କରେ ନାହିଁ । ଉଦ୍ଧୃତ ଋଗ୍‌ବେଦୀୟ ସୂକ୍ତମାନଙ୍କରୁ ଗୋଟିକରେ ସୁବର୍ଣ୍ଣରୂପ ସୁପର୍ଣ୍ଣର ବର୍ଣ୍ଣନା ଅଛି । ତେଣୁ ଋଗ୍‌ବେଦର ଶ୍ୟେନ ଯେ "The Golden Eagle" "the Eagle par excellence," "the foremost, the strongest and the fastest Eagle," ଏହି ସୁପର୍ଣ୍ଣ ଅର୍ଥରେ ଗ୍ରହଣ କରିଛନ୍ତି ପାଶ୍ଚାତ୍ୟ ଜୀବଗବେଷକ H. Donald F.Z.S । ଦାଭେ ଶ୍ୟେନକୁ the great bird who inspired the sages of the Ṛgveda in a most wonderful way and played no mean a part in the evolution of Vedic thought and imagery including even the later Vedanta Philosophy ବୋଲି ବର୍ଣ୍ଣନା କରିଛନ୍ତି । ଯଥାର୍ଥରେ ସୁପର୍ଣ୍ଣକୁ ଋଗ୍‌ବେଦରେ (୪ର୍ଥମ,୨୬ତମସୂ, ୪ର) ପ୍ରଶ୍ୟେନ (ଅର୍ଥାତ୍ ପ୍ରକର୍ଷେଣ ଶ୍ୟେନଃ ବା ପ୍ରକୃଷ୍ଟ ଶ୍ୟେନ) ରୂପେ ବର୍ଣ୍ଣନା କରାହୋଇଅଛି । ଶ୍ୟେନକୁ ପରବର୍ତ୍ତୀ ଯୁଗର ବୈଦାନ୍ତିକ ଦର୍ଶନର ପ୍ରାରମ୍ଭ ଓ ବିବର୍ତ୍ତନ ସହିତ ସଂପୃକ୍ତ କରିବାର କାରଣ ଅଛି ।

ପ୍ରଥମ ମଣ୍ଡଳର ରହସ୍ୟମୟ ଦାର୍ଶନିକ ଚିନ୍ତାପୂର୍ଣ୍ଣ ୧୬୪ ତମ ସୂକ୍ତର ତିନୋଟି ଋକ୍‌ରେ ( ୨୦,୨୧,୨୨ତମ) ଦ୍ୱାସୁପର୍ଣ୍ଣାଙ୍କ ବର୍ଣ୍ଣନା ଅଛି । "ଦୁଇଟି ସୁପର୍ଣ୍ଣ ବନ୍ଧୁରୂପରେ ଗୋଟିଏ ବୃକ୍ଷରେ ବାସ କରୁଥିଲେ । ସେମାନଙ୍କ ମଧ୍ୟରୁ ଗୋଟିଏ ସୁସ୍ୱାଦୁ ପିପ୍ପଳ ଫଳ ଭକ୍ଷଣ କରେ, ଆଉ ଗୋଟିଏ କିଛି ଭକ୍ଷଣ କରେନାହିଁ, କେବଳ ଚାହିଁ ରହିଥାଏ (୨୦)।ଯେଉଁଠାକୁ ସୁଶୋଭନଗତିବିଶିଷ୍ଟ ରଶ୍ମିଗଣ ନିଜର କର୍ତ୍ତବ୍ୟ ମନେ କରି ଅମୃତର ଅଂଶ ଗ୍ରହଣ କରି ଅହରହ ଗମନ କରନ୍ତି, ସେଠାରେ ଯେ ଧୀର ସ୍ଥିର ଭାବରେ ରହି ସମସ୍ତ ପୃଥିବୀକୁ ରକ୍ଷା କରନ୍ତି, ମୁଁ ପରିଣତ ବୁଦ୍ଧି ହୋଇ ନ ଥିଲେ ମଧ୍ୟ ସେ ସେଠାରେ ମତେ ସ୍ଥାପିତ କଲେ (୨୧) । ଯେଉଁ ଆଦିତ୍ୟରୂପକ ବୃକ୍ଷରେ ଜଳଶୋଷଣକାରୀ ରଶ୍ମିଗଣ ରାତ୍ରିକାଳରେ ପ୍ରବେଶ କରନ୍ତି ଓ ପ୍ରଭାତରେ ଜଗତ ଉପରେ ଆଲୋକ ବିକୀରଣ କରନ୍ତି, ପ୍ରଜ୍ଞାବାନ୍ ବ୍ୟକ୍ତିମାନେ ତାହାର ଫଳ ଲାଭ କରନ୍ତି । ଯେଉଁ ବ୍ୟକ୍ତି ପିତାକୁ ଜାଣେ ନାହିଁ, ସେ ଏହି ଫଳ ଲାଭ କରେ ନାହିଁ (୨୨) ।"

ଏହି ଋକ୍‌ଗୁଡିକର ବିଭିନ୍ନ ଅର୍ଥ କରାଯାଇଅଛି । ସାୟଣଙ୍କ ମତରେ ପକ୍ଷୀ ଦୁଇଟି ହେଉଛନ୍ତି ଜୀବାତ୍ମା ଓ ପରମାତ୍ମା । ଜୀବାତ୍ମା କର୍ମଫଳ ପ୍ରାପ୍ତ ହୁଏ । ପରମାତ୍ମା କର୍ମବନ୍ଧନରୁ ମୁକ୍ତ ଓ ତେଣୁ କିଛି ଫଳ ଭୋଗ ନ କରି କେବଳ ସବୁ ଲକ୍ଷ୍ୟ କରନ୍ତି; ବେଦାନ୍ତର ଭାଷାରେ

ସେ ହେଉଛନ୍ତି ସାକ୍ଷୀ ଚୈତନ୍ୟ । ଉପନିଷଦ୍‌ରେ ଦ୍ୱାସୁପର୍ଣ୍ଣଙ୍କ ଅବତାରଣା କରାଯାଇଅଛି । ପାଶ୍ଚାତ୍ୟ ମନୀଷୀଗଣ ପକ୍ଷୀ ଦୁଇଟିକୁ ବିଭିନ୍ନ ଅର୍ଥରେ ଗ୍ରହଣ କରିଅଛନ୍ତି, ଯଥା :- ଦିବାରାତ୍ରି, ସୋମ ଓ ହୋତାଗଣ, ସୂର୍ଯ୍ୟ ଓ ଚନ୍ଦ୍ର ଇତ୍ୟାଦି ।

ଯାସ୍କ ପକ୍ଷୀ ଦୁଇଟି କିଏ ବା କି ପ୍ରକାରର ତାହା ସ୍ପଷ୍ଟରୂପେ କହିନାହାନ୍ତି ।

ସାୟଣଙ୍କର ପ୍ରତୀକାତ୍ମକ ଅର୍ଥ ଯଥାର୍ଥ ମନେ ହୁଏ । ତେବେ ପକ୍ଷୀ ଦୁଇଟି ବାସ୍ତବରେ କି ପ୍ରକାରର ପକ୍ଷୀ ସେ ତାହା କହିପାରିନାହାନ୍ତି । ଗୋଟିଏ ଅବଶ୍ୟ ଶ୍ୟେନଜାତୀୟ, ଅନ୍ୟଟି କେଉଁ ପକ୍ଷୀ ତାହା ସାୟଣ କହିନାହାନ୍ତି ।

ଦାଭେଙ୍କ ମତରେ ପକ୍ଷୀ ଦୁଇଟି Golden Eagle ଓ Golden Criole ।

୩ଟି ଯାକ ଋକ୍‌ରେ ସୁପର୍ଣ୍ଣ ଶବ୍ଦର ବ୍ୟବହାର ହୋଇଅଛି । ୨୦ତମ ଋକ୍‌ରେ ଅଛି ଦ୍ୱାସୁପର୍ଣ୍ଣା । ୨୧ ତମ ଋକ୍‌ର 'ସୁପର୍ଣ୍ଣ'କୁ ରଶ୍ମିରାଜି ବୋଲି ଅର୍ଥ କରାହୋଇଅଛି । ୨୨ତମ ଋକ୍‌ରେ ମଧ୍ୟ 'ସୁପର୍ଣ୍ଣା'ର ଉଲ୍ଲେଖ ଅଛି । କେହି କେହି ତାହାର ଅର୍ଥ ରଶ୍ମିସମୂହ ବୋଲି କହିଛନ୍ତି, କେହି ବା 'ନକ୍ଷତ୍ରଗଣ' ବୋଲି ଅର୍ଥ କରିଛନ୍ତି ।

କିନ୍ତୁ ଯେଉଁପରି ଅର୍ଥ କଲେ ମଧ୍ୟ ଏହି ଋକ୍‌ଗୁଡ଼ିକରେ ସୁପର୍ଣ୍ଣ ଅର୍ଥକୁ ଯେ କେବଳ ପକ୍ଷୀ ଅର୍ଥରେ ନୁହେଁ, ପ୍ରତୀକାତ୍ମକ ଅର୍ଥରେ ବ୍ୟବହାର କରାଯାଇଅଛି ତାହା ସୁସ୍ପଷ୍ଟ ।

Encyclopoedia Brittanica ରେ Golden Eagle ବିଷୟରେ ନିମ୍ନୋକ୍ତ ତଥ୍ୟ ପ୍ରଦତ୍ତ ହୋଇଅଛି - "It is the largest bird of prey trained for falconry, and has been used in Asia, especially in India, for taking bustards, antelopes, hares, foxes, and, it is said, even larger animals such as wild goats and wolves."

କୌଣସି କୌଣସି ପ୍ରାଚୀନ ଗ୍ରନ୍ଥରେ 'ଶ୍ୟେନଜୀବୀ' (ଶ୍ୟେନ ଯାହାର ଜୀବିକା - ଯେ ଶ୍ୟେନ ବିକ୍ରୟ କରେ ବା ଶ୍ୟେନକୁ ଶିକାରାଦି କାର୍ଯ୍ୟ କରିବାକୁ ଶିକ୍ଷା ଦିଏ) ଶବ୍ଦର ବ୍ୟବହାର ଅଛି । ମହାମହୋପାଧ୍ୟୟ ନୀଳକଣ୍ଠ ଶାସ୍ତ୍ରୀ 'ପ୍ରାଚୀନ ଶ୍ୟେନଶାସ୍ତ୍ର,' ସମ୍ପାଦନା କରିଥିଲେ । ପାଣିନି ଶ୍ୟେନ ପାଳନ ଓ ଶ୍ୟେନକୁ ଶିକ୍ଷା ଦାନ କରିବା କଳାକୁ 'ଶ୍ୟେନଶ୍ୟାତା' ରୂପେ ଅଭିହିତ କରିଅଛନ୍ତି ।

ଷୋଡଶ ଶତାବ୍ଦୀରେ, ରାଣୀ ଏଲିଜାବେଥ୍ (ପ୍ରଥମ) ବା ସେକ୍ସପିଅର୍‌ଙ୍କ ଯୁଗରେ ଇଂଲଣ୍ଡରେ falconry ପ୍ରଚଳିତ ଥିଲା । falcon ବା hawk (ଶ୍ୟେନ) କୁ ଯଥାବିଧି ଶିକ୍ଷାଦେଇ ପାଦରେ ସୂତ୍ର ବାନ୍ଧି ପବନସ୍ରୋତର ବିପରୀତ ଦିଗକୁ ଉଡାଇ ଦେଉଥିଲେ । ସେ ଖାଦ୍ୟୋପଯୋଗୀ ପକ୍ଷୀ ଆକାଶମାର୍ଗରୁ ଘେନି ଆସୁଥିଲା । ଯେତେବେଳେ ଶ୍ୟେନ ଅବାଧ ହୋଇ ଯାଉଥିଲା, ସେତେବେଳେ ତାର ପାଦଦୁଇଟିରୁ ଚମଡା ବନ୍ଧନକୁ କାଟି ଦେଇ ବାୟୁ ଯେଉଁ ଦିଗକୁ ପ୍ରବାହିତ ହେଉଥିଲା, ସେହି ଦିଗକୁ ତାକୁ ଉଡାଇ ଦେଉଥିଲେ ।

ସେହି ଅବାଧ ବିଶୃଙ୍ଖଳ ଶ୍ୟେନ ଆଉ ଫେରୁ ନ ଥିଲା । ଏହି ଶ୍ୟେନକୁ ଚିତ୍ରକଳ୍ପରୂପେ, ଉପମାର ଅଂଶ ବିଶେଷ ରୂପେ ମହାକବି ସେକ୍ସପିଅର ପ୍ରୟୋଗ କରିଛନ୍ତି ତାଙ୍କର ପ୍ରସିଦ୍ଧ tragedy, Othello (ଅଥେଲୋ) ରେ -'If the jesses were my heart-strings, I shall whistle her off;' ତାଙ୍କର ପ୍ରିୟତମା ପତ୍ନୀ ଡେସ୍‌ଡିମେନାଙ୍କୁ (Desdemona) ସେ ସନ୍ଦେହ କରୁଛନ୍ତି । ଯଦି Desdemona ଅସତୀ ବୋଲି ପ୍ରମାଣ ମିଳେ ତେବେ ସେ ତାଙ୍କୁ ତାଙ୍କର ଉଚ୍ଛୃଙ୍ଖଳ ମାର୍ଗରେ ଛାଡିଦେବେ । ଏହି କଥା କହିବାକୁ ଯାଇ ସେ Desdemona କୁ ଅବାଧ ଶ୍ୟେନ ସହିତ ତୁଳନା କରି କହିଅଛନ୍ତି ଯେ ଯେପରି ସେପରି ଶ୍ୟେନର ପାଦଦୁଇଟିର ଚମଡା ବନ୍ଧନକୁ କାଟି ତାକୁ ଛାଡିଦିଆଯାଏ, ସେହିପରି ତାଙ୍କର ହୃଦୟ ତନ୍ତୁଗୁଡିକୁ ବିଚ୍ଛିନ୍ନ, କର୍ତ୍ତନ କରିବାକୁ ହେଲେ ମଧ ସେ ଉଚ୍ଛୃଙ୍ଖଳ ଶ୍ୟେନ ତୁଲ୍ୟ ଡେସ୍‌ଡିମୋନାଙ୍କୁ ଛାଡିଦେବେ ।

ହଜାର ହଜାର ବର୍ଷ ପୂର୍ବର ଆର୍ଯ୍ୟଋଷିଗଣ ସେହିପରି ଶ୍ୟେନଙ୍କୁ ଉପମାନ, ଉପମେୟ ରୂପେ, ଚିତ୍ରକଳ୍ପରୂପେ ବ୍ୟବହାର କରିଛନ୍ତି, ପ୍ରତୀକରୂପେ ବ୍ୟବହାର କରିଛନ୍ତି । ଆଗରୁ କୁହାହୋଇଅଛି, ଋଗ୍‌ବେଦର ଶ୍ୟେନ ହିଂସ୍ର ଶବଭକ୍ଷଣକାରୀ, ମାଂସଭକ୍ଷଣକାରୀ ନୁହେଁ, କିନ୍ତୁ ହୁଏତ ଶ୍ୟେନକୁ ଶିକ୍ଷା ଦିଆହୋଇଥିଲା ସୁଦୂର ମୂଜବତ୍ ବା ସମୁଚ୍ଚ ଦ୍ୟୁଲୋକରୁ ସୋମଲତା ଆହାରଣ କରି ଆଣିବାକୁ । କେତେକ ପାଶ୍ଚାତ୍ୟ ମନୀଷୀଙ୍କ ମତରେ ଆର୍ଯ୍ୟମାନେ ପ୍ରଥମେ ଭାରତର ଉତ୍ତର ପଶ୍ଚିମ ସିମାନ୍ତରେ ଆର୍ଯ୍ୟକ ନାମକ ଅଞ୍ଚଳରେ ବାସ କରୁଥିଲେ । ଏହି ଅଞ୍ଚଳ ହିମାଳୟର ପଶ୍ଚିମାଞ୍ଚଳ, କାଶ୍ମୀରର ଉତ୍ତରପଶ୍ଚିମାଂଶ ଅଞ୍ଚଳ । ସେହି ଅଞ୍ଚଳରେ ବାସ କଲାବେଳେ ହୁଏ ତ ଶ୍ୟେନକୁ ଶିକ୍ଷା ଦିଆ ହେଉଥିଲା ସୋମ ସଂଗ୍ରହ କରି ଆଣିବାକୁ । ଶ୍ୟେନ ଯାଇ ଦୂର ପର୍ବତରୁ ବା ଲୋକଲୋଚନ ବହିର୍ଭୂତ ଦ୍ୟୁଲୋକସମ ସମୁଚ୍ଚ ଅଞ୍ଚଳରୁ ତାହା ନେଇଆସୁଥିଲା । ତାହାରି ରସ ଘୃତ, ମଧୁ, ଦୁଗ୍ଧ ଇତ୍ୟାଦି ସହ ଯଜ୍ଞରେ ଦେବତାଙ୍କୁ ଅର୍ଘ୍ୟରୂପେ ପ୍ରଦତ୍ତ ହେଉଥିଲା ।

ଦାଭେ ମତପ୍ରକାଶ କରିଅଛନ୍ତି, "It is, therefore, submitted that many of the metaphors and similes in which ସୁପର୍ଣ୍ଣ or ଶ୍ୟେନ figures in the Ṛgveda are actually based on the practices of the art. ".

ଅବଶ୍ୟ ଋଗ୍‌ବେଦରେ ଶ୍ୟେନପାଳନ କଳାର କୌଣସି ବର୍ଣ୍ଣନା କେଉଁଠାରେ ନାହିଁ, ଶ୍ୟେନଜୀବୀଙ୍କର ଉଲ୍ଲେଖ ନାହିଁ । ଶ୍ୟେନ ସୋମଲତା ବ୍ୟତୀତ ଅନ୍ୟ କିଛି ଆଣିବାର ଦୃଷ୍ଟାନ୍ତ ନାହିଁ । ବୋଧହୁଏ ପରବର୍ତ୍ତୀ କାଳରେ ଶ୍ୟେନକୁ ପକ୍ଷୀ ବା ବିଭିନ୍ନ ଜୀବ ଆହରଣ କରିବାପାଇଁ ନିୟୋଜିତ କରାହେଲା ଏବଂ ସେହି ଶ୍ୟେନ ଥିଲା ମହାଭାରତ ବର୍ଣ୍ଣିତ ମାଂସଭକ୍ଷଣକାରୀ ଗୃଧ୍ରଜାତୀୟ ଶ୍ୟେନ ।

ଶ୍ରୀ ଅରବିନ୍ଦ ପ୍ରତୀକାତ୍ମକ ଅର୍ଥ କରି ସୋମଙ୍କୁ ଦିବ୍ୟ ଆନନ୍ଦ ବୋଲି ଅଭିହିତ କରିଅଛନ୍ତି । ସେହି ଦୃଷ୍ଟିରୁ ମନପରି ବେଗଗାମୀ ଶ୍ୟେନର ଦ୍ୟୁଲୋକକୁ ଯାତ୍ରା ଓ ସୋମ ଆହରଣ ମନୁଷ୍ୟମନର ଦିବ୍ୟ ଉତ୍ତରଣ ଓ ଅନନ୍ତ ଆନନ୍ଦ ଆହରଣର ପ୍ରତୀକ ବୋଲି ଗ୍ରହଣ କରାଯାଇପାରେ ।

******

# ଋଗ୍‌ବେଦରେ ଦାନସ୍ତୁତି

ବୈଦିକ ଯୁଗରେ ଯଜ୍ଞାନୁଷ୍ଠାନ ସର୍ବପ୍ରଧାନ ସ୍ଥାନ ଲାଭ କରିଥିଲା । ଦେବତାଙ୍କର ଉପାସନା ପାଇଁ, ଯୁଦ୍ଧରେ ବିଜୟ ଲାଭ ପାଇଁ ଓ ଶତ୍ରୁର ବିନାଶ ପାଇଁ, ସମ୍ପଦ ଲାଭ ପାଇଁ, ନାନାବିଧ ଉଦ୍ଦେଶ୍ୟ ପୂରଣ ପାଇଁ ଯଜ୍ଞମାନ ଅନୁଷ୍ଠିତ ହେଉଥିଲା । ଯଜମାନଙ୍କ କଲ୍ୟାଣ ପାଇଁ ସେମାନଙ୍କ ପୃଷ୍ଠପୋଷକତାରେ ଋତ୍ୱିକ୍‌ମାନେ ଯଜ୍ଞ କରୁଥିଲେ ଓ ଯଜମାନମାନେ ସେମାନଙ୍କୁ ପ୍ରଭୂତ ଦାନ କରୁଥିଲେ । ଅଧିକାଂଶ କ୍ଷେତ୍ରରେ ରାଜାମାନେ ହିଁ ବ୍ୟୟବହୁଳ ଯଜ୍ଞମାନ କରୁଥିଲେ । ଋଗ୍‌ବେଦର ଅନେକ ସୂକ୍ତରେ ଦାନର ପ୍ରସଙ୍ଗ ରହିଛି ଓ ଦାନର ମହତ୍ତ୍ୱ ବର୍ଣ୍ଣନା କରାଯାଇଅଛି । ଦାତାମାନଙ୍କର ଉଚ୍ଚ ପ୍ରଶଂସା କରାଯାଇଅଛି । ଦେବତାଙ୍କଠାରୁ ସମସ୍ତ ସମୃଦ୍ଧି ମିଳୁଥିବାରୁ ସେମାନଙ୍କୁ ପରମ ଦାତାରୂପେ ସ୍ତୁତି କରାହୋଇଅଛି । ମନୁଷ୍ୟଙ୍କୁ ଦେବତାମାନେ ହିଁ ଶ୍ରେଷ୍ଠଦାନ ଦେଇଅଛନ୍ତି ।

୧୦ମ ମଣ୍ଡଳର ୬୫ତମ ସୂକ୍ତର ୩ୟ ଋକ୍‌ରେ ବସୁକର୍ଣ୍ଣ ଋଷି ପ୍ରାର୍ଥନା କରିଛନ୍ତି - ''ସୁନ୍ଦର ମେଘରୁ ବାରିଧାରା ବର୍ଷଣ କରୁଥିବା ସେହି ପରମ ମିତ୍ର ଦେବତାଗଣ ଆମ୍ଭମାନଙ୍କୁ ଧନ ଦାନ କରି ମହାନ୍ କରନ୍ତୁ ।'' ପରବର୍ତ୍ତୀ ଋକ୍‌ରେ ପୁଣି କହିଅଛନ୍ତି ଯେ, 'ଯେଉଁ ଦେବତା ସମସ୍ତଙ୍କର ପ୍ରଭୁ ସ୍ୱରୂପ, ସୂର୍ଯ୍ୟଙ୍କୁ ଓ ଆକାଶର ଗ୍ରହନକ୍ଷତ୍ରମାନଙ୍କୁ ତଥା ଦ୍ୟୁଲୋକ ଭୂଲୋକ ଓ ପୃଥିବୀକୁ ସ୍ୱକୀୟ ଶକ୍ତିଦ୍ୱାରା ଯଥା ସ୍ଥାନରେ ଅବସ୍ଥାପିତ କରିଅଛନ୍ତି, ସେମାନେ ଧନଦାତା ବ୍ୟକ୍ତିମାନଙ୍କ ପରି ଉତ୍ତମ ଦାନ କରି ମନୁଷ୍ୟମାନଙ୍କୁ ମହାନ୍ କରିଅଛନ୍ତି ।' ତହିଁର ପରବର୍ତ୍ତୀ ଋକ୍‌ରେ ମିତ୍ର ଓ ବରୁଣଙ୍କୁ ରାଜାଙ୍କ ରାଜା, ବିଶେଷତଃ ବରୁଣଙ୍କୁ ଦାତା-ବରୁଣ ରୂପେ ଋଷି ବର୍ଣ୍ଣନା କରିଅଛନ୍ତି ।

ଋଗ୍‌ବେଦରେ ପ୍ରାୟ ୪୦ ଟି ଦାନସ୍ତୁତି ଅଛି । ଉପରୋକ୍ତ ଋକ୍‌ଗୁଡିକ ପରି କେତେଗୁଡିଏ ଦାନ ସ୍ତୁତିରେ ଯଜ୍ଞର ଦେବତା ବା ଦେବଗଣଙ୍କୁ ସ୍ତୁତି କରାହୋଇଛି, ପ୍ରଶଂସା କରା ହୋଇଛି ଯଜମାନଙ୍କୁ ନାନା ଭାବରେ ଦାନ କରିଥିବାରୁ, ଅଉ କେତେଗୁଡିଏ ଦୀର୍ଘ ଯଜ୍ଞସମ୍ପର୍କୀୟ ସଙ୍ଗୀତ ଅଛି । ମନେହୁଏ, ସେଗୁଡିକ କେଉଁ କେଉଁ ରାଜାଙ୍କ ନିର୍ଦ୍ଦେଶରେ ରଚିତ, ଓ ଯଜ୍ଞକାଳରେ କୃତଜ୍ଞ ଋଷିମାନେ ସେଗୁଡିକୁ ଗାନ କରିଛନ୍ତି ।

ଅଧିକାଂଶ ଦାନସ୍ତୁତି ସଂପୃକ୍ତ ସୂକ୍ତମାନଙ୍କର ୩/୪ ଟି ଋକ୍‌ରେ ସୀମାବଦ୍ଧ । ନିମ୍ନରେ କେତୋଟି ଦୃଷ୍ଟାନ୍ତ ଦିଆଗଲା ।

୮ମ ମଣ୍ଡଳର ୫ମ ସୂକ୍ତର ୩୭ ତମ ଋକ୍‌ରେ କଣ୍ୱଗୋତ୍ରୀୟ ଋଷି ବ୍ରହ୍ମାତିଥି, ଦେବତା ଅଶ୍ୱିଦ୍ୱୟଙ୍କୁ ସମ୍ବୋଧନ କରି କହୁଅଛନ୍ତି - ''............. ଚେଦିବଂଶଜ କଶୁ ରାଜା ଯେପରି ଶହେ ଓଟ ଓ ଦଶହଜାର ଗାଈ ଦାନ କରିଥିଲେ, ତାହା ମଧ୍ୟ ତୁମେ ଜାଣ ।''ପରବର୍ତ୍ତୀ ଋକ୍‌ରେ ଚେଦିବଂଶୀୟ ରାଜା କଶୁ ଋଷିଙ୍କ ସେବା ପାଇଁ ସୁବର୍ଣ୍ଣତୁଲ୍ୟ

(ଉଦ୍ଧବ) ଦଶଜଣ ରାଜାଙ୍କୁ ପ୍ରଦାନ କରିଥିଲେ ବୋଲି ବର୍ଣ୍ଣିତ ହୋଇଅଛି । ସୂକ୍ତର ଶେଷରେ ସେହି ଚେଦି ରାଜାଙ୍କୁ ଅତୁଳନୀୟ ଦାନୀ ଓ ବିଦ୍ୱାନ୍ ବ୍ୟକ୍ତି ବୋଲି ଅଭିହିତ କରା ହୋଇଅଛି ।

ସେହି ମଣ୍ଡଳର ୨ୟ ସୂକ୍ତର ୪୧ ତମ ଋକ୍‌ରେ ପ୍ରିୟମେଧ ଋଷି ବିଭିନ୍ଦୁଙ୍କୁ (ଇନ୍ଦ୍ରଙ୍କୁ) ସମ୍ବୋଧନ କରି କହିଅଛନ୍ତି - ''ତୁମେ ଦାତା, ତୁମେ ମତେ ଚାରି ଅୟୁତ ଧନ (ମୁଦ୍ରା) ଦେଇଅଛ । ପରେ ଅଷ୍ଟସହସ୍ର ଧନ (ମୁଦ୍ରା) ଦାନ କରିଛ (ଶିକ୍ଷା ବିଭିନ୍ଦୋ ଅସ୍ମୈ ଚତ୍ୱାର୍ଯ୍ୟୁତା ଦଦଦ୍ ଅଷ୍ଟା ପରଃ ସହସ୍ରା) ।''

୮ମ ମଣ୍ଡଳର ୬୮ତମ ସୂକ୍ତର ପଞ୍ଚଦଶରୁ ସପ୍ତଦଶ ଋକ୍‌ମାନଙ୍କରେ ପ୍ରିୟମେଧ ଋଷି, ଇନ୍ଦ୍ରୋତ, ଋକ୍ଷର ପୁତ୍ର ଓ ଅଶ୍ୱମେଧର ପୁତ୍ରଙ୍କ ନିକଟରୁ ସୁସଜ୍ଜିତ ସୁନ୍ଦର ଅଶ୍ୱ ବା ରଥ ସହିତ ଅଶ୍ୱ ପାଇଅଛନ୍ତି ଓ ଅତିଥିଗ୍ୱଙ୍କ ପୁତ୍ର ଶୁଦ୍ଧକର୍ମା ଇନ୍ଦ୍ରୋତଙ୍କଠାରୁ ଅଶ୍ୱୀଯୁକ୍ତ ଛ'ଟି ଅଶ୍ୱ ପାଇଅଛନ୍ତି ବୋଲି ବର୍ଣ୍ଣନା କରିଅଛନ୍ତି ।

୫ମ ମଣ୍ଡଳର ୩୬ତମ ସୂକ୍ତର ଶେଷ (୬ଷ୍ଠ) ଋକ୍‌ରେ ଋଷି ପ୍ରଭୁବସୁ ମରୁଦ୍‌ଗଣଙ୍କୁ ସମ୍ବୋଧନ କରି କହିଛନ୍ତି, ''ଯେଉଁ ଶ୍ରୁତିରଥ ରାଜା ଆମ୍ଭମାନଙ୍କୁ ଦୁଇଟି ଲୋହିତବର୍ଣ୍ଣ ଅଶ୍ୱ ଓ ତିନିଶହ ଗାଭୀ ଦାନ କରିଅଛନ୍ତି, ସମସ୍ତେ ଯେପରି ତାଙ୍କୁ ସେବା କରି ପ୍ରଣାମ କରନ୍ତି (ଯୋ ରୋହିତୌ ବାଜିନୌ ବାଜିନୀବାନ୍ତ୍ରିଭିଃ ଶତୈଃ ସଚମାନାବଦିଷ୍ଟ, ଯୂନେ ସମସ୍ମୈ କ୍ଷିତୟୋ ନମନ୍ତାଂ ଶ୍ରୁତରଥାୟ ମରୁତୋ ଦୁବୋୟା)''।

୧ମ ମଣ୍ଡଳର ୧୨୫ତମ ସୂକ୍ତଟିର ପ୍ରଥମ ଭାଗରେ ବର୍ଣ୍ଣିତ ହୋଇଅଛି ଯେ କକ୍ଷୀବାନ୍ ନିଦ୍ରିତ ଥିବା ବେଳେ ସ୍ୱନୟ ରାଜା ପ୍ରଭୂତ ରତ୍ନ ତାଙ୍କ ପାଇଁ ଆଣି ରଖିଲେ । ନିଦ୍ରାରୁ ଉଠି କକ୍ଷୀବାନ୍ ତାହା ପାଇ ତାଙ୍କ ପିତା ଦୀର୍ଘତମାଙ୍କୁ ଦେଲେ ।

ଋଷି ପୁଣି କହିଛନ୍ତି, ଯେଉଁ ଲୋକ ସକାଳୁ ଉଠି ପଦବ୍ରଜରେ ଆସିଥିବା କୌଣସି ଯାଚକକୁ ଦଉଡ଼ିରେ ପାଦକୁ ବାନ୍ଧିଲାପରି ଧନରେ ବାନ୍ଧିଦିଏ, ସେହି ଦାନୀ ପୁରୁଷ, ଉତ୍ତମ ଗୋରୁ, ଉତ୍ତମ ସୁନା ଓ ଉତ୍ତମ ଅଶ୍ୱ ଲାଭ କରେ । ତାକୁ ଇନ୍ଦ୍ର ଅତ୍ୟନ୍ତ ଉତ୍ତମ ଅନ୍ନଦାନ କରନ୍ତି ।

ସ୍ୱନୟ ରାଜାଙ୍କର ଦାନ ସମ୍ପର୍କରେ ରଚିତ ହୋଇଥିବାରୁ ଏହି ସୂକ୍ତଟିର 'ଦାନ' ହିଁ ଦେବତା । ଦକ୍ଷିଣା ବା ଦାନପ୍ରଦାନକାରୀ ବ୍ୟକ୍ତି ଦୀର୍ଘ ଆୟୁ ଲାଭ କରେ । ବାର୍ଦ୍ଧକ୍ୟରୁ ରକ୍ଷାପାଏ, ଅମୃତତ୍ୱ ଲାଭ କରେ । ସୂର୍ଯ୍ୟ ତାରି ପାଇଁ ଆକାଶରେ ବିଦ୍ୟମାନ । ସେ ଜଳସମ୍ପଦ ଲାଭ କରେ । ଭୂମି, ଶସ୍ୟ, ଫଳ ଇତ୍ୟାଦି ଦେଇ ତାକୁ ସମୃଦ୍ଧ କରନ୍ତି । (ଦକ୍ଷିଣାବତାମିଦିମାନି ଚିତ୍ରା, ଦକ୍ଷିଣାବତାଂ ଦିବି ସୂର୍ଯ୍ୟାସଃ । ଦକ୍ଷିଣାବନ୍ତୋ ଅମୃତଂ ଭଜନ୍ତେ ଦକ୍ଷିଣାବନ୍ତଃ ପ୍ର ତିରନ୍ତ ଆୟୁଃ ।।)

୧୦ମ ମଣ୍ଡଳର ୪୦ତମ ସୂକ୍ତର ୭ମ ଋକ୍‌ରେ ଅଶ୍ୱିଦ୍ୱୟଙ୍କୁ ସମ୍ବୋଧନ କରି ଘୋଷା ଋଷି କହିଅଛନ୍ତି - ''ଯେଉଁ ବ୍ୟକ୍ତି ଦାନଶୀଳ, ସେ ତୁମର ବନ୍ଧୁତ୍ୱ ଲାଭ କରେ । ତୁମ୍ଭମାନଙ୍କ ଆଶ୍ରୟରେ ସେ ସୁଖଲାଭ କରେ ....''

୧୦ମ ମଣ୍ଡଳ ୧୧୭ ତମ ସୂକ୍ତଟି ଏକ ସମ୍ପୂର୍ଣ୍ଣ ଦାନସ୍ତୁତି । ଭିକ୍ଷୁ ନାମକ ଋଷିଙ୍କ ଦ୍ୱାରା ରଚିତ ଏହି ସୂକ୍ତଟିରେ କୌଣସି ନିର୍ଦ୍ଦିଷ୍ଟ ରାଜା ବା ବ୍ୟକ୍ତିଙ୍କର ଦାନର ଉଲ୍ଲେଖ ନାହିଁ । ଋଷି ନିଜେ ଲାଭ କରିଥିବା ଦାନ ପାଇଁ ଏହା ଦାତାଙ୍କର ପ୍ରଶସ୍ତି ନୁହେଁ, କୌଣସି ଦେବତାଙ୍କର ଦାନ ପାଇଁ ତାଙ୍କର ସ୍ତୁତି ନୁହେଁ । ଯଜ୍ଞକାଳୀନ ଦାନବିଷୟକ ନୁହେଁ । ଏଥିରେ ସାଧାରଣ ଭାବେ ଦାନର ମହତ୍ତ୍ୱ, ଦାତାର ମହତ୍ତ୍ୱ ବର୍ଣ୍ଣିତ ହେଇଅଛି । ସେଥିପାଇଁ ସୂକ୍ତର ଦେବତା 'ଦାନ ଦେବତା' ବୋଲି ଉଲ୍ଲେଖ କରା ଯାଇଅଛି ।

ଏ ସୂକ୍ତଟିର ଏକ ଆଦର୍ଶବାଦୀ ଦିଗ ଅଛି ଏବଂ ଏକ ବାସ୍ତବବାଦୀ ଦିଗ ମଧ୍ୟ ରହିଛି । ଏଥିରେ ଦାନର ଆଦର୍ଶ ଉପସ୍ଥାପିତ କରାହୋଇଅଛି । ପୁଣି କ୍ଷୁଧା, ଦାରିଦ୍ର୍ୟର ଉତ୍କଟ ତାଡନାର ଉଲ୍ଲେଖ ଅଛି । ଉଲ୍ଲେଖ ଅଛି, ସମାଜରେ ଧନ ଦୃଷ୍ଟିରୁ ବିଭିନ୍ନ ସ୍ତରର ବ୍ୟକ୍ତି ଓ ସେମାନଙ୍କର ଆଚରଣ ।

ଭିକ୍ଷୁ ଋଷି କହୁଅଛନ୍ତି - ଦେବତାଗଣ ଯେଉଁ କ୍ଷୁଧା ସୃଷ୍ଟି କରିଅଛନ୍ତି, ତାହା ପ୍ରାଣଘାତିନୀ । ଆହାର କଲେ ମଧ୍ୟ ମୃତ୍ୟୁଠାରୁ ତ୍ରାହି ନାହିଁ । କିନ୍ତୁ ଦାତାର ଧନ କମିଯାଏ ନାହିଁ । ଯେତେବେଳେ ଜଣେ କ୍ଷୁଧାର୍ତ୍ତ ବ୍ୟକ୍ତି ଚିତ୍କାର କରି ଖାଦ୍ୟ ମାଗିମାଗି ଉପସ୍ଥିତ ହୁଏ ଓ ଖାଦ୍ୟ ଭିକ୍ଷା କରେ, ସେତେବେଳେ ପାଖରେ ଅନ୍ନ ଥିଲେ ମଧ୍ୟ ଯେ ହୃଦୟକୁ କଠିନ କରି ଆଗେ ନିଜେ ଖାଇଦିଏ, ତାକୁ କେତେବେଳେ କେହି ଆନନ୍ଦ ଦିଅନ୍ତି ନାହିଁ । କୌଣସି କ୍ଷୀଣକାୟ ବ୍ୟକ୍ତି ଖାଦ୍ୟ କାମନା କରି ଆସି ଭିକ୍ଷା କଲେ, ଯେ ଖାଦ୍ୟ ଦାନ କରେ, ସେ ଭୋଜ ଅର୍ଥାତ୍ ଅନ୍ନଦାତା । ସେ ଯଜ୍ଞର ଫଳ ସମ୍ପୂର୍ଣ୍ଣ ରୂପେ ଲାଭ କରେ । ଶତ୍ରୁମାନଙ୍କ ମଧ୍ୟରେ ତାର ମିତ୍ର ଜନ୍ମନ୍ତି । ଯେ, ବନ୍ଧୁ ଜଣେ ଆସିଲେ, ବନ୍ଧୁ ହୋଇ ମଧ୍ୟ ତାକୁ ଖାଦ୍ୟ ଦିଏ ନାହିଁ, ସେ ବନ୍ଧୁ ନୁହେଁ । ତା' ନିକଟରୁ ଚାଲିଯିବା ଉଚିତ୍ । ତାର ଘର ଘର ହିଁ ନୁହେଁ । ସେତେବେଳେ ଅନ୍ୟ କୌଣସି ଧନୀ, ଦାନଶୀଳ ବ୍ୟକ୍ତିର ଘରକୁ ଚାଲିଯିବା ଉଚିତ୍ । ଯେ ମାଗୁଛି ତାକୁ ନିଶ୍ଚୟ ଧନ ଦାନ କରିବ । ସେହି ଦାନ ଶୀଳ ବ୍ୟକ୍ତି ଅତି ଦୀର୍ଘପଥ ଲାଭ କରେ (ଅର୍ଥାତ୍ ସ୍ୱର୍ଗକୁ ପଥ ଲାଭ କରେ) । ରଥର ଚକ ଯେପରି ଉପରୁ ତଳକୁ ଘୂରେ, ସେହିପରି ଧନ କେତେବେଳେ ଗୋଟିଏ ଲୋକ ପାଖରୁ ଆଉ ଗୋଟିଏ ଲୋକ ପାଖକୁ ଚାଲିଯାଏ - ଜଣକ ପାଖରେ ସବୁକାଳ ପାଇଁ ରହେ ନାହିଁ । ଯାହାର ମନ ଉଦାର ନୁହେଁ, ତା'ର ଭୋଜନ କରିବା ମିଥ୍ୟା । ଏପରିକି, ତାର ଭୋଜନ ତାର ମୃତ୍ୟୁ ତୁଲ୍ୟ । ଯେ ଦେବତାଙ୍କୁ ଦିଏ ନାହିଁ, ବନ୍ଧୁକୁ ଦିଏ ନାହିଁ , କେବଳ ନିଜେ ଭୋଜନ କରେ, ସେ କେବଳ ପାପ ଭୋଜନ କରେ । କୃଷକ କୃଷିକାର୍ଯ୍ୟ କରି ଅନ୍ନ ଉତ୍ପାଦନ କରେ, ସେ ନିଜ ବାଟେ ଯାଇ ଆପଣା କାର୍ଯ୍ୟ ଦ୍ୱାରା ଶସ୍ୟ ଉତ୍ପାଦନ କରେ । ପୁରୋହିତ ବିଦ୍ୱାନ୍ ହୋଇଥିଲେ ମୂର୍ଖ ଅପେକ୍ଷା ଶ୍ରେଷ୍ଠ । ସେହିପରି

ଦାନଶୀଳ ବ୍ୟକ୍ତି ଦାନ ବିମୁଖ ବ୍ୟକ୍ତିର ଉର୍ଦ୍ଧ୍ୱରେ । ଯାହାର କେବଳ ଗୋଟିଏ ଅଂଶ ଧନ ଅଛି, ସେ ଦୁଇ ଅଂଶ ଧନର ଅଧିକାରୀଙ୍କୁ ଅନୁସରଣ କରେ, ଯାହାର ଦୁଇ ଅଂଶ ଧନ ଅଛି, ସେ ତିନି ଅଂଶ ଧନ ଥିବା ବ୍ୟକ୍ତିର ଅନୁଗମନ କରେ । ଚାରିଅଂଶ ଥିବା ବ୍ୟକ୍ତି ସେମାନଙ୍କ ଉପରେ ଅବସ୍ଥାନ କରେ । ଏହିପରି ଆଗ ପଛ ହୋଇ ଶ୍ରେଣୀ ଲାଗି ରହିଛି । ଅପେକ୍ଷାକୃତ ଅଳ୍ପ ଧନ ଯାହାର, ସେ ଅଧିକ ଧନ ଥିବା ବ୍ୟକ୍ତିକୁ ପୂଜା କରେ । ଦୁଇହାତ ଏକାଭଳି ହୋଇଥିଲେ ବି ଦୁଇଟିର ଧାରଣ ଶକ୍ତି ସମାନ ନୁହେଁ । ଏକା ମା' ପେଟର ଦୁଇଟି ଗାଈ ଏକା ପରିମାଣରେ ଦୁଧ ଦିଅନ୍ତି ନାହିଁ । ଯମଜ ଦୁଇଭାଇଙ୍କର ଶକ୍ତି ସମାନ ହୁଏ ନାହିଁ । ଦୁଇଜଣ ଗୋଟିଏ ବଂଶର ସନ୍ତାନ ହେଲେ ବି ଏକାଭଳି ଦାନଶୀଳ ହୁଅନ୍ତି ନାହିଁ ।

ଏହି ସୂକ୍ତଟି ଅଦ୍ୱିତୀୟ । ସମଗ୍ର ଋଗ୍‌ବେଦରେ ଦାନସମ୍ପର୍କୀୟ ଅନୁରୂପ ସୂକ୍ତ ଆଉ ନାହିଁ ।

୧୦ମ ମଣ୍ଡଳର ୧୦୭ ତମ ସୂକ୍ତଟିର ଦେବତା 'ଦକ୍ଷିଣା', ଅର୍ଥାତ୍ ସୂକ୍ତଟିର ମୁଖ୍ୟ ବିଷୟ ହେଉଛି - ଦକ୍ଷିଣାର ସାର୍ଥକତା । ଏହାକୁ ଏକ ଦାନସ୍ତୁତି ନ କହି ଦକ୍ଷିଣାସ୍ତୁତି କହିଲେ ହେବ । 'ଦକ୍ଷିଣା' ଶବ୍ଦର ଯଦିଚ ଗୋଟିଏ ଅର୍ଥ ଦାନ , ଏହି ସୂକ୍ତରେ ମୁଖ୍ୟତଃ ଯଜ୍ଞର ପୁରୋହିତଙ୍କ ଦକ୍ଷିଣା ସୂଚିତ ହୋଇଅଛି । ୧୧୭ତମ ସୂକ୍ତରେ ଯଜ୍ଞର ଉଲ୍ଲେଖ ନାହିଁ । ଯଜ୍ଞକାଳୀନ ଦାନର ଉଲ୍ଲେଖ ନାହିଁ । କରୁଣାବୋଧ ଉପରେ ପ୍ରତିଷ୍ଠିତ ଦାନ କଥା ଅଛି । ଏହି (୧୦୭ତମ) ସୂକ୍ତରେ ଦକ୍ଷିଣା ପ୍ରଦାନ ଦ୍ୱାରା ଯଜମାନର କିପରି ମଙ୍ଗଳ ସାଧିତ ହୁଏ, ତାହାହିଁ ମୁଖ୍ୟତଃ ସୂଚିତ ହୋଇଅଛି ।

ଏଥିର ଦ୍ୱିତୀୟ ଋକ୍‌ରେ ଦିବ୍ୟ ଋଷି କହୁଛନ୍ତି - ଯେଉଁମାନେ ଦକ୍ଷିଣା ଦିଅନ୍ତି, ସେମାନେ ସ୍ୱର୍ଗରେ ଉଚ୍ଚ ଆସନ ଲାଭ କରନ୍ତି । ଯେଉଁମାନେ ଘୋଟକ ଦାନ କରନ୍ତି, ସେମାନେ ସୂର୍ଯ୍ୟଙ୍କ ସହିତ ମିଳିତ ହୁଅନ୍ତି, ସୁବର୍ଣ୍ଣଦାତାମାନେ ଅମରତ୍ୱ ପ୍ରାପ୍ତ ହୁଅନ୍ତି । ବସ୍ତ୍ରଦାତାମାନେ ସୋମଙ୍କ ନିକଟରେ ସ୍ଥାନ ପାଆନ୍ତି । ଦକ୍ଷିଣା ପ୍ରଦାନକାରୀ ସମସ୍ତେ ଦୀର୍ଘାୟୁ ହୁଅନ୍ତି । (ଉଚ୍ଚା ଦିବି ଦକ୍ଷିଣାବନ୍ତୋ ଅସ୍ଥୁର୍ଯେ ଅଶ୍ୱଦାଃ ସହ ତେ ସୂର୍ଯ୍ୟେଣ । ହିରଣ୍ୟଦା ଅମୃତତ୍ୱଂ ଭଜନ୍ତେ ବାସୋଦାଃ ସୋମ ପ୍ର ତିରନ୍ତ ଆୟୁଃ ।।)

ଦକ୍ଷିଣା ଦ୍ୱାରା ପୁଣ୍ୟ ଯଜ୍ଞକର୍ମ ସମ୍ପୂର୍ଣ୍ଣତା ଲାଭ କରେ । ଦକ୍ଷିଣାଦାନ ପୂଜାର ଏକ ଅଙ୍ଗସ୍ୱରୂପ । ଯେଉଁମାନେ ଯଜ୍ଞ କରନ୍ତି, ବାୟୁ, ସୂର୍ଯ୍ୟ ପ୍ରଭୃତିଙ୍କୁ ହୋମ ଦ୍ରବ୍ୟ ପ୍ରଦାନ କରନ୍ତି, ଅନ୍ୟାନ୍ୟ ଦାନ କରନ୍ତି, ଦକ୍ଷିଣା ସେମାନଙ୍କର ମନସ୍କାମନା ପୂର୍ଣ୍ଣ କରେ । ସପ୍ତ ପୁରୋହିତ ଦକ୍ଷିଣାର ଅଧିକାରୀ ।

ଋଷି ଦକ୍ଷିଣାଦାତାର ସମ୍ମାନ ବୃଦ୍ଧି ସମ୍ପର୍କରେ କହିଅଛନ୍ତି - ''ଯେ ସର୍ବପ୍ରଥମେ ଦକ୍ଷିଣା ଦିଅନ୍ତି, ତାଙ୍କୁ ହିଁ ଆମେ ଲୋକଙ୍କର ରାଜା ମନେ କରୁ ।'' ଯେ ପୁରୋହିତଙ୍କୁ ଦକ୍ଷିଣା ଦେଇ ସନ୍ତୁଷ୍ଟ କରନ୍ତି, ସେ ହିଁ ଯଜ୍ଞର ଋଷି, ବ୍ରହ୍ମା ଓ ଅଧକ୍ଷ ରୂପେ ପରିଚିତ ହୁଅନ୍ତି । ଦକ୍ଷିଣା

ଦାନରୁ ଘୋଟକ, ଗାଭୀଲାଭ ହୁଏ, ସୁବର୍ଣ୍ଣ ଲାଭ ହୁଏ । ଦକ୍ଷିଣାକୁ ସର୍ବୋଚ୍ଚ ସ୍ଥାନ ଦେଇ ଋଷି କହୁଛନ୍ତି ... ''ଆମ୍ଭମାନଙ୍କର ଆତ୍ମାସ୍ୱରୂପ ଆହାରକୁ ଆମେ ଦକ୍ଷିଣାରୁ ଲାଭ କରୁ ।''

କିନ୍ତୁ ୮ମ ଋକ୍‌ରୁ ସୂକ୍ତର ଶେଷ ପର୍ଯ୍ୟନ୍ତ ଋଷି ଯଜ୍ଞର ଦକ୍ଷିଣାଦାତାଙ୍କୁ ଉଲ୍ଲେଖ ନ କରି, ଅନ୍ନଦାତାର ମହତ୍ତ୍ୱ ବର୍ଣ୍ଣନା କରିଅଛନ୍ତି - 'ଭୋଜ (ଅନ୍ନଦାତା)ଙ୍କର ମୃତ୍ୟୁ ନାହିଁ, ତାଙ୍କର ଜୀବନ ସାର୍ଥକ । ସେମାନେ ଦୁଃଖ, କଷ୍ଟ କିଛି ପାଆନ୍ତି ନାହିଁ ।' ଯେପରି ପ୍ରଥମ ମଣ୍ଡଳର ଦାନ ସୂକ୍ତ (୧୨୫ତମ ସୂକ୍ତ)ରେ ସୂର୍ଯ୍ୟ, ଭୂମି, ଜଳ-ସମସ୍ତେ ଦକ୍ଷିଣା ଦାତାର ସେବାରେ ଲାଗନ୍ତି ବୋଲି କୁହାହୋଇଅଛି, ଏଥିରେ ମଧ୍ୟ ସେହିପରି କୁହାହୋଇଅଛି - ଏହି ପୃଥିବୀରେ ବା ସ୍ୱର୍ଗରେ ଯାହା କିଛି ରହିଛନ୍ତି, ସେ ସମସ୍ତେ ସେମାନଙ୍କୁ (ଭୋଜଙ୍କୁ) ଦକ୍ଷିଣା ବା ଦାନ ଦିଅନ୍ତି (୮ମ ଋକ୍) । ତା'ପରେ ଅବଶ୍ୟ ଜାଗତିକ ସୁଖ, ସ୍ୱାଚ୍ଛନ୍ଦ୍ୟ, ସମୃଦ୍ଧିକୁ ଭୋଜଗଣ ପ୍ରାପ୍ତ ହୁଅନ୍ତି ବୋଲି ଉଲ୍ଲେଖ ଅଛି । ଏହି ଭୋଜ (ବା ଅନ୍ନଦାତା)ମାନେ ଦୁଗ୍ଧାଦି ଉତ୍ପାଦନ କରୁଥିବା ଗାଭୀ ସର୍ବପ୍ରଥମେ ଲାଭ କରନ୍ତି, ସୋମର ସାରାଂଶ ଲାଭ କରନ୍ତି । ସୁବେଶା ନାରୀ ସେହିମାନେ ହିଁ ପାଆନ୍ତି । ଉଦ୍ଧତ ଶତ୍ରୁମାନଙ୍କୁ ପରାଜିତ କରନ୍ତି । ସୁସଜ୍ଜିତ ଘୋଟକ ଲାଭ କରନ୍ତି । ନିର୍ମଳ ପୁଷ୍କରିଣୀ, ମନ୍ଦିର ପରି ଗୃହ ତାଙ୍କରି ପାଇଁ । ସେମାନେ ବାହନଯୋଗ୍ୟ ବଳିଷ୍ଠ ଅଶ୍ୱ ପା'ନ୍ତି । ସୁଗଠିତ ରଥ ମଧ୍ୟ ପାଆନ୍ତି । ଯୁଦ୍ଧ ସମୟରେ ଦେବଗଣ ତାଙ୍କୁ ରକ୍ଷା କରନ୍ତି ।

ଏହିପରି ସୂକ୍ତର ଶେଷାଂଶରେ କାମନାପୂର୍ତ୍ତି ପାଇଁ ଅନୁଷ୍ଠିତ ଯଜ୍ଞର ସୁଫଳମାନ ବର୍ଣ୍ଣିତ ହୋଇଅଛି, ପ୍ରାପ୍ତ୍ୟାଶାର ପୂରଣ ସୂଚିତ ହୋଇଅଛି । ନୈତିକତା ଓ ଆଧ୍ୟାତ୍ମିକତା ଦୃଷ୍ଟିରୁ ଉନ୍ନତ ୧୧୭ତମ ସୂକ୍ତରେ ଏସବୁ ନାହିଁ ।

ଏହି କାରଣରୁ ମନେ ହୁଏ - ସାୟଣ ଏହି ସୂକ୍ତରେ ଭୋଜର ଅର୍ଥ ଭୋଜନଦାତା ବା ଦକ୍ଷିଣାଦାତା କରିଅଛନ୍ତି ।

ଦାନଧର୍ମାନୁଶାସନ ଅତୀତରେ ବୈଦିକ ସମାଜକୁ ସୁସଂହତ ଓ ପ୍ରୀତିପୂର୍ଣ୍ଣ କରିଥିଲା ।

******

# ଋଗ୍‌ବେଦରେ ପାପଚେତନା

ଋଗ୍‌ବେଦର ଯେପରି ସଂଖ୍ୟାଧିକ ସୂକ୍ତରେ ଶତ୍ରୁଜନିତ ବିପଦାଶଙ୍କା ଓ ତହିଁରୁ ପରିତ୍ରାଣ କରିବା ପାଇଁ ଇନ୍ଦ୍ରାଦି ଦେବଗଣଙ୍କୁ ପ୍ରାର୍ଥନା ପ୍ରକାଶ ପାଇଅଛି, ସେହିପରି ବହୁ ସଂଖ୍ୟକ ସୂକ୍ତରେ ବାରମ୍ବାର ପାପଚେତନା ଓ ପାପରୁ ମୁକ୍ତିଦାନ କରିବା ପାଇଁ ଆକୁଳ ପ୍ରାର୍ଥନା ମଧ ପ୍ରକାଶ ପାଇଅଛି । ସ୍ୱପାପଜନିତ ଗ୍ଲାନି ଯେପରି ସ୍ତୁତିକାରୀଙ୍କୁ ଅଭିଭୂତ କରିପକାଇଅଛି, ଦେବକୃପା ବ୍ୟତୀତ ସେହି ପାପରୁ ନିଷ୍କୃତି ନାହିଁ । ବାଇବିଲ୍‌ର Old Testament ର ସ୍ତୁତିକାରୀଙ୍କ ମଧରେ, ପରବର୍ତ୍ତୀକାଳର ପ୍ୟୁରିଟାନ୍ (Puritan) ଙ୍କ ଓ କାଲ୍‌ଭିନ୍‌ଙ୍କର ଅନୁଗାମୀଗଣଙ୍କ ମଧ୍ୟରେ ଯେଉଁପରି ପ୍ରବଳ ପାପବୋଧ ପରିଲକ୍ଷିତ ହୁଏ, ସେହିପରି ପ୍ରବଳ ପାପବୋଧ ଅନେକ ସ୍ଥାନରେ ପ୍ରକାଶ ପାଇଛି ଋଗ୍‌ବେଦର ସ୍ତୁତିକାରୀଙ୍କ ମଧରେ । ସ୍ତୁତିକାରୀ କେବଳ ପାପରୁ ନିଷ୍କୃତି ଲୋଡ଼ିନାହାନ୍ତି, ଦେବଦୟା କାମନା କରିଅଛନ୍ତି, କ୍ଷମା ପ୍ରାର୍ଥନା କରିଅଛନ୍ତି ।

୧ମ ମଣ୍ଡଳର ୧୦୬ତମ ସୂକ୍ତରେ ଅଙ୍ଗିରାଙ୍କ ପୁତ୍ର କୁତ୍ସ ଋଷି ବାରମ୍ବାର ଦେବଗଣଙ୍କୁ ପ୍ରାର୍ଥନା କରିଅଛନ୍ତି- ରଥଂ ନ ଦୁର୍ଗାଦ୍‌ବସବଃ ସୁଦାନବୋ ବିଶ୍ୱସ୍ମାନ୍ନୋ ଅହଂସୋ ନିଷ୍ପିପର୍ତନ, ଅର୍ଥାତ୍ ଲୋକେ ଯେପରି ଦୁର୍ଗମ ପଥରୁ ରଥକୁ ଉଦ୍ଧାର କରିଆଣନ୍ତି, ସେହିପରି ସୁଦାନପରାୟଣ ଓ ଆବାସପ୍ରଦାତା ଦେବତାଗଣ ଆମ୍ଭମାନଙ୍କୁ ସମସ୍ତ ପାପରୁ ଉଦ୍ଧାର କରି ପ୍ରତିପାଳନ କରନ୍ତୁ । ସୂକ୍ତର ୭ଟି ଋକ୍ ମଧ୍ୟରୁ ପ୍ରଥମ ୬ଟିରେ ଏହି ପ୍ରାର୍ଥନା ପଂକ୍ତିଟି ଘୋଷାରୂପେ ରହିଅଛି । ଶେଷ ଋକ୍‌ରେ ଋଷି ଅଦିତି, ସବିତା, ମିତ୍ର, ବରୁଣ, ସିନ୍ଧୁ ଓ ଦ୍ୟାବା ପୃଥିବୀଙ୍କୁ ପ୍ରାର୍ଥନା କରିଅଛନ୍ତି - ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ସେହି ମଣ୍ଡଳର ୧୮୫ତମ ସୂକ୍ତରେ ଅଗସ୍ତ୍ୟ ଋଷି ବାରମ୍ବାର ଦ୍ୟାବାପୃଥିବୀଙ୍କୁ ପ୍ରାର୍ଥନା କରିଅଛନ୍ତି- ଦ୍ୟାବା ରକ୍ଷତଂ ପୃଥିବୀ ନୋ ଅଭ୍ୱାତ୍, ଅର୍ଥାତ୍, ହେ ଦ୍ୟାବାପୃଥିବୀ, ଆମ୍ଭମାନଙ୍କୁ ମହାପାପରୁ ରକ୍ଷାକର । ୨ୟରୁ ୮ମ ଋକ୍ ପର୍ଯ୍ୟନ୍ତ ପ୍ରତ୍ୟେକ ଋକ୍‌ର ଶେଷାଂଶରେ ଏହି ପ୍ରାର୍ଥନାଟି ଲକ୍ଷିତ ହେଉଅଛି । ୯ମ ଋକ୍‌ରେ ସ୍ତୁତିକର୍ତ୍ତା ସ୍ୱକୃତ ଦେବୋଦ୍ଦିଷ୍ଟ ଯଜ୍ଞ ସମସ୍ତ ପ୍ରକାର ଆତ୍ମକୃତ ଅପରାଧଜନିତ ପାପ ନିରାକରଣ କରିବାକୁ ସକ୍ଷମ ହେଉ ବୋଲି ପ୍ରାର୍ଥନା କରିଅଛନ୍ତି । ୧୦ମ ଋକ୍‌ରେ ଦ୍ୟାବାପୃଥିବୀଙ୍କୁ ପିତାମାତା ରୂପେ ଜ୍ଞାନକରି ପ୍ରାର୍ଥନା କରାହୋଇଅଛି ନିନ୍ଦାଯୋଗ୍ୟ ପାପରୁ ରକ୍ଷା କରିବା ପାଇଁ- ପାତାମବଦ୍ୟାଦ୍ଦୁରିତାଦଭୀକେ ପିତାମାତା ଚ ରକ୍ଷତାମବୋଭିଃ ।

ସେହିପରି ୯୭ତମ ସୂକ୍ତରେ କୁତ୍ସଋଷି ବାରମ୍ବାର ଅଗ୍ନିଙ୍କୁ ପ୍ରାର୍ଥନା କରିଛନ୍ତି- ଅପ ନଃ ଶୋଶୁଚଦଘମ୍- ଅର୍ଥାତ୍ ଆମ୍ଭମାନଙ୍କର ପାପର ବିନାଶ ହେଉ । ୮ଟି ଋକ୍ ବିଶିଷ୍ଟ ଏହି ସୂକ୍ତର ପ୍ରତ୍ୟେକ ଋକ୍‌ରେ ଦ୍ୱିତୀୟ ପାଦ ହେଉଛି, ଅପ ନଃ ଶୋଶୁଚଦଘମ୍ । ପ୍ରଥମ ଋକ୍‌ରେ ଦୁଇଥର ଏହି ପ୍ରାର୍ଥନା ଅଛି- ଅପ ନଃ ଶୋଶୁଚଦଘମଗ୍ନେ ଶୁଶୁଗ୍ଧ୍ୟା ରୟିମ୍ । ଅପ ନଃ ଶୋଶୁଚଦଘମ୍-

ହେ ଅଗ୍ନି, ଆମ୍ଭମାନଙ୍କର ପାପର ବିନାଶ ହେଉ, ଆମ୍ଭମାନଙ୍କର ଧନ ବୃଦ୍ଧି ହେଉ । ଆମ୍ଭମାନଙ୍କର ପାପର ବିନାଶ ହେଉ । ଧନ ପାଇଁ, ଶୋଭନୀୟ କ୍ଷେତ୍ର ଓ ମାର୍ଗ ପାଇଁ, ପୁତ୍ରପୌତ୍ରାଦି ପାଇଁ ତଥା ଶତ୍ରୁବିନାଶ ପାଇଁ ଋକ୍‌ଗୁଡ଼ିକର ପ୍ରଥମାର୍ଦ୍ଧମାନଙ୍କରେ ପ୍ରାର୍ଥନା କରାହୋଇଅଛି । କିନ୍ତୁ ମୁଖ୍ୟତଃ ପାପର ଧ୍ୱଂସ କାମନା କରାଯାଇଅଛି ।

ଉପରୋକ୍ତ ସୂକ୍ତଗୁଡ଼ିକ ବ୍ୟତୀତ ୧ମ ମଣ୍ଡଳର ବହୁ ସୂକ୍ତରେ ଗୋଟିଏ ଗୋଟିଏ ଋକ୍‌ରେ ଦେବତାଙ୍କୁ ପାପରୁ ତ୍ରାଣ କରିବାକୁ ପ୍ରାର୍ଥନା କରାଯାଇଅଛି ବା ପାପମୁକ୍ତ ବ୍ୟକ୍ତି ପ୍ରଶଂସନୀୟ ଏବଂ ଦେବଗଣଙ୍କ ପ୍ରିୟ ବୋଲି ସୂଚିତ ହୋଇଅଛି । ୯୧ତମ ସୂକ୍ତର ୧୫ଶ ଋକ୍‌ରେ ଗୋତମ ଋଷି ସୋମଙ୍କୁ ପ୍ରାର୍ଥନା କରିଛନ୍ତି- ହେ ସୋମ ! ଅଭିଶାପରୁ ଆମ୍ଭମାନଙ୍କୁ ରକ୍ଷା କର, ପାପରୁ ଆମ୍ଭମାନଙ୍କୁ ରକ୍ଷାକର (ଉରୁଷ୍ୟା ଣୋ ଅଭିଶସ୍ତେଃ ସୋମ ନି ପାହ୍ୟଂହସଃ) ।

୧୮୬ତମ ସୂକ୍ତର ୪ର୍ଥ ଋକ୍‌ରେ ଅଗସ୍ତ୍ୟ ଋଷି ବିଶ୍ୱଦେବଗଣଙ୍କୁ ପ୍ରାର୍ଥନା କରିଅଛନ୍ତି- ହେ ଦେବଗଣ. ଆମ୍ଭେମାନେ ଦିବାନିଶି ତୁମକୁ ପ୍ରଣାମ କରି ପାପ ଜୟ କରିବା ପାଇଁ ସୁଦୋହ୍ୟା ଗାଭୀତୁଲ୍ୟ ତୁମ ନିକଟରେ ଉପନୀତ ହେଉଅଛୁ ।

୧୩୪ ତମ ସୂକ୍ତର ଶେଷ ଋକ୍‌ରେ ବାୟୁ ଦେବତାଙ୍କୁ ସମ୍ବୋଧନ କରି ଋଷି କହୁଅଛନ୍ତି- ତୁମେହିଁ ହୋମକାରୀ ପାପତ୍ୟାଗୀ ବ୍ୟକ୍ତିଙ୍କର ହବ୍ୟ ଗ୍ରହଣ କର ।

୧୦୪ତମ ସୂକ୍ତର ୬ଷ୍ଠ ଋକ୍‌ରେ କୁତ୍ସ ଋଷି ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଅଛନ୍ତି- ଯେଉଁମାନେ ପାପଶୂନ୍ୟ ହୋଇଥିବାରୁ ପ୍ରତ୍ୟେକ ଜୀବର ପ୍ରଶଂସାର ଯୋଗ୍ୟ, ସେମାନଙ୍କ ପ୍ରତି ଆମକୁ ଭକ୍ତିପୂର୍ଣ୍ଣ କର ।

୧୦୫ତମ ସୂକ୍ତର ୧୭ଶ ଋକ୍‌ରେ ଉଲ୍ଲେଖ ଅଛି ଯେ ତ୍ରିତ ପାପରୂପକ କୂପରେ ପଡ଼ି ଦେବଗଣଙ୍କୁ ପ୍ରାର୍ଥନା କରନ୍ତେ ବୃହସ୍ପତି ସେହି ପ୍ରାର୍ଥନା ଶୁଣି ତାଙ୍କୁ ସେଥିରୁ ଉଦ୍ଧାର କରିଥିଲେ ।

୧୩୬ତମ ସୂକ୍ତର ୫ମ ଋକ୍‌ରେ ଋଷି କହିଅଛନ୍ତି ଯେ ଯେଉଁ ବ୍ୟକ୍ତି ମିତ୍ର ଓ ବରୁଣଙ୍କର ସେବାପୂଜା କରେ ତାକୁ ସେମାନେ ପାପରୁ ରକ୍ଷା କରନ୍ତି, ବିଦ୍ୱେଷଶୂନ୍ୟ ହବ୍ୟପ୍ରଦାନକାରୀ ବ୍ୟକ୍ତିକୁ ସକଳ ପାପରୁ ରକ୍ଷା କରନ୍ତି ।

ଏହି ମଣ୍ଡଳର ଓ ଅନ୍ୟାନ୍ୟ ମଣ୍ଡଳର ଏକାଧିକ ସୂକ୍ତରେ ବିଭିନ୍ନ ଦେବଗଣଙ୍କୁ ନିଷ୍ପାପ ବୋଲି ବର୍ଣ୍ଣନା କରାଯାଇଅଛି ।

୧ମ ମଣ୍ଡଳର ୬୪ତମ ସୂକ୍ତର ୨ୟ ଋକ୍‌ରେ ମରୁଦ୍‌ଗଣଙ୍କୁ ଶୁଚିଯୁକ୍ତ ପାପଶୂନ୍ୟ ସୂର୍ଯ୍ୟଙ୍କ ସହିତ ତୁଳନା କରାହୋଇଅଛି ।

୧୬୬ତମ ସୂକ୍ତର ୮ମ ଋକ୍‌ରେ ଅଗସ୍ତ୍ୟ ଋଷି ମରୁଦ୍‌ଗଣଙ୍କ ସ୍ତୁତି କରି କହିଅଛନ୍ତି ଯେ ମରୁଦ୍‌ଗଣ ଯେଉଁ ଲୋକଙ୍କୁ କୁଟିଳତାପୂର୍ଣ୍ଣ ପାପରୁ ଉଦ୍ଧାର କରନ୍ତି... ତାକୁ ଅପରିମିତ ଭୋଗ୍ୟ ଦ୍ରବ୍ୟ ପ୍ରଦାନ କରି ପ୍ରତିପାଳନ କରନ୍ତି ।

୧୧୫ତମ ସୂକ୍ତର ଶେଷ (୬ଷ୍ଠ) ଋକ୍‌ରେ କୁତ୍ସ ଋଷି ଦେବଗଣଙ୍କୁ ପ୍ରାର୍ଥନା କରିଅଛନ୍ତି- ହେ ଦେବଗଣ, ଆଜି ସୂର୍ଯ୍ୟ ଉଦିତ ହୁଅନ୍ତେ ଆମ୍ଭମାନଙ୍କୁ ପାପମୁକ୍ତ କର (ଅଦ୍ୟା ଦେବ ଉଦିତା ସୂର୍ଯ୍ୟସ୍ୟ ନିରଂହସଃ ପିପୃତା ନିରବଦ୍ୟାଦ୍) ।

୧୮୯ତମ ସୂକ୍ତର ୧ମ ଋକ୍‌ରେ ଅଗସ୍ତ୍ୟ ଋଷି ଅଗ୍ନିଙ୍କୁ ପ୍ରାର୍ଥନା କରିଛନ୍ତି- ତୁମେ ଆମ୍ଭମାନଙ୍କ ନିକଟରୁ କୁଟିଳକର୍ମା ପାପକୁ ଦୂରକର । ଅର୍ଥାତ୍ କୁଟିଳତାରୂପକ ପାପ ଦୂର କର ।

୨ୟ ଋକ୍‌ରେ ସ୍ତୁତିର ଫଳସ୍ୱରୂପ ସମସ୍ତ ଦୁର୍ଦ୍ଦମନୀୟ ପାପରୁ ଉଦ୍ଧାର କରିବାକୁ କହିଅଛନ୍ତି ।

୧୯୦ତମ ସୂକ୍ତର ୫ମ ଋକ୍‌ରେ ଅଗସ୍ତ୍ୟ ଋଷି ବୃହସ୍ପତିଙ୍କୁ ପ୍ରାର୍ଥନା କରିଅଛନ୍ତି - ହେ ବୃହସ୍ପତି, ଯେଉଁ ପାପଚିନ୍ତକ ବ୍ୟକ୍ତିଗଣ ବୃହସ୍ପତିଙ୍କୁ ଜୀର୍ଣ୍ଣ ଶୀର୍ଣ୍ଣ ବୃଷଭ ବୋଲି ମନେ କରିଥାଆନ୍ତି, ସେମାନଙ୍କୁ ବାଞ୍ଛନୀୟ ଧନ ପ୍ରଦାନ କରନାହିଁ ।

କେତେକ ସୂକ୍ତରେ ଅତିରିକ୍ତ ପାପବୋଧ ବା ଅପରାଧବୋଧ ଓ ତହିଁରୁ ମୁକ୍ତି ପାଇବା ପାଇଁ ଗଭୀର ବ୍ୟାକୁଳତା ଲକ୍ଷିତ ହୁଏ ।

୧ମ ମଣ୍ଡଳର ୨୩ତମ ସୂକ୍ତର ୨୨ତମ ଋକ୍‌ରେ କଣ୍ୱମୁନିଙ୍କ ପୁତ୍ର ମେଧାତିଥି ଜଳ ଦେବତାଙ୍କୁ ପ୍ରାର୍ଥନା କରିଅଛନ୍ତି- ଇଦମାପଃ ପ୍ର ବହତ ଯତ୍ କିଞ୍ଚ ଦୁରିତଂ ମୟି । ଯଦ୍‌ବାହମଭିଦୁଦ୍ରୋହ ଯଦ୍‌ବା ଶେପ ଉତାନୃତମ୍ । ଅର୍ଥାତ୍, ମୋ ଠାରେ ଯାହା କିଛି ଦୁରିତ ବା ପାପ ଅଛି, ମୁଁ ଯାହା କିଛି ଅନ୍ୟାୟ କରିଅଛି, ଯାହା ମୁଁ ଶାପ ଦେଇଅଛି, ଯେଉଁ ଅସତ୍ୟ କହିଅଛି, ହେ ଜଳ ! ସେ ସମସ୍ତ ଧୋଇ ଦିଅ ।

୨୪ ତମ ସୂକ୍ତର ୧୪ଶ ଋକ୍‌ରେ ଆକୁଳ ଯୂପବଦ୍ଧ ଶୁନଃଶେପ ବରୁଣଙ୍କୁ ପ୍ରାର୍ଥନା କରୁଅଛନ୍ତି- ହେ ରାଜନ୍, ଆମ୍ଭମାନଙ୍କ ଦ୍ୱାରା କୃତ ପାପ (ର ବନ୍ଧନ) ଶିଥିଳ କର ।

ଶେଷ (୧୫ଶ) ଋକ୍‌ରେ ଉପରର ପାଶ, ନୀଚର ପାଶ ଓ ମଧ୍ୟର ପାଶ ଖୋଲି ଶିଥିଳ କରିଦେବାକୁ ଅଦିତିପୁତ୍ର ବରୁଣ ଦେବଙ୍କୁ ପ୍ରାର୍ଥନାକରି ଶୁନଃଶେପ ପ୍ରତିଶ୍ରୁତି ଦେଉଅଛନ୍ତି- ''ଆମେ ତୁମର ବ୍ରତ ଖଣ୍ଡନ ନ କରି ପାପଶୂନ୍ୟ ହୋଇ ରହିବୁ ।'' (ପାଶ ପାପର ଅପର ନାମ- ପାପର ବନ୍ଧନର ପ୍ରତୀକ) । ଏଥିପୂର୍ବରୁ ସେହି ସୂକ୍ତର ୯ମ ଋକ୍‌ରେ ବରୁଣରାଜାଙ୍କୁ ପ୍ରାର୍ଥନା କରି ଶୁନଃଶେପ କହିଛନ୍ତି - ''ନିର୍ଋତିକୁ ପରାହତ କରି ଆମ୍ଭମାନଙ୍କଠାରୁ ଦୂରରେ ରଖ, ଆମ୍ଭେମାନେ ଯେଉଁ ସବୁ ପାପ କରିଅଛୁ, ସେଥିରୁ ଆମକୁ ମୁକ୍ତିକର ।'' ସାୟଣ ତାଙ୍କ ଟୀକାରେ କହିଛନ୍ତି, ନିର୍ଋତି ଅନିଷ୍ଟକାରିଣୀ ପାପ ଦେବୀ । ସେ ଋତ ବା ଚିରନ୍ତନ ନୀତିର ଭଙ୍ଗକାରିଣୀ ହୋଇଥିବାରୁ ନିର୍ଋତି ବୋଲି ଅଭିହିତା ।

୨୫ତମ ସୂକ୍ତର ୧ମ ଋକ୍‌ରେ ଅପରିମିତ ବଳଶାଳୀ ବରୁଣଙ୍କ କ୍ରୋଧର ଉପଶମନ ପାଇଁ ଶୁନଃଶେପ ବିନୀତ ଭାବରେ ମନୁଷ୍ୟଙ୍କ ଭ୍ରମଶୀଳତାର ଦ୍ୱାହି ଦେଇ କହିଅଛନ୍ତି - ଯେଉଁପରି ଲୋକମାନେ (ସାଧାରଣତଃ) ଭ୍ରମ କରନ୍ତି ଆମେ ସବୁ ମଧ୍ୟ ଦିନେ ଦିନେ ତୁମର ବ୍ରତପାଳନରେ ଭ୍ରମ କରିଥାଉ । (ମନୁଷ୍ୟର ଏତାଦୃଶ ଭ୍ରମଶୀଳତା, ସ୍ୱାଭାବିକ ଅପରାଧପରାୟଣତା ଋଗ୍‌ବେଦର ବିଭିନ୍ନ ସୂକ୍ତରେ ସ୍ତୋତା ସ୍ୱୀକାର କରି କ୍ଷମାଭିକ୍ଷା କରିଅଛନ୍ତି) । ସେହି ସୂକ୍ତର ୧୪ଶ ଋକ୍‌ରେ ଋତରକ୍ଷକ, ସୃଷ୍ଟିନିୟାମକ ସର୍ବଦର୍ଶୀ ବରୁଣଙ୍କ ମହତ୍ତ୍ୱ ବର୍ଣ୍ଣନା କରି ଶୁନଃଶେପ କହିଅଛନ୍ତି - ପାପୀଗଣ ଯେଉଁ ଦେବତାଙ୍କ ପ୍ରତି ପାପାଚରଣ କରିପାରନ୍ତି ନାହିଁ ।

ଶେଷ ଋକ୍‌ରେ ପୁନର୍ବାର ଉପରର, ମଧ୍ୟର ଓ ନୀଚର ପାଶ ବିମୋଚନ କରିବାକୁ ସେ ପ୍ରାର୍ଥନା କରିଅଛନ୍ତି । ପ୍ରତୀକାତ୍ମକ ଅର୍ଥରେ ସର୍ବାଙ୍ଗ ସର୍ବଦିଗରୁ ଜଡିତ କରିଥିବା ପାପର ବନ୍ଧନରୁ ମୁକ୍ତି କରିବାକୁ କହିଛନ୍ତି ।

୨୭ତମ ସୂକ୍ତର ତୃତୀୟ ଋକ୍‌ରେ ଶୁନଃଶେପ ଅଗ୍ନି ଦେବତାଙ୍କୁ ପ୍ରାର୍ଥନା କରିଅଛନ୍ତି- ସ ନୋ ଦୂରାଚ୍ଚାସାଚ୍ଚ ନି ମର୍ତ୍ତ୍ୟାଦଘାୟୋଃ । ପାହି ସଦମିଦ୍‌ବିଶ୍ୱାୟୁଃ- ହେ ଅଗ୍ନିଦେବ ! ତୁମେ ଦୂରସ୍ଥ ଓ ସନ୍ନିକଟସ୍ଥ ପାପକର୍ମା ମନୁଷ୍ୟଙ୍କ କବଳରୁ ଆମକୁ ସର୍ବଦା ରକ୍ଷାକର ।

୨୯ତମ ସୂକ୍ତର ୫ମ ଋକ୍‌ରେ ଇନ୍ଦ୍ରବିଦ୍ୱେଷୀକୁ ଗର୍ଦ୍ଦଭରୂପେ ବର୍ଣ୍ଣନା କରି ଶୁନଃଶେପ ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଅଛନ୍ତି - ହେ ଇନ୍ଦ୍ର ! ଏହି ଗର୍ଦ୍ଦଭ ପାପବାକ୍ୟ ଦ୍ୱାରା ତୁମର ଅପବାଦ କରିଅଛି, ତାକୁ ହତ୍ୟା କର (ସମିନ୍ଦ୍ର, ଗର୍ଦ୍ଦଭଂ ମୃଣ ନୁବନ୍ତଂ ପାପୟାମୁୟା ।)

୨ୟ ମଣ୍ଡଳର ୨୩ତମ ସୂକ୍ତର ୪ର୍ଥ ଋକ୍‌ରେ ଗୃତ୍ସମଦ ଋଷି ବୃହସ୍ପତିଙ୍କୁ କହିଅଛନ୍ତି, ''ହେ ବୃହସ୍ପତି,ଯେ ତୁମକୁ ହବ୍ୟ ଅର୍ପଣ କରେ, ତୁମେ ତାକୁ ସତ୍‌ପଥରେ ନେଇଯାଅ ଓ ରକ୍ଷାକର, ପାପ ତାକୁ କବଳିତ କରିପାରେ ନାହିଁ ।''

୨୬ତମ ସୂକ୍ତର ୪ର୍ଥ ଋକ୍‌ରେ ଗୃତ୍ସମଦ ଋଷି ବ୍ରହ୍ମଣସ୍ପତିଙ୍କ ମାହାତ୍ମ୍ୟ ବର୍ଣ୍ଣନା କରି କହିଅଛନ୍ତି - ଯେ ବ୍ରହ୍ମଣସ୍ପତିଙ୍କୁ ସଘୃତ ହବ୍ୟ ପ୍ରଦାନ କରି ସେବାର୍ଚ୍ଚନା କରେ, ବ୍ରହ୍ମଣସ୍ପତି ତାକୁ ....... ପାପରୁ ରକ୍ଷା କରନ୍ତି ...

୨୭ତମ ସୂକ୍ତର ୫ମ ଋକ୍‌ରେ ଗୃତ୍ସମଦ ଋଷି ଅର୍ଯ୍ୟମା, ମିତ୍ର ଓ ବରୁଣଙ୍କୁ ପ୍ରାର୍ଥନା କରିଛନ୍ତି..... ତୁମ୍ଭମାନଙ୍କର ଅନୁଗାମୀ ହୋଇ ମୁଁ ଯେପରି ଗର୍ତ୍ତତୁଲ୍ୟ ପାପସବୁକୁ ତ୍ୟାଗ କରିପାରେ ।

ସେହି ସୂକ୍ତର ୧୪ଶ ଋକ୍‌ରେ କାତର, ଭୀତ, ସ୍ତୋତା ଗୃତ୍ସମଦ ଋଷିଙ୍କ ଅପରାଧବୋଧ ପ୍ରକଟିତ ହୋଇଅଛି, ସେ ବ୍ୟାକୁଳ ହୋଇ ପ୍ରାର୍ଥନା କରିଅଛନ୍ତି- ହେ ଅଦିତି !

ହେ ମିତ୍ର ! ହେ ବରୁଣ ! ଆମ୍ଭେମାନେ ଯଦି ତୁମ ନିକଟରେ କୌଣସି ଅପରାଧ କରିଥାଉଁ, ଦୟାପୂର୍ବକ ଆମ୍ଭମାନଙ୍କୁ କ୍ଷମାକର ।

୧୬ଶ ଋକ୍‌ରେ ବିଦ୍ରୋହୀ ଶତ୍ରୁ ପ୍ରତି ଅଗ୍ନିଙ୍କ ଦ୍ୱାରା ପ୍ରଯୋଜିତ ମାୟା ଓ ପାପରୁ ତାଙ୍କୁ ରକ୍ଷା କରିବାକୁ ଋଷି ଅନୁରୋଧ କରିଛନ୍ତି ।

୨୮ତମ ସୂକ୍ତର ୫ମ ଋକ୍‌ରେ ସେହି ଋଷି ବରୁଣଙ୍କୁ ପ୍ରାର୍ଥନା କରିଅଛନ୍ତି- ହେ ବରୁଣ, ମୋର ପାପ ମୋତେ ରଜ୍ଜୁତୁଲ୍ୟ ବାନ୍ଧିଦେଇଛି । ତାହା ଖୋଲିଦିଅ ।

୬ଷ୍ଠ ଋକ୍‌ରେ ମଧ୍ୟ କହିଅଛନ୍ତି- ବାଛୁରୀକୁ ବାନ୍ଧିଥିବା ରଜ୍ଜୁପରି ମତେ ବାନ୍ଧିଥିବା ପାପର ରଜ୍ଜୁକୁ ଖୋଲିଦିଅ ।

୨୯ତମ ସୂକ୍ତର ୫ମ ଋକ୍‌ରେ ଦେବଗଣଙ୍କୁ ସମ୍ବୋଧନ କରି ଗୃତ୍ସମଦ ଋଷି କହୁଅଛନ୍ତି - ହେ ଦେବଗଣ ! ତୁମରି ଭିତରୁ ଜଣେ ହୋଇ ମୁଁ ବହୁ ପାପ ବିନାଶ କରିଛି ... ହେ ଦେବଗଣ ! ତୁମେ ସମସ୍ତ ପାଶ ଓ ସମସ୍ତ ପାପ ଦୂରୀଭୂତ କର । ୧ମ ଋକ୍‌ରେ ଋଷିଙ୍କର ଅପରାଧବୋଧ ପ୍ରକାଶ ପାଇଅଛି । ଅପରାଧକୁ ବ୍ୟଭିଚାରିଣୀର ଗୁପ୍ତ ପ୍ରଣୟଜନିତ ଗର୍ଭ ସହିତ ତୁଳନା କରି ତାହାକୁ ଦୂରକୁ ନିକ୍ଷେପ କରିବାକୁ ଋଷି ପ୍ରାର୍ଥନା କରିଛନ୍ତି ।

୩୩ତମ ସୂକ୍ତର ୨ୟ ଋକ୍‌ରେ ରୁଦ୍ରଦେବତାଙ୍କୁ ସମ୍ବୋଧନ କରି ଗୃତ୍ସମଦ ଋଷି କହୁଅଛନ୍ତି - ଆମ୍ଭମାନଙ୍କର ପାପ ସମ୍ପୂର୍ଣ୍ଣରୂପେ ଦୂରୀଭୂତ କର ।

୩ୟ ଋକ୍‌ରେ ପୁଣି ପ୍ରାର୍ଥନା କରୁଅଛନ୍ତି- ହେ ବଜ୍ରବାହୁ... ତୁମେ ଆମ୍ଭମାନଙ୍କୁ ଅପରତୀରକୁ ନେଇଯାଅ (ଅର୍ଥାତ୍ ପାପକୁ ଅତିକ୍ରମ କରାଇଦିଅ), ପାପ ଯେପରି ଆମ ସମୀପକୁ ନ ଆସେ ।

ପୁନରାୟ ୬ଷ୍ଠ ଋକ୍‌ରେ କାମନା ପ୍ରାର୍ଥନା କରୁଅଛନ୍ତି-ରୌଦ୍ରକ୍ଲିଷ୍ଟ ମନୁଷ୍ୟ ଯେପରି ଛାୟା ଲାଭ କରେ , ମୁଁ ମଧ୍ୟ ସେହିପରି ପାପବର୍ଜିତ ହୋଇ ରୁଦ୍ରପ୍ରଦତ୍ତ ସୁଖ ଲାଭ କରିବି ଓ ତାଙ୍କର ସେବାର୍ଚ୍ଚନା କରିବି । ୮ମ ଋକ୍‌ରେ ଦୈବୀପାପର ବିନାଶ କରି କ୍ଷମା କରିବାକୁ ଋଷି ରୁଦ୍ରଙ୍କୁ ଯାଚଞ୍ଚା କରିଛନ୍ତି । ୩୪ତମ ସୂକ୍ତରେ ମରୁଦ୍‌ଗଣ ଯଜମାନଙ୍କୁ ପାପରୁ ରକ୍ଷା କରନ୍ତି ବୋଲି ଉଲ୍ଲେଖ ଅଛି ।

ତୃତୀୟ ମଣ୍ଡଳର ୮ମ ସୂକ୍ତର ୨ୟ ଋକ୍‌ରେ ଯୂପ ଦେବତା ବା ବନସ୍ପତିଙ୍କୁ ବିଶ୍ୱାମିତ୍ର ପ୍ରାର୍ଥନା କରିଅଛନ୍ତି- ଆମ୍ଭମାନଙ୍କର ପାପ ଦୂରୀଭୂତ କରି ସୁମହତ୍ ସମ୍ପତ୍ତି ଆମକୁ ପ୍ରଦାନ କରିବାପାଇଁ ବର୍ଦ୍ଧିତ ହୁଅ ।

୧୫ଶ ସୂକ୍ତର ୩ୟ ଋକ୍‌ରେ ଉତ୍କୀଳ ଋଷି ଅଗ୍ନିଙ୍କୁ ପ୍ରାର୍ଥନା କରିଅଛନ୍ତି- ଆମ୍ଭମାନଙ୍କ ପାପ ଦୂର କର ।

ବିଂଶତମ ସୂକ୍ତର ୪ର୍ଥ ଋକ୍‌ରେ ଗାଥୀ ଋଷି ବିଶ୍ୱାସ ପ୍ରକଟିତ କରିଅଛନ୍ତି ଯେ ସତ୍ୟବାନ୍, ସନାତନ ଅଗ୍ନିଦେବ ସ୍ତୋତାଙ୍କୁ ସମସ୍ତ ଦୁରିତ ବା ପାପକୁ ଅତିକ୍ରମ କରାଇଦେବେ ।

୨୭ତମ ସୂକ୍ତର ୩ୟ ଋକ୍‌ରେ ବିଶ୍ୱାମିତ୍ର ବଂଶୀୟ ଋଷିଗଣ ଦମ୍ଭର ସହିତ କହିଛନ୍ତି ଯେ ସେମାନେ ଯଥାଯୋଗ୍ୟ ହବ୍ୟ ପ୍ରସ୍ତୁତ କରି ଅଗ୍ନିଙ୍କୁ ସେଠାରେ (ଯଜ୍ଞସ୍ଥଳରେ) ରଖିବାକୁ ସମର୍ଥ ହେବେ ଓ ପାପ ଅତିକ୍ରମ କରିପାରିବେ ।

୩୩ତମ ସୂକ୍ତର ଶେଷ ଋକ୍‌ରେ ବିପାଶା ଓ ଶତଦ୍ରୁ ନଦୀଦ୍ୱୟଙ୍କୁ ପାପରହିତା ବୋଲି ବର୍ଣ୍ଣନା କରାହୋଇଅଛି ।

୪ର୍ଥ ମଣ୍ଡଳର ୧ମ ସୂକ୍ତର ୪ର୍ଥ ଋକ୍‌ରେ ବାମଦେବ ଋଷି ଅଗ୍ନିଙ୍କୁ ପ୍ରାର୍ଥନା କରିଅଛନ୍ତି - ହେ ଅଗ୍ନି... ତୁମେ ଆମ୍ଭମାନଙ୍କୁ ସମସ୍ତ ପ୍ରକାର ପାପରୁ ପ୍ରକୃଷ୍ଟରୂପେ ମୁକ୍ତ କର (ଶୋଶୁଚାନୋ ବିଶ୍ୱା ଦ୍ୱେଷାଂସି ପ୍ର ମୁମୁଗ୍‌ଧ୍ୟସ୍ମଦ୍)

୧୨ଶ ସୂକ୍ତର ୪ର୍ଥ ଋକ୍‌ରେ ଅଗ୍ନିଙ୍କୁ ବାମଦେବ ଋଷି ପ୍ରାର୍ଥନା କରିଛନ୍ତି- ଯଦି ଆପଣଙ୍କର ଅନୁଗାମୀମାନଙ୍କ ମଧ୍ୟରେ ଆମ୍ଭେମାନେ ଅଜ୍ଞତାବଶତଃ କୌଣସି ପାପ କରିଥାଉଁ, ତା'ହେଲେ ଆପଣ ଆମ୍ଭମାନଙ୍କୁ ପୃଥିବୀ ସମକ୍ଷରେ ସମ୍ପୂର୍ଣ୍ଣ ଭାବରେ ନିଷ୍ପାପ କରିଦିଅନ୍ତୁ । ହେ ଅଗ୍ନି, ଆମ୍ଭମାନଙ୍କର ସର୍ବତ୍ର ଅବସ୍ଥିତ (ପାଶସମୂହ ତୁଲ୍ୟ) ପାପସମୂହକୁ ଶିଥିଳ କରିଦିଅ ।

୫ମ ଋକ୍‌ରେ ପୁଣି ପ୍ରାର୍ଥନା କରିଛନ୍ତି- ହେ ଯବିଷ୍ଠ ଅଗ୍ନି, ଆମେ ତୁମର ବନ୍ଧୁ, ଆମେ ଦେବତାମାନଙ୍କ ନିକଟରେ ଓ ମନୁଷ୍ୟମାନଙ୍କ ନିକଟରେ ଯେଉଁ ପାପ କରିଅଛୁ,ସେହି ବିରାଟ, ବ୍ୟାପକ ପାପଦ୍ୱାରା ଯେପରି ଆମେ ସବୁବେଳେ ବାଧାପ୍ରାପ୍ତ ନ ହେଉ । ଆମର ପୁତ୍ରପୌତ୍ରାଦିଙ୍କୁ ତୁମେ ପାପର ଶାସ୍ତି ଓ ପୁଣ୍ୟର ସୁଖ ପ୍ରଦାନ କର ।

ଶେଷ(୬ଷ୍ଠ) ଋକ୍‌ରେ ଋଷି ବାମଦେବ ବସୁଗଣଙ୍କୁ ପ୍ରାର୍ଥନା କରିଛନ୍ତି- ତୁମେ ଯେପରି ବସୁପ୍ରଦାନକାରୀ ଗୌରୀ ଧେନୁକୁ ମୁକ୍ତ କରିଥିଲ, ସେହିପରି ଆମ୍ଭମାନଙ୍କୁ ପାପରୁ ମୁକ୍ତ କର ।

୨ୟ ସୂକ୍ତର ୮ମ ଋକ୍‌ରେ ବାମଦେବ ଋଷି ଯେଉଁ ଯଜମାନ ଯଥାବିଧି ହବ୍ୟ ପ୍ରଦାନ କରେ, ତାକୁ ପାପରୁ ରକ୍ଷା କରିବାକୁ ପ୍ରାର୍ଥନା କରିଛନ୍ତି ।

୧୧ଶ ଋକ୍‌ରେ ପାପ ଓ ପୁଣ୍ୟକୁ ପୃଥକ୍ କରିବାକୁ ବିଦ୍ୱାନ୍ ଅଗ୍ନିଙ୍କୁ ଋଷି ପ୍ରାର୍ଥନା କରିଛନ୍ତି ।

(ଏ ପ୍ରକାର ପ୍ରାର୍ଥନା ବିଭିନ୍ନ ମଣ୍ଡଳରେ ବିଭିନ୍ନ ସୂକ୍ତରେ ସ୍ଥାନେ ସ୍ଥାନେ ପ୍ରକାଶ ପାଇଅଛି । ମନେ ହୁଏ ଯେପରି ସ୍ତୋତାମାନେ ଅଜ୍ଞତାବଶତଃ ପାପ ଓ ପୁଣ୍ୟର ପାର୍ଥକ୍ୟ ବିଷୟରେ ସନ୍ଦିହାନ ହୋଇ ପଡିଛନ୍ତି ) ।

୧୧ଶ ସୂକ୍ତର ୫ମ ଋକ୍‌ରେ ପ୍ରାୟ ଅନୁରୂପ ଭାବନା ପ୍ରକାଶ ପାଇଛି । ଋଷି ଅଗ୍ନିଙ୍କୁ କହୁଛନ୍ତି- ତୁମେ ସମସ୍ତ ପ୍ରକାର ପାପକୁ (ପୁଣ୍ୟଠାରୁ) ପୃଥକ୍ କର ।

ଶେଷ (୬ଷ୍ଠ) ଋକ୍‌ରେ ସେ ପ୍ରାର୍ଥନା କରିଛନ୍ତି - ଯଜମାନଗଣଙ୍କର ସୁପାଳକ ତୁମେ । ତେଣୁ ତୁମେ ଆମ୍ଭମାନଙ୍କଠାରୁ ମତିହୀନତା ଦୂରୀଭୂତ କର, ଆମ୍ଭମାନଙ୍କ ନିକଟରୁ ପାପ ଦୂରୀଭୂତ କର, ସମସ୍ତ ପ୍ରକାର ଦୁଷ୍ଟବୁଦ୍ଧି ଦୂର କର ।

୫ମ ସୂକ୍ତର ୫ମ ଋକ୍‌ରେ ବାମଦେବ ଅଗ୍ନିଙ୍କୁ କହୁଛନ୍ତି- ଭ୍ରାତୃଶୂନ୍ୟା, କୁପଥଗାମିନୀ ନାରୀ ତୁଲ୍ୟ, ସ୍ୱାମୀଦ୍ରୋହିଣୀ, ଦୁଷ୍ଟାରିଣୀ ସ୍ତ୍ରୀ ତୁଲ୍ୟ, ପାପୀ, ଋତବିଚ୍ୟୁତ, ଅସତ୍ୟ ବ୍ୟକ୍ତିମାନେ ଏହି ଗଭୀର ପଦ (ସାୟଣଙ୍କ ଟୀକାନୁଯାୟୀ ନରକ) ଉତ୍ପାଦନ କରିଅଛନ୍ତି ।

୪ର୍ଥ ସୂକ୍ତର ୧୪ଶ ଋକ୍‌ରେ ଋଷି ଅଗ୍ନିଙ୍କୁ ସତ୍ୟପ୍ରସାରକ ପାପବିନାଶକ ରୂପେ ସମ୍ବୋଧନ କରିଅଛନ୍ତି ।

୩ୟ ସୂକ୍ତର ୫ମ ଋକ୍‌ରେ ସନ୍ଦେହାକୁଳ ବାମଦେବ ଅଗ୍ନିଙ୍କୁ କ୍ଷୋଭର ସହିତ ପଚାରୁଛନ୍ତି... ତୁମେ କାହିଁକି ଆମର ପାପ ପାଇଁ ବରୁଣଙ୍କ ସମ୍ମୁଖରେ, ସୂର୍ଯ୍ୟଙ୍କ ସମ୍ମୁଖରେ ନିନ୍ଦା କରୁଛ ? କଣ ଆମର ଅପରାଧ ?

କିନ୍ତୁ ପରେ ପାପ ସ୍ୱୀକାର କରି ୧୪ଶ ଋକ୍‌ରେ ପ୍ରାର୍ଥନା କରୁଅଛନ୍ତି- ଆମର ସୁଦୃଢ ପାପ ବିନାଶ କର ।

୨୩ତମ ସୂକ୍ତରେ ଋଷି କହିଅଛନ୍ତି- ଋତଦେବଙ୍କୁ ସ୍ତବକଲେ ପାପ ନାଶ ହୁଏ ।

୫ମ ମଣ୍ଡଳର ୩ୟ ସୂକ୍ତର ୭ମ ଋକ୍‌ରେ ବସୁଶ୍ରୁତ ଋଷି ଅଗ୍ନିଙ୍କୁ ପ୍ରାର୍ଥନା କରୁଅଛନ୍ତି - ଯେଉଁ ବ୍ୟକ୍ତି ଆମ୍ଭମାନଙ୍କ ପ୍ରତି ଅପରାଧ ବା ପାପ କରେ ସେହି ପାପୀ ବ୍ୟକ୍ତି ପ୍ରତି ଅଗ୍ନି ପାପବ୍ୟବହାର କରନ୍ତୁ । ହେ ବିଦ୍ୱାନ୍ ଅଗ୍ନି ! ଯେଉଁ ବ୍ୟକ୍ତି ଅପରାଧ ଓ ପାପ ଉଭୟଦ୍ୱାରା ଆମ୍ଭମାନଙ୍କୁ କଷ୍ଟ ଦିଏ, ସେହି ପାପୀକୁ ବିନାଶ କର । ୯ମ ଋକ୍‌ରେ ଅଗ୍ନିଙ୍କୁ ପିତାରୂପେ ସମ୍ବୋଧନ କରି କୁହାଯାଇଛି- ଯେଉଁ ବିଦ୍ୱାନ୍ ପୁତ୍ର ତୁମପାଇଁ ହବ୍ୟ ବହନ କରି ଆଣେ ତୁମେ ତାକୁ ତ୍ରାଣ କର ଓ ପାପରୁ ବିଚ୍ଛିନ୍ନ କରି ରଖ ।

୩୪ତମ ସୂକ୍ତର ୪ର୍ଥ ଋକ୍‌ରେ ଇନ୍ଦ୍ର, ପାପୀ ମଧ୍ୟ ହବ୍ୟ ପ୍ରଦାନ କଲେ ତାହା ଗ୍ରହଣ କରନ୍ତି ବୋଲି ସମ୍ବରଣ ଋଷି କହିଅଛନ୍ତି- ଯେ ପିତା, ମାତା ଓ ଭ୍ରାତାକୁ ସ୍ୱୟଂ ହତ୍ୟା କରିଅଛି, ସେହିପରି ବ୍ୟକ୍ତିଠାରୁ ମଧ୍ୟ ଇନ୍ଦ୍ର ଦୂରକୁ ଚାଲିଯାଆନ୍ତି ନାହିଁ । ତା'ର ହବ୍ୟ ମଧ୍ୟ ଗ୍ରହଣ କରିବାକୁ ଆଗ୍ରହୀ ହୁଅନ୍ତି । ଶାସକ, ଧନାଢ୍ୟ ଇନ୍ଦ୍ର ପାପରୁ ବି ବିଚଳିତ ହୁଅନ୍ତି ନାହିଁ । ଅର୍ଥାତ୍ ପାପକର୍ମା ତାଙ୍କୁ ହବ୍ୟ ପ୍ରଦାନ କଲେ ଇନ୍ଦ୍ର ତା ପ୍ରତି ବିମୁଖ ହୁଅନ୍ତି ନାହିଁ ।

ମିତ୍ର ଓ ବରୁଣ ସତ୍ୟଦର୍ଶୀ ଓ ସତ୍ୟରକ୍ଷକ । ପାପୀଙ୍କୁ ସେମାନେ ସାଧାରଣତଃ ଦଣ୍ଡ ଦିଅନ୍ତି । କିନ୍ତୁ ପାପୀ ବ୍ୟକ୍ତି ହବ୍ୟଦାତା ହୋଇଥିଲେ ତା' ପ୍ରତି ସେମାନେ କ୍ଷମାଶୀଳ ହୁଅନ୍ତି ।

୬୫ତମ ସୂକ୍ତର ୪ର୍ଥ ଋକ୍‌ରେ ଗାତହବ୍ୟ ଋଷି କହୁଛନ୍ତି ଯେ ମିତ୍ରଦେବ ପାପକର୍ମା ବ୍ୟକ୍ତିକୁ ମଧ୍ୟ ବିରାଟ ଗୃହକୁ (ସ୍ୱର୍ଗକୁ) ଯିବାର ଉପାୟ ବତାଇଦିଅନ୍ତି । ହିଂସ୍ରକର୍ମ କରୁଥିବା ଅନୁଚର ମଧ ମିତ୍ରଙ୍କର ଅନୁଗ୍ରହ ଲାଭକରେ । ( ମିତ୍ର ଅଂହୋଷ୍ଚିଦାଦୁରୁ କ୍ଷୟାୟ ଗାତୁଂ ବନତେ । ମିତ୍ରସ୍ୟହି ପ୍ରତୁର୍ବତଃ ସୁମତିରସ୍ତି ବିଧତଃ) । ବରୁଣଙ୍କ ପରି  ମିତ୍ର ମଧ୍ୟ ସମୟ ସମୟରେ କ୍ଷମାଶୀଳ ।

ଭାଗବତର ଅଜାମିଳ ଉପାଖ୍ୟାନର ଅତି ପ୍ରାଚୀନ ଏକ ସୂଚନା ଏଥିରେ ମିଳୁଅଛି ।

ସ୍ତୋତାଙ୍କର ଅପରାଧବୋଧ ଓ କ୍ଷମାର ଆଶା ପ୍ରକାଶ ପାଇଛି ବରୁଣଙ୍କ ପ୍ରତି ଉଦ୍ଦିଷ୍ଟ ୮୫ତମ ସୂକ୍ତର ୭-୮ତମ  ଋକ୍ ଦୁଇଟିରେ -ହେ ବରୁଣ, ଆମେ ସବୁ କେତେବେଳେ ଯଦି କୌଣସି ଦାନଶୀଳ ବ୍ୟକ୍ତି,ମିତ୍ର, ବୟସ୍ୟ, ଭ୍ରାତା, ନିକଟ-ପ୍ରତିବେଶୀ ବା ବାକ୍‌ଶକ୍ତିବିହୀନ ବ୍ୟକ୍ତି ପ୍ରତି କିଛି ଅନ୍ୟାୟ କରିଥାଉ, ତା'ହେଲେ ତାହା ନଷ୍ଟ କରିଦିଅ । ହେ ବରୁଣ ଦେବ, ଦ୍ୟୁତକ୍ରୀଡାରେ ପ୍ରବଞ୍ଚକ ଖେଳାଳୀପରି ଯଦି ଆମେ ଜ୍ଞାତସାରରେ ହେଉ ବା ଅଜ୍ଞତାବଶତଃ ହେଉ କିଛି ଅପରାଧ କରିଥାଉ, ତା' ହେଲେ ବନ୍ଧନ ଫୁଗୁଲା କଲାପରି ତହିଁରୁ ଆମକୁ ମୁକ୍ତ କର ।

୬ଷ୍ଠ ମଣ୍ଡଳର ୨ୟ ସୂକ୍ତର ୧୧ଶ ଋକ୍‌ରେ ଭରଦ୍ୱାଜ ଋଷି ଅଗ୍ନିଙ୍କୁ ଶତ୍ରୁ, ପାପ ଓ କଷ୍ଟରୁ ଉଦ୍ଧାର ପାଇବା ପାଇଁ ଓ ପୂର୍ବଜନ୍ମକୃତ ପାପରୁ ମୁକ୍ତି ଲାଭ କରିବା ପାଇଁ ପ୍ରାର୍ଥନା କରିଅଛନ୍ତି । ସେହି  ସୂକ୍ତର ୪ର୍ଥ ଋକ୍‌ରେ ଯଜ୍ଞକର୍ତ୍ତା ଅଗ୍ନିଙ୍କ ଦ୍ୱାରା ସୁରକ୍ଷିତ ହୋଇ ଭୀଷଣ ପାପ ତୁଲ୍ୟ ଶତ୍ରୁଗଣଙ୍କୁ ପରାଭୂତ କରେ ବୋଲି ସେ କହିଅଛନ୍ତି । ୩ୟ ସୂକ୍ତର ୧ମ ଋକ୍‌ରେ ଯଥାଯଥ ଯଜ୍ଞାନୁଷ୍ଠାନକାରୀ ଯଜମାନଙ୍କୁ ଅଗ୍ନି, ମିତ୍ର ଓ ବରୁଣଙ୍କ ସହିତ ମିଶି ନିଜ ତେଜ ବଳରେ ପାପରୁ ରକ୍ଷା କରନ୍ତି ଓ ୨ୟ ଋକ୍‌ରେ ପବିତ୍ର ଯଜ୍ଞଶୀଳ ବ୍ୟକ୍ତିକୁ ପାପ ବା ଗର୍ବ ସ୍ପର୍ଶ କରେ ନାହିଁ ବୋଲି ଋଷି କହିଅଛନ୍ତି ।

୪ର୍ଥ ସୂକ୍ତର ୮ମ ଋକ୍‌ରେ ସ୍ତୋତା ପ୍ରାର୍ଥନା କରିଅଛନ୍ତି- ପାପରୁ ଆମକୁ ତ୍ରାଣ କର । ୧୫ଶ ସୂକ୍ତର ୧୨ଶ ଋକ୍‌ରେ ମଧ୍ୟ ଅନୁରୂପ ପ୍ରାର୍ଥନା ଲକ୍ଷିତ ହୁଏ - ତୁମେ ହିଁ ଆମ୍ଭମାନଙ୍କୁ ପାପରୁ ଉଦ୍ଧାର କର ।

୧୬ଶ ସୂକ୍ତର ୩୧ତମ ଋକ୍‌ରେ ହିଂସ୍ର, ଅସ୍ତ୍ରଧାରୀ ଶତ୍ରୁଠାରୁ ରକ୍ଷା କରିବାକୁ ପ୍ରାର୍ଥନା କରାଯିବା ସଙ୍ଗେ ସଙ୍ଗେ ପାପରୁ ମଧ୍ୟ ରକ୍ଷା କରିବାକୁ ପ୍ରାର୍ଥନା କରାଯାଇଅଛି । ପୂର୍ବ (୩୦ତମ) ଋକ୍‌ରେ ମଧ୍ୟ ଅନୁରୂପ ସ୍ତୁତି କରାଯାଇଅଛି ।

୧୯ଶ ସୂକ୍ତର ୪ର୍ଥ ଋକ୍‌ରେ ଭରଦ୍ୱାଜ ଇନ୍ଦ୍ରଙ୍କୁ ପ୍ରାର୍ଥନା କରିଅଛନ୍ତି- ହେ ଇନ୍ଦ୍ର! ତୁମର ପୁରାତନ ସ୍ତୋତୃଗଣଙ୍କ ପରି ଆମେ ଯେପରି ହିଂସାଶୂନ୍ୟ, ପାପଶୂନ୍ୟ, ଅନିନ୍ଦ୍ୟ ହୋଇ ରହୁ ।

୨ୟ ସୂକ୍ତ ପରି ୧୪ଶ ସୂକ୍ତରେ (୬ଷ୍ଠ ଋକ୍) ମଧ୍ୟ ଭରଦ୍ୱାଜ ଇନ୍ଦ୍ରଙ୍କୁ ସ୍ତୁତି କରିଅଛନ୍ତି - ଆମେ ଯେପରି ଶତ୍ରୁ, ପାପ ଓ କଷ୍ଟସବୁରୁ ପାରି ହେଉ ।

୫୧ତମ ସୂକ୍ତର ଶେଷ ଋକ୍‌ରେ ଋଜିଶ୍ୱା ଋଷି ପାପଶୂନ୍ୟ ପଥରେ (ଦେବକୃପାରୁ) ଉପନୀତ ହୋଇଅଛନ୍ତି ବୋଲି ଆନନ୍ଦ ପ୍ରକାଶ କରିଛନ୍ତି । କାରଣ ସେହି ପଥରେ ଗଲେ ଶତ୍ରୁ ବିନଷ୍ଟ ହୁଅନ୍ତି ଓ ଧନ ଲାଭ ହୁଏ ।

୫୬ତମ ସୂକ୍ତର ଶେଷ ଋକ୍‌ରେ ପୂଷା ଦେବଙ୍କୁ ଋଷି ପ୍ରାର୍ଥନା କରିଅଛନ୍ତି ତାଙ୍କୁ ପାପଠାରୁ ଦୂରରେ ରଖିବାକୁ । ତା' ହେଲେ ସେ ସୁଚାରୁରୂପେ ଯଜ୍ଞ କରିପାରିବେ ।

୬୬ତମ ସୂକ୍ତର ୪ର୍ଥ ଋକ୍‌ରେ କୁହାହୋଇଅଛି, ମରୁଦ୍‌ଗଣ ସ୍ତୋତାଗଣଙ୍କର ଅନ୍ତଃକରଣରେ ଅବସ୍ଥାନ କରି ସମସ୍ତ ପାପ କ୍ଷାଳନ କରନ୍ତି ।

୬୭ତମ ସୂକ୍ତରେ ମିତ୍ର ଓ ବରୁଣଙ୍କୁ ସ୍ତୁତି କରାଯାଇଅଛି- ତୁମେମାନେ ହବ୍ୟପ୍ରଦାନକାରୀର ପାପ ବିନାଶ କର । ୭୪ତମ ସୂକ୍ତରେ ସୋମ ଓ ରୁଦ୍ରଙ୍କୁ ନିର୍ଋତି (ପାପ ଦେବତା)ଙ୍କୁ ପରାଭୂତ କରିବାକୁ ଓ ସ୍ତୋତାଗଣଙ୍କ କୃତ ଯେଉଁ ପାପ ସେମାନଙ୍କର ଶରୀରକୁ ବାନ୍ଧି ରଖିଛି, ତାକୁ ଶିଥିଳ କରିବାକୁ ଭରଦ୍ୱାଜ ପ୍ରାର୍ଥନା କରିଅଛନ୍ତି ।

୭ମ ମଣ୍ଡଳର ୧୫ଶ ସୂକ୍ତ (୩ୟ ଋକ୍)ରେ ବସିଷ୍ଠ ଋଷି କାମନା କରିଛନ୍ତି- ସେହି ଅଗ୍ନି ଆମ୍ଭମାନଙ୍କର ଅମାତ୍ୟ, ଧନ (ପୈତୃକ, ପାରିବାରିକ ଧନ ବା ପାରମ୍ପରିକ ଯଜ୍ଞ)କୁ ସମସ୍ତ ବିପଦରୁ ରକ୍ଷା କରନ୍ତୁ ଓ ଆତ୍ମକୃତ ପାପରୁ ଆମ୍ଭମାନଙ୍କ ରକ୍ଷାକରନ୍ତୁ । ୧୩ଶ ଋକ୍‌ରେ ପୁଣି ଅଗ୍ନିଙ୍କୁ ପ୍ରାର୍ଥନା କରିଅଛନ୍ତି- ଆମର ପାପରୁ ତୁମେ ଆମକୁ ରକ୍ଷାକର । ଶେଷ (୧୫ଶ) ଋକ୍‌ରେ ମଧ୍ୟ ଅନୁରୂପ ପ୍ରାର୍ଥନା କରିଅଛନ୍ତି - ତୁମେ ଆମର ପାପକାମୀ ବ୍ୟକ୍ତିଠାରୁ ଆମକୁ ଦିବାନିଶି ରକ୍ଷାକର (ତ୍ୱଂ ନଃ ପାହ୍ୟଂହସୋ ଦୋଷାବସ୍ତରଘାୟତଃ । ଦିବା ନକ୍ତମଦାଭ୍ୟ) ।

୨୦ଶ ସୂକ୍ତର ୧ମ ଋକ୍‌ରେ ଇନ୍ଦ୍ର ମହାପାପରୁ ସ୍ତୋତୃଗଣଙ୍କୁ ତ୍ରାଣ କରନ୍ତି ବୋଲି ବସିଷ୍ଠ କହିଛନ୍ତି (ତ୍ରତା ନ ଇନ୍ଦ୍ର ଏନସୋ ମହଶ୍ଚିଦ୍) ।

୬୦ତମ ସୂକ୍ତର ୬ଷ୍ଠ ଋକ୍‌ରେ ମିତ୍ରବରୁଣଙ୍କ ବିଷୟରେ ସ୍ତୋତା ବସିଷ୍ଠ କହିଅଛନ୍ତି - ଏମାନେ ସଚ୍ଚିତ୍ତ, ଯଜ୍ଞାନୁଷ୍ଠାନଶୀଳ ବ୍ୟକ୍ତି ନିକଟକୁ ଯାଆନ୍ତି, ତାର ପାପ ବିନାଶ କରନ୍ତି, ତାକୁ ସୁପଥରେ ନେଇଯାଆନ୍ତି । ୬୬ତମ ସୂକ୍ତର ୪ର୍ଥ ଋକ୍‌ରେ ମିତ୍ର, ସବିତା, ଅର୍ଯମା ଓ ଭଗଙ୍କୁ ପାପନାଶକ ବୋଲି ଅଭିହିତ କରି ୫ମ ଋକ୍‌ରେ ସେମାନଙ୍କୁ ସ୍ୱକୀୟ ପାପ ଦୂର କରିବାକୁ ପ୍ରାର୍ଥନା କରିଅଛନ୍ତି ।

୭୧ତମ ସୂକ୍ତର ୫ମ ଋକ୍‌ରେ ଅଶ୍ୱିଦ୍ୱୟ ଅତ୍ରିମୁନିଙ୍କୁ ପାପ ଓ ଅନ୍ଧକାରରୁ ତ୍ରାଣ କରିଥିଲେ ବୋଲି ଉଲ୍ଲେଖ କରାଯାଇଅଛି ।

୮୨ତମ ସୂକ୍ତର ୭ମ ଋକ୍‌ରେ ସୂଚିତ ହୋଇଅଛି ଯେ ଯେଉଁ ବ୍ୟକ୍ତିର ଯଜ୍ଞାନୁଷ୍ଠାନକୁ ଇନ୍ଦ୍ର ଓ ବରୁଣ ଯାଆନ୍ତି, ସେହି ବ୍ୟକ୍ତି ନିକଟକୁ କୌଣସି ପ୍ରକାର ବାଧା ବା ପାପ, ଦୁରିତ ବା ସନ୍ତାପ ଯାଇପାରେ ନାହିଁ । ୮୪ତମ ସୂକ୍ତର ୨ୟ ଋକ୍‌ରେ ପାପକର୍ମୀଙ୍କୁ ବନ୍ଧନ କରିବାକୁ ସେମାନଙ୍କୁ ବସିଷ୍ଠ ପ୍ରାର୍ଥନା କରିଅଛନ୍ତି ।

୮୬ତମ ସୂକ୍ତର ତୃତୀୟ ଓ ଚତୁର୍ଥ ଋକ୍‌ରେ ବରୁଣଙ୍କ କ୍ରୋଧରେ ବ୍ୟାକୁଳ ସ୍ତୋତା ବରୁଣଙ୍କୁ ତାଙ୍କର ପାପର ସ୍ୱରୂପ ବିଷୟରେ ପ୍ରଶ୍ନ କରିଅଛନ୍ତି । ତାହା ଜାଣିଲେ ସେ ତାହା ତ୍ୟାଗ କରି ବରୁଣଙ୍କୁ ନମସ୍କାର କରି ତାଙ୍କ ନିକଟକୁ ଯିବେ । ପିତୃସୂତ୍ରରୁ ପ୍ରାପ୍ତ ଦେବଦ୍ରୋହରୁ, ସ୍ୱଶରୀରକୃତ ଦ୍ରୋହ ବା ପାପରୁ ତାଙ୍କୁ ମୁକ୍ତ କରିବାକୁ ପ୍ରାର୍ଥନା କରିଅଛନ୍ତି, ବିନୀତ ହୋଇ କହିଅଛନ୍ତି - ହେ ରାଜନ୍, ପଶୁଭକ୍ଷଣକାରୀ ଚୋର ପରି, ରଜ୍ଜୁବଦ୍ଧ ବସତରୀପରି (ପାପବଦ୍ଧ) ମତେ ପାପରୁ ମୁକ୍ତ କରିଦିଅ । ହେ ବରୁଣ ! ସେହି ପାପ ନିଜ ଦୋଷଜନିତ ନୁହେଁ । ତାହା ଭ୍ରମ ବା ମଦ୍ୟ ବା ମନ୍ୟୁ ବା ଅକ୍ଷକ୍ରୀଡା ବା ଅବିବେକିତା ହେତୁ ଘଟିଅଛି । ସାନକୁ ବଡ ମଧ୍ୟ ପାପ ପଥରେ ନେଇଥାଏ, ସ୍ୱପ୍ନରେ ମଧ୍ୟ ପାପ ଜାତ ହୁଏ (୬ଷ୍ଠ ଋକ୍) । ମନୋବାଞ୍ଛାପୂରଣକାରୀ, ସୁପାଳକ ବରୁଣଙ୍କୁ ପାପଶୂନ୍ୟ ହୋଇ ମୁଁ ଦାସତୁଲ୍ୟ ସେବାର୍ଚ୍ଚନା କରିବି... (୭ମଋକ୍) ।

ବରୁଣଙ୍କର ଦୟାଶୀଳତା କ୍ଷମାଶୀଳତା ଉପରେ ବସିଷ୍ଠଙ୍କର ବିଶ୍ୱାସ ରହିଛି । ସେଥିପାଇଁ ୮୭ତମ ସୂକ୍ତର ଶେଷ (୭ମ) ଋକ୍‌ରେ ସେ କହୁଅଛନ୍ତି, ''ଅପରାଧ କଲେ ମଧ୍ୟ ଯେଉଁ ବରୁଣ ଦେବତା ଦୟା କରନ୍ତି, ସେହି ସମୃଦ୍ଧିବନ୍ତ ବରୁଣଙ୍କ ସମସ୍ତ ବ୍ରତ ଯଥାରୀତି ଆଡମ୍ବର ସହକାରେ ପାଳନ କରି ଆମେ ଯେପରି ତାଙ୍କ ନିକଟରେ ଆଦୌ ଅପରାଧୀ ନ ହୋଇ ରହୁ ।....''

୮୮ତମ ସୂକ୍ତର ୬ଷ୍ଠ ଋକ୍‌ରେ ବସିଷ୍ଠ ନିଜକୁ ବରୁଣଙ୍କ ଆତ୍ମୀୟ ବୋଲି ଦାବୀ କରି ପ୍ରାର୍ଥନା କରିଅଛନ୍ତି- ଆମେ ପାପାକ୍ରାନ୍ତ ହୋଇ ଯେପରି (କ୍ଳେଶ) ଭୋଗ ନ କରୁ ।

୮୯ ସୂକ୍ତରେ ପ୍ରଥମ ୪ଟି ଋକ୍‌ରେ ବସିଷ୍ଠ ବାରମ୍ବାର ପ୍ରାର୍ଥନା କରିଅଛନ୍ତି- ମୃଳା ସୂକ୍ଷତ୍ର ମୃଳୟ- ଦୟାକର, ଦୟାକର । ଶେଷ (୫ମ) ଋକ୍‌ରେ ପ୍ରାର୍ଥନା କରିଅଛନ୍ତି ବରୁଣଙ୍କୁ- ଆମେ ସବୁ ମନୁଷ୍ୟ । ଦେବତାମାନଙ୍କ ପ୍ରତି ଆମ୍ଭେମାନେ ଯାହା କିଛି ଦ୍ରୋହ କରିଛୁ, ଅଜ୍ଞାନତା ହେତୁ ତୁମର ଯେଉଁ କାର୍ଯ୍ୟକୁ ନିଷ୍ଠାର ସହିତ ସମ୍ପନ୍ନ କରିନାହୁଁ, ସେ ସମସ୍ତ ପାପଦ୍ୱାରା ଆକ୍ରାନ୍ତ ଆମ ପ୍ରତି ହିଂସାଚରଣ କରନାହିଁ ।

ଯେପରି ବହୁ ସୂକ୍ତରେ ଅଗ୍ନି,ମରୁତ୍‌ଗଣ ପ୍ରଭୃତିଙ୍କୁ ପାପଶୂନ୍ୟ ବୋଲି ଅଭିହିତ କରାହୋଇଅଛି,ସେହିପରି ୯୦ତମ ସୂକ୍ତରେ (୪ର୍ଥ ଋକ୍) ଊଷା ଦେବୀଙ୍କୁ ପାପଶୂନ୍ୟା ବୋଲି ଅଭିହିତ କରାହୋଇଅଛି ।

୧୦୪ତମ ସୂକ୍ତର ୨୩ତମ ଋକ୍‌ରେ ସ୍ତୋତା ପ୍ରାର୍ଥନା କରିଛନ୍ତି- ପୃଥିବୀ ଆମକୁ ପାର୍ଥିବ ପାପରୁ ରକ୍ଷା କରନ୍ତୁ, ଅନ୍ତରିକ୍ଷ ଅନ୍ତରିକ୍ଷର ପାପରୁ ରକ୍ଷା କରନ୍ତୁ ।

୮ମ ମଣ୍ଡଳର ୪ର୍ଥ ସୂକ୍ତର ୧୫ଶ ଓ ୧୬ଶ ଋକ୍‌ରେ ପୂଷାଙ୍କୁ ପାପମୋଚକ ରୂପେ ସମ୍ବୋଧନ କରାହୋଇଅଛି ।

୧୮ଶ ସୂକ୍ତର ୫ମ ଋକ୍‌ରେ ଋଷି କହୁଅଛନ୍ତି- ''ଅଦିତିଙ୍କର ସେହି ପୁତ୍ରମାନେ ... ପାପରୁ ଆମ୍ଭମାନଙ୍କୁ ବିଶ୍ଳିଷ୍ଟ କରିବା ଜାଣନ୍ତି ।'' ପରବର୍ତ୍ତୀ ଋକ୍‌ରେ ''ଅଦିତି... ଆମକୁ ପାପରୁ ରକ୍ଷା କରନ୍ତୁ'' ବୋଲି ଋଷି ପ୍ରାର୍ଥନା କରିଅଛନ୍ତି । ୮ମ ଋକ୍‌ରେ ଅଶ୍ୱିଗଣ ''ଆମକୁ ପାପରୁ ପୃଥକ୍ କରନ୍ତୁ'' ଓ ୧୦ମ ଋକ୍‌ରେ ଆଦିତ୍ୟଗଣ ''ଆମକୁ ପାପରୁ ପୃଥକ୍ କରନ୍ତୁ'' ବୋଲି କାମନା, ପ୍ରାର୍ଥନା କରାହୋଇଅଛି । ୧୨ଶ ଋକ୍‌ରେ ପୂର୍ବର କେତେକ ସୂକ୍ତରେ କଥିତ ହେଲାପରି କୁହାହୋଇଛି- ହେ ଦାନପରାୟଣ ଆଦିତ୍ୟଗଣ, ତୁମ୍ଭମାନଙ୍କର ଯେଉଁ କଲ୍ୟାଣ ପାପକର୍ମା ସ୍ତୁତିକାରକଙ୍କୁ ମଧ୍ୟ ପାପରୁ ବିମୁକ୍ତ କରେ, ସେହି କଲ୍ୟାଣ ଆମକୁ ଦାନ କର ।

୨୪ତମ ସୂକ୍ତର ୨୭ତମ ଋକ୍‌ରେ ଇନ୍ଦ୍ର ରାକ୍ଷସକୃତ ପାପରୁ ମୁକ୍ତ କରନ୍ତି ବୋଲି ଉଲ୍ଲେଖ ହୋଇଅଛି ।

୪୪ତମ ସୂକ୍ତର ଶେଷ ଋକ୍(୩୦ତମ)ରେ ଅଗ୍ନିଙ୍କୁ ଋଷି ପ୍ରାର୍ଥନା କରିଅଛନ୍ତି- ପାପ ଓ ହିଂସାକାରୀମାନଙ୍କର ହସ୍ତରୁ ଆମ୍ଭମାନଙ୍କର କର୍ମକୁ ରକ୍ଷା କର ।

୪୭ତମ ସୂକ୍ତର ୧ମ ଋକ୍‌ରେ ମିତ୍ର ବରୁଣଙ୍କୁ ଋଷି କହୁଛନ୍ତି- ତୁମେ ଯେଉଁ ଯଜମାନଙ୍କୁ ଶତ୍ରୁ କବଳରୁ ରକ୍ଷା କର, ପାପ ତାକୁ ସ୍ପର୍ଶ କରେ ନାହିଁ ।

୫ମ ଋକ୍‌ରେ ପୁଣି ସେ କହୁଅଛନ୍ତି-ରଥଯାତ୍ରୀ ଯେପରି ଦୁର୍ଗମ ପଥ ପରିତ୍ୟାଗ କରେ, ସେହିପରି ଆମ୍ଭେମାନେ ପାପ ପରିତ୍ୟାଗ କରିବୁ ।

୧୮ଶ ଋକ୍‌ରେ ଋଷି ଘୋଷଣା କରିଛନ୍ତି- ଆଜି ଆମେ ପାପଶୂନ୍ୟ ହେବୁ ।

ତଦ୍‌ପୂର୍ବରୁ ୧୩ଶ ଋକ୍‌ରେ ଋଷି ଆପ୍ତ୍ୟ ତ୍ରିତ ଆଦିତ୍ୟଗଣଙ୍କୁ ପ୍ରାର୍ଥନା କରିଅଛନ୍ତି- ପ୍ରକାଶ୍ୟ ପାପଗୁଡ଼ିକରୁ ଓ ଅନ୍ତର୍ନିହିତ ପାପଗୁଡ଼ିକରୁ କୌଣସିଟି ମୋର ନ ହେଉ । ସେଗୁଡ଼ିକୁ ଦୂରରେ ରଖ ।

୬୭ତମ ସୂକ୍ତର ୭ମ ଋକ୍‌ରେ ଋଷି ଦେବଗଣଙ୍କୁ ସ୍ତୁତିକରି କହିଅଛନ୍ତି- '' ପାପୀର ମହାପାପ ଅଛି, ପାପଶୂନ୍ୟ ବ୍ୟକ୍ତିର ସୁନ୍ଦର ସୁକୃତ ଅଛି ।'' ନିଷ୍ପାପ ଆଦିତ୍ୟଗଣଙ୍କୁ ପ୍ରାର୍ଥନା କରିଛନ୍ତି- ଆମର ବାଞ୍ଛିତ ବସ୍ତୁ ଆମକୁ ଦାନ କର ।

ଶେଷ (୨୧ତମ) ଋକ୍‌ରେ ଆଦିତ୍ୟଗଣଙ୍କୁ ଋଷି ପ୍ରାର୍ଥନା କରିଛନ୍ତି- ପାତକ ସକଳ ବିନାଶ କର । (ପାପର) ଜାଲକୁ ବିନାଶ କର । ସର୍ବତ୍ର ବ୍ୟାପ୍ତ ପାପକୁ ବିନାଶ କର ।

୯ମ ମଣ୍ଡଳର ସମସ୍ତ ସୂକ୍ତ ସୋମସ୍ତୁତିମୂଳକ । ଏଥିରେ ଆପାତତଃ କୌଣସି ସୂକ୍ତରେ ସୋମଙ୍କୁ ସ୍ତୋତାଙ୍କର ପାପ ନାଶ କରିବାକୁ ପ୍ରାର୍ଥନା କରାଯାଇନାହିଁ । ତେବେ କେତେକ ସୂକ୍ତରେ ପୂଣ୍ୟକର୍ମ ସହିତ ତାଙ୍କୁ ସଂପୃକ୍ତ କରାଯାଇଅଛି ।

୪୪ତମ ସୂକ୍ତର ଶେଷ (୬ଷ୍ଠ) ଋକ୍‌ରେ ସ୍ତୋତା ସୋମଙ୍କୁ ପୁଣ୍ୟ ସଂଗ୍ରହର ଉପାୟରୂପେ ବର୍ଣ୍ଣନା କରଅଛନ୍ତି ।

ଅନ୍ୟ ଏକ ସୂକ୍ତରେ ସୋମ ପୂଣ୍ୟ କର୍ମର ବିଘ୍ନବିନାଶକ ବୋଲି ବର୍ଣ୍ଣିତ ହୋଇଅଛନ୍ତି ।

୮୨ତମ ସୂକ୍ତର ୫ମ ଋକ୍‌ରେ ଋଷି ସୋମଙ୍କୁ ପ୍ରାର୍ଥନା କରିଅଛନ୍ତି- ଏହି ନୂତନ ପୁଣ୍ୟ କର୍ମ ଅନୁଷ୍ଠିତ ହେଉଥିବାବେଳେ ତୁମେ ପ୍ରବଳ ଭାବରେ କ୍ଷରିତ ହୁଅ ।

୮୩ତମ ସୂକ୍ତର ୪ର୍ଥ ଋକ୍‌ରେ ପୁଣ୍ୟକର୍ମାଗଣ ସୋମରସର ଚମତ୍କାର ସ୍ୱାଦ ଲାଭ କରନ୍ତି ବୋଲି କୁହାଯାଇଅଛି ।

୬୧ତମ ସୂକ୍ତର ୨୪ତମ ଋକ୍‌ରେ ସୋମଙ୍କୁ ସଦ୍‌କର୍ମ ଅର୍ଥାତ ଯଜ୍ଞାଦି କର୍ମାନୁଷ୍ଠାନ ସମୟରେ ସଜାଗ ରହିବାକୁ ଅନୁରୋଧ କରାଯାଇଛି । ଏହି ମଣ୍ଡଳର ଅନ୍ୟାନ୍ୟ ବହୁ ସୂକ୍ତରେ ଏହିପରି ପ୍ରାର୍ଥନା ଲକ୍ଷିତ ହୁଏ । ଯଜ୍ଞବିରୋଧୀ ଶତ୍ରୁମାନଙ୍କୁ, ରାକ୍ଷସମାନଙ୍କୁ ଦମନ କରିବାକୁ, ଖଣ୍ଡବିଖଣ୍ଡିତ କରି ହତ୍ୟା କରିବାକୁ ବାରମ୍ବାର ସୋମଙ୍କୁ ପ୍ରାର୍ଥନା କରାଯାଇଅଛି, ଯେପରି ଅନ୍ୟ ମଣ୍ଡଳମାନଙ୍କରେ ଇନ୍ଦ୍ର, ଅଗ୍ନି, ବରୁଣ, ମରୁତ୍ ପ୍ରଭୃତିଙ୍କୁ କରାଯାଇଅଛି ।କିନ୍ତୁ ପ୍ରତ୍ୟକ୍ଷ ଭାବରେ ପାପ ବିନଷ୍ଟ କରିବାକୁ ପ୍ରାର୍ଥନା ଏହି ମଣ୍ଡଳରେ ଆପାତତଃ ନାହିଁ ।

୧୦ମ ମଣ୍ଡଳର ସର୍ବାଧିକ ସ୍ତୋତ୍ରରେ ସ୍ତୋତାଗଣଙ୍କର ପାପବୋଧର ସୂଚନା ମିଳେ ।

୧୫ଶ ସୂକ୍ତର ୪ର୍ଥ ଋକ୍‌ରେ ଶଙ୍ଖଋଷି ପିତୃପୁରୁଷଙ୍କୁ ପ୍ରାର୍ଥନା କରିଅଉନ୍ତି - ଆମ୍ଭମାନଙ୍କୁ କଲ୍ୟାଣମୟ , ଅମଙ୍ଗଳଶୂନ୍ୟ, ପାପଶୂନ୍ୟ କର । ୬ଷ୍ଠ ଋକ୍‌ରେ ଅପରାଧବୋଧକ୍ଳିଷ୍ଟ ସ୍ତୋତା ବିନୀତ ଭାବରେ କହିଅଛନ୍ତି- ଆମେ ମନୁଷ୍ୟ, ତେଣୁ ଆମ ପକ୍ଷରେ କୌଣସି ପ୍ରକାର କିଛି ଅପରାଧ କରିବା ସ୍ୱାଭାବିକ, କିନ୍ତୁ ସେଥିପାଇଁ ଆମ ପ୍ରତି ହିଂସା କର ନାହିଁ । ( ମା ହିଂସିଷ୍ଟ ପିତରଃ କେନ ଚିନ୍ନୋ ଯଦ୍‌ବ ଆଗଃ ପୁରୁଷତା କରାମ) ।

୩୫ତମ ସୂକ୍ତର ୨ୟ ଋକ୍‌ରେ ଋଷି କହୁଅଛନ୍ତି- ସୂର୍ଯ୍ୟ ଓ ଉଷାଦେବୀଙ୍କୁ ଆମେ ଏହି ପ୍ରାର୍ଥନା କରୁଅଛୁ, ଆମେ ଯେପରି ଅପରାଧୀ ନ ହେଉ ।

ଅନୁରୂପ କାମନା ପ୍ରକାଶ ପାଇଅଛି ପରବର୍ତ୍ତୀ ଋକ୍‌ରେ- ''ଆମେ ଯେପରି ସେହି ଦୁଇ ମହତୀ ଦେବତା (ଦ୍ୟାବାପୃଥିବୀ) ଙ୍କ ନିକଟରେ ଅପରାଧୀ ନ ହେଉ । ଉଷାଦେବୀ

ଯେପରି ଆମର ପାପ ପୋଛିଦିଅନ୍ତି, ଧ୍ୱଂସ କରିଦିଅନ୍ତି ।'' ଶେଷ (୧୪ଶ) ଋକ୍‌ରେ ଋଷି ପ୍ରାର୍ଥନା କରିଅଛନ୍ତି - ଯେଉଁମାନଙ୍କୁ ପାପରୁ ମୁକ୍ତି ଦେଇ ସମୃଦ୍ଧିବନ୍ତ ସୌଭାଗ୍ୟଶାଳୀ କର, ଆମେ ଯେପରି ସେମାନଙ୍କ ମଧ୍ୟରେ ସ୍ଥାନ ପାଉ ।

୩୬ତମ ସୂକ୍ତରେ ବାରମ୍ବାର ସ୍ୱାପରାଧବୋଧ ପ୍ରକାଶ ପାଇଅଛି । ବାରମ୍ବାର (୨ୟ ଋକ୍‌ରୁ ୧୨ଶ ଋକ୍ ପର୍ଯ୍ୟନ୍ତ) ପ୍ରାର୍ଥନା କରାଯାଇଅଛି - ''ତଦ୍ଦେବାନାମବୋ ଅଦ୍ୟା ବୃଣୀମହେ- ଦେବଗଣଙ୍କ ନିକଟରେ ଆମେ ସୁରକ୍ଷା ଭିକ୍ଷା କରୁଅଛୁ ।'' ୨ୟ ଋକ୍‌ର ପ୍ରଥମାଂଶରେ ସ୍ତୋତା କୁଶ ଋଷି ଅନୁଯୋଗ କରିଛନ୍ତି ''...ଦ୍ୟାବାପୃଥିବୀ ଆମ୍ଭମାନଙ୍କର ପାପରୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଶତ୍ରୁ କବଳରୁ ରକ୍ଷା କରନ୍ତୁ । ଦୁର୍ମତିବିଶିଷ୍ଟା ନିର୍ଋତି ଯେପରି ଆମ ଉପରେ ଆଧିପତ୍ୟ ବିସ୍ତାର ନ କରେ ।'' ୩ୟ ଋକ୍‌ରେ ମିତ୍ର ଓ ବରୁଣଙ୍କ ଜନନୀ ଅଦିତି ଦେବୀ ପାପରୁ ରକ୍ଷା କରନ୍ତୁ ବୋଲି କୁଶ ଋଷି ପ୍ରାର୍ଥନା କରିଅଛନ୍ତି ।

୩୭ତମ ସୂକ୍ତର ଶେଷ ଋକ୍(୧୨ଶ)ରେ ଅଭିତପା ଋଷି ଦେବଗଣଙ୍କୁ ଅନୁରୋଧ କରିଅଛନ୍ତି - କଥାରେ ହେଉ ବା ମନର ଭାବନାରେ ହେଉ, ଯେକୌଣସି ଅପରାଧମୂଳକ କାର୍ଯ୍ୟ ଆମେ ଦେବଗଣଙ୍କ ନିକଟରେ କରିଅଛୁ, ତଜ୍ଜନିତ ପାପ ଯେଉଁ ବ୍ୟକ୍ତି ଦାନ ଧର୍ମ କରେ ନାହିଁ, ତାହାରି କାନ୍ଧରେ ଲଦିଦିଅ ।

ଏଥିପୂର୍ବରୁ ୭ମ ଋକ୍‌ରେ ସୂର୍ଯ୍ୟଙ୍କୁ ସ୍ତୁତି କରି କହିଅଛନ୍ତି, ''ଆମେ ଯେପରି ପ୍ରତିଦିନ ରୋଗଶୂନ୍ୟ ଶରୀରରେ ସନ୍ତାନାଦିଙ୍କଦ୍ୱାରା ପରିବେଷ୍ଟିତ ହୋଇ କୌଣସି ଦୋଷରେ ଦୋଷୀ ନ ହୋଇ ତୁମର ଦର୍ଶନ ଲାଭ କରୁ ।''

୪୦ତମ ସୂକ୍ତର ୩ୟ ଋକ୍‌ରେ ଅଶ୍ୱିଦ୍ୱୟଙ୍କୁ ପରୋକ୍ଷରେ ପାପରୁ ରକ୍ଷା କରିବାକୁ ଅନୁରୋଧ କରାଯାଇଅଛି ଏକ ପ୍ରଶ୍ନଦ୍ୱାରା-କାହାର ପାପ ତୁମେ ଧ୍ୱଂସ କର ?

୯ମ ସୂକ୍ତର ୩ୟ ଋକ୍‌ରେ ଜଳଦେବତାଗଣ ସମସ୍ତ ପାପ କ୍ଷୟ କରିଦିଅନ୍ତି ବୋଲି ସୂଚିତ ହୋଇଅଛି ।୮ମ ଋକ୍‌ରେ ସ୍ତୋତା ସିନ୍ଧୁଦ୍ୱୀପ ଋଷି ଜଳଗଣଙ୍କୁ ପ୍ରାର୍ଥନା କରିଅଛନ୍ତି - ''ଇଦମାପଃ ପ୍ର ବହତ ଯତ୍ କିଞ୍ଚ ଦୁରିତଂ ମୟି । ଯଦ୍‌ବାହମଭିଦୁଦ୍ରୋହ ଯଦ୍‌ବାଶେପ ଉତାନୃତମ୍- ଯାହା କିଛି ଦୁରିତ ବା ପାପ ମୋର ଅଛି ବା କୌଣସି ଦ୍ରୋହାତ୍ମକ ହିଂସା କାର୍ଯ୍ୟ ମୁଁ କରିଅଛି ବା ଅଭିଶାପ ଦେଇଅଛି ବା ଅନୃତ (ମିଥ୍ୟା) କଥା କହିଅଛି, ସେ ସମସ୍ତ ଦୂରୀଭୂତ କର ।''

୩୧ତମ ସୂକ୍ତର ପ୍ରଥମ ଋକ୍‌ରେ ବିଶ୍ୱଦେବଙ୍କୁ କବଷ ମୁନି ପ୍ରାର୍ଥନା କରିଅଛନ୍ତି- ତରନ୍ତୋ ବିଶ୍ୱା ଦୁରିତା ସ୍ୟାମ - ଆମ୍ଭେମାନେ ଯେପରି ସମସ୍ତ ପ୍ରକାର ପାପରୁ ତ୍ରାଣ ଲାଭ କରୁ ।

୫୩ତମ ସୂକ୍ତର ୫ମ ଋକ୍‌ରେ ପ୍ରାର୍ଥନା କରାଯାଇଅଛି - ପୃଥିବୀ ଆମକୁ ପାର୍ଥିବ ପାପରୁ ରକ୍ଷା କରନ୍ତୁ, ଅନ୍ତରିକ୍ଷ ଆମକୁ ଅନ୍ତରିକ୍ଷର ପାପରୁ ରକ୍ଷା କରନ୍ତୁ ।

୬୩ତମ ସୂକ୍ତର ୮ମ ଋକ୍‌ରେ ଅତୀତ ଓ ଭବିଷ୍ୟଦ୍ ସମସ୍ତ ପାପରୁ ତ୍ରାଣ କରିବାକୁ ଅନୁଯୋଗ କରାଯାଇଅଛି। ୯ମ ଋକ୍‌ରେ ବିଶ୍ୱଦେବଗଣଙ୍କୁ ପାପବିମୋଚନକାରୀ ରୂପେ ବର୍ଣ୍ଣନା କରାହୋଇଅଛି । ୧୩ଶ ଋକ୍‌ରେ ଅଦିତିପୁତ୍ରଗଣ ଯଜ୍ଞଦାତାକୁ ପାପରୁ ତ୍ରାଣ କରି ମଙ୍ଗଳ କରନ୍ତି ବୋଲି ଉଲ୍ଲେଖ ଅଛି ।

୧୧୩ ତମ ସୂକ୍ତର ଶେଷ ଋକ୍‌ରେ ପ୍ରଭେଦନ ଋଷି ଇନ୍ଦ୍ରଙ୍କୁ ଅନୁରୋଧ କରିଅଛନ୍ତି- ବିଶ୍ୱା ଦୁରିତା ତରେମ- ଆମେ ଯେପରି ସମସ୍ତ ପାପରୁ ତ୍ରାଣ ଲାଭ କରୁ ।

୧୨୬ତମ ସୂକ୍ତର ୧ମ ଓ ୨ୟ ଋକ୍‌ରେ ଋଷି କହିଅଛନ୍ତି - ଅର୍ଯମା, ମିତ୍ର ଓ ବରୁଣ ଯେଉଁ ବ୍ୟକ୍ତିକୁ ଶତ୍ରୁ କବଳରୁ ରକ୍ଷା କରନ୍ତି, ତାକୁ କୌଣସି ପ୍ରକାର ପାପ, ଅମଙ୍ଗଳ ଆକ୍ରମଣ କରିପାରେ ନାହିଁ । ହେ ବରୁଣ ! ହେ ମିତ୍ର ! ହେ ଅର୍ଯମା ! ତୁମେ ଯେପରି ପାପରୁ ମନୁଷ୍ୟକୁ ରକ୍ଷା କର ଓ ଶତ୍ରୁ ହସ୍ତରୁ ରକ୍ଷା କର, ଆମେ ତାହା ହିଁ ପ୍ରାର୍ଥନା କରୁଅଛୁ ....

୬ଷ୍ଠ ଋକ୍‌ରେ ଋଷି କହିଅଛନ୍ତି ଯେ ବରୁଣ, ମିତ୍ର ଓ ଅର୍ଯମା ମନୁଷ୍ୟକୁ ସୁପଥ ଦେଖାଇ ନେବାରେ ଅତି ଦକ୍ଷ ଓ ସେମାନେ ପାପମାନ ଧ୍ୱଂସ କରିଦିଅନ୍ତି । ପୁଣି ଥରେ ପ୍ରାର୍ଥନା କରିଅଛନ୍ତି- ଏହି ଦେବତାଗଣ ସକଳ ପାପର ଓ ଶତ୍ରୁର କବଳରୁ ଆମକୁ ରକ୍ଷା କରନ୍ତୁ ।

୮ମ ଋକ୍‌ରେ ଅନୁରୂପ ଅନୁରୋଧ କରାହୋଇଅଛି- ବସୁଗଣ ଯେପରି (ଆବଦ୍ଧ ଗୌରୀ) ଗାଭୀକୁ ମୁକ୍ତ କରି ଦେଇଥିଲେ ସେହିପରି ଆମକୁ ପାପରୁ ମୁକ୍ତ କରିଦିଅ ।

୧୬୧ତମ ସୂକ୍ତରେ ଯକ୍ଷ୍ମାନାଶନ ଋଷି ଇନ୍ଦ୍ରଙ୍କୁ ଆହୁତି ପ୍ରଦାନ କରି ପ୍ରାର୍ଥନା କରିଅଛନ୍ତି- ଇନ୍ଦ୍ର ଯେପରି ସକଳ ପାପରୁ ଏହାକୁ (ଯକ୍ଷ୍ମାକ୍ରାନ୍ତ ବ୍ୟକ୍ତିକୁ) ତ୍ରାଣ କରି ଶହେ ବର୍ଷ ଜୀବିତ ରଖନ୍ତୁ ।

୧୬୪ତମ ସୂକ୍ତର ଶେଷ ଋକ୍‌ରେ ପ୍ରଚେତା ଋଷି ଆନନ୍ଦରେ କହିଅଛନ୍ତି- ଆଜି ଆମେ .... ଅପରାଧରୁ ମୁକ୍ତ ହୋଇଅଛୁ । ଜାଗ୍ରତ ଥିବା ବେଳେ, ନିଦ୍ରାବସ୍ଥାରେ ବା ସଙ୍କଳ୍ପ ପାଇଁ ଆମ ଦ୍ୱାରା ଯାହାକିଛି ପାପ ସଂଘଟିତ ହୋଇଅଛି, ତାହା ଯେଉଁ ଶତ୍ରୁକୁ ଆମେ ଦ୍ୱେଷ କରୁ ତାହା ନିକଟକୁ ଯାଉ ।

ପୂର୍ବବର୍ତ୍ତୀ ଋକ୍‌ରେ ସ୍ୱକୃତ ପାପଜନିତ ଅମଙ୍ଗଳରୁ ରକ୍ଷା ପାଇବା ପାଇଁ ଇନ୍ଦ୍ର ଓ ବ୍ରହ୍ମଣସ୍ପତିଙ୍କୁ ପ୍ରାର୍ଥନା କରାଯାଇଅଛି ।

ସୂକ୍ତର ପ୍ରାରମ୍ଭରୁ ଦୁଃସ୍ୱପ୍ନ ଦେବତାଙ୍କୁ ଜୀବିତ ମନୁଷ୍ୟମନରୁ ହଟିଯିବାକୁ, ବହୁ ଦୂରକୁ ଚାଲିଯିବାକୁ କୁହା ହୋଇଅଛି- କୁହା ହୋଇଅଛି ବହୁଦୂରରେ ଥିବା ନିର୍ଋତି (ପାପ ଦେବତା)କୁ ପଚାରିବାକୁ, ଜୀବନ୍ତ ବ୍ୟକ୍ତିରତ ବହୁ କାମନା, କାହିଁକି ସେ (ନିର୍ଋତି) ସେହି କାମନାକୁ ଭଙ୍ଗ କରୁଛନ୍ତି ? ୩ୟ ଋକ୍‌ରେ ଶେଷ ଋକ୍ (୫ମ) ପରି ଅନୁରୋଧ କରାହୋଇଅଛି- ଆଶା କରିବା

ବେଳେ, ଆଶା ଭଙ୍ଗ ହେବା ବେଳେ, ଆଶା ଫଳବତୀ ହେବା ବେଳେ, ଜାଗ୍ରତ ଥିବା ବେଳେ ବା ନିଦ୍ରା ସମୟରେ ଯାହାକିଛି ଅସତ୍ କାର୍ଯ୍ୟ ଆମେ କରୁଁ, ସେ ସମସ୍ତ ଦୁଃଖକଷ୍ଟକର ପାପକୁ ଅଗ୍ନି ଆମଠାରୁ ଦୂରରେ ଅବସ୍ଥାପିତ କରନ୍ତୁ ।

୧୮୨ତମ ସୂକ୍ତରେ ବୃହସ୍ପତି ପାପର ବିନାଶ ପାଇଁ ସ୍ତବକୁ ସକ୍ଷମ କରି ଦିଅନ୍ତୁ ବୋଲି କାମନା କରାଯାଇଅଛି ।

ଏହି ୧୦ମ ମଣ୍ଡଳର ୧୦ମ ସୂକ୍ତ ଏକ ପ୍ରସିଦ୍ଧ, ଗଭୀରଅର୍ଥପୂର୍ଣ୍ଣ ସୂକ୍ତ । ଏଥିରେ ଯମ ଓ ତାଙ୍କର ଯମଜା ଭଗ୍ନୀ ଯମୀଙ୍କର ନାଟକୀୟ କଥୋପକଥନ ପ୍ରଦତ୍ତ ହୋଇଛି । କାମାକୁଳା ଯମୀ ଯମଙ୍କ ସହିତ ପ୍ରଣୟ କାମନା କରିଅଛନ୍ତି । କିନ୍ତୁ ଯମ ରାଜି ହୋଇନାହାନ୍ତି । ସଂଯମର ମୂର୍ତ୍ତିମନ୍ତ ରୂପ ଯମ ସହୋଦରା ଭଗିନୀ ସହିତ ପ୍ରଣୟ ସମ୍ପର୍କ ପାପ ବୋଲି ସୂଚନା ଦେଇ ଅଛନ୍ତି ଓ ଯମୀଙ୍କର ସମସ୍ତ ଆକୁଳ ନିବେଦନ ପ୍ରତ୍ୟାଖ୍ୟାନ କରିଅଛନ୍ତି ।

ଅପେକ୍ଷାକୃତ ଅର୍ବାଚୀନ ଏହି ମଣ୍ଡଳରେ ପାପପୁଣ୍ୟର ଫଳାଫଳ କଥା କେତୋଟି ସୂକ୍ତରେ ରହିଅଛି ।

୧୪ଶ ସୂକ୍ତର ୮ମ ଋକ୍‌ରେ ମୃତ ଯଜ୍ଞକର୍ତ୍ତାଙ୍କୁ କୁହାଯାଇଛି ଯାଇ ସ୍ୱର୍ଗରେ ପିତୃପୁରୁଷଙ୍କ ସହିତ ମିଳିତ ହେବାକୁ, ପାପ ତ୍ୟାଗ କରି ଅସ୍ତ ନାମକ ଗୃହରେ ପ୍ରବେଶ କରି ସମୁଜ୍ଜ୍ୱଳ ଶରୀର ଧାରଣ କରିବାକୁ ।

ଅକ୍ଷସୂକ୍ତରେ (୩୪ତମ ସୂକ୍ତ) ଅକ୍ଷକ୍ରୀଡାର ବିନାଶକାରୀ ଆକର୍ଷଣ ବର୍ଣ୍ଣନା କରି ଅକ୍ଷକ୍ରୀଡାପ୍ରିୟ ବକ୍ତା କହୁଅଛନ୍ତି- ଯେପରି ବ୍ୟଭିଚାରିଣୀ ନାରୀ ଉପପତି ନିକଟକୁ ଗମନ କରେ, ମୁଁ ମଧ୍ୟ ସେହିପରି ଅକ୍ଷକ୍ରୀଡାର ସଙ୍ଗୀମାନଙ୍କ ଭବନକୁ ଗମନ କରେ । ଅକ୍ଷକ୍ରୀଡାରେ ମତ୍ତ ହୋଇ ନିଜକୁ ଓ ପରିବାରକୁ ଧ୍ୱଂସ କରିବା ପାପ ବୋଲି ସୂଚିତ ହୋଇଅଛି ।

୮୫ତମ ସୂକ୍ତରେ ବଧୂକୁ ଆଶୀର୍ବାଦ କରାହୋଇଅଛି- ତୁମର ଚକ୍ଷୁ ଯେପରି ନିର୍ଦ୍ଦୋଷ ହେଉ, ଅର୍ଥାତ ପାପଶୂନ୍ୟ ହେଉ ।

ଉପରୋକ୍ତ ଉଦ୍ଧୃତିଗୁଡ଼ିକରୁ ପାପବୋଧ କପରି ଋଗ୍‌ବେଦୀୟ ସମାଜରେ ଗଭୀର ଓ ବ୍ୟାପକ ଥିଲା ତାହା ପ୍ରତୀୟମାନ ହେବ ।

ଯଥାର୍ଥରେ Maxmuller କହିଅଛନ୍ତି -The consciousness of sin is a prominent feature in the religion of the Vedas. So is likewise the belief that the gods are able to take away from men the heavy burden of sin.

ପାପର ସ୍ୱରୂପ କ'ଣ ତାହା ବିଧିବଦ୍ଧ ଭାବରେ ଋଗ୍‌ବେଦରେ ପ୍ରାୟ କେଉଁଠି ସୂଚିତ ହୋଇନାହିଁ, କିନ୍ତୁ ପ୍ରକାରାନ୍ତରେ ବହୁ ସୂକ୍ତରେ ବିଭିନ୍ନ ପ୍ରକାରେ ତାହା ସୂଚିତ ହୋଇଅଛି ।

ଯଜ୍ଞ ନ କରିବା, ଯଜ୍ଞ କଲେ ମଧ୍ୟ ତାହା ଯଥାବିହିତ ନ କରିବା, ଯଜ୍ଞକ୍ରିୟାରେ ବାଧାବିଘ୍ନ ସୃଷ୍ଟି କରିବା, ଯଜ୍ଞକୁ ବିରୋଧ କରିବା ଋଗ୍‌ବେଦୀୟ ଋଷିଗଣଙ୍କ ମତରେ ମୁଖ୍ୟ ପାପ । ଆର୍ଯ୍ୟେତର ଦସ୍ୟୁଗଣ, ରାକ୍ଷସଗଣ ଯଜ୍ଞବିରୋଧୀ । ଯଜ୍ଞ କାଳରେ ନାନା ବିଘ୍ନ ଘଟାନ୍ତି । ଯଜ୍ଞକର୍ତ୍ତା ପ୍ରତି ହିଂସାଭାବ ଆଚରଣ କରନ୍ତି । ସେମାନେ ପରମ ପାପୀ ।

ଯଜ୍ଞାନୁଷ୍ଠାନ, ବ୍ରତ ପାଳନ, ଉପଯୁକ୍ତ ହବ୍ୟଦାନଦ୍ୱାରା ଦେବଗଣଙ୍କୁ ତୁଷ୍ଟ କରିବା ମନୁଷ୍ୟର କର୍ତ୍ତବ୍ୟ । ସେଥିରୁ ବିଚ୍ୟୁତି ପାପ । ସଜ୍ଞାନରେ ହେଉ ବା ଅଜ୍ଞତାବଶତଃ ହେଉ, ଦେବଗଣଙ୍କ ପ୍ରତି କୃତ ଅପରାଧ ପାପ । ଦେବଗଣଙ୍କ ପ୍ରତି ନମସ୍କାର, ସ୍ତୁତି ଯଥାର୍ଥ ବା ନ୍ୟାୟୋଚିତ ହେବା ଆବଶ୍ୟକ । ତା'ନହେଲେ ତାହା ଅପରାଧମୂଳକ ହେବ, ପାପ ହେବ (୭ମ,୩୩ ସୂ) । ପୁଣି ଲୌକିକ, ଅବାଞ୍ଛିତ ଦେବଗଣଙ୍କୁ ଇନ୍ଦ୍ର, ଅଗ୍ନି, ବରୁଣ, ମରୁତ୍ ପ୍ରଭୃତି ଦେବଗଣଙ୍କ ସହିତ ଯଜ୍ଞକୁ ଆବାହନ କରିବା ପାପ । ମନୁଷ୍ୟସୁଲଭ ଭ୍ରମବଶତଃ, ଅପରିପକ୍ୱତାବଶତଃ, ଦୁର୍ବଳତାବଶତଃ, ମୂର୍ଖତାବଶତଃ (୧୦ମ,୨ସୂ, ୫ର;୪ସୂ, ୪ର; ୭ସୂ,୬ର ଇତ୍ୟାଦି) ବ୍ରତ ବା ଯଜ୍ଞାନୁଷ୍ଠାନରେ ତ୍ରୁଟି ବିଚ୍ୟୁତି ଘଟେ । ସେପ୍ରକାର ପାପକୁ କ୍ଷମା କରିବାକୁ ସ୍ତୋତାମାନେ ପ୍ରାର୍ଥନା କରିଅଛନ୍ତି ।

ଦସ୍ୟୁ ଓ ରାକ୍ଷସଗଣଙ୍କର ଯେଉଁ ଦୋଷ ଦର୍ଶାଯାଇଅଛି ସେ ସମସ୍ତ ମନୁଷ୍ୟ ପକ୍ଷରେ ପାପ । ସେମାନଙ୍କର ହିଂସା ତ ଋଗ୍‌ବେଦରେ ନିନ୍ଦା କରାଯାଇଅଛି, ମନୁଷ୍ୟମାନଙ୍କର ଅକାରଣ କ୍ରୋଧ, ହିଂସା ମଧ୍ୟ ନିନ୍ଦିତ ହୋଇଅଛି । ୮ମ, ୧୨ସୂ, ୧୩ର, ରେ କୁହାଯାଇଅଛି, ''ଯେ କୌଣସି ଲୋକ ଆମ୍ଭମାନଙ୍କ ପ୍ରତି ହିଂସା କରେ, ସେ ନିଜ କାର୍ଯ୍ୟଦ୍ୱାରା ହିଂସାର ପାତ୍ର ହେଉ ।'' କୁମତି, ଦୁଷ୍ଟବୁଦ୍ଧି, କପଟ, କୁଟିଳ, ଅନ୍ୟାୟ ଆଚରଣ, ମିଥ୍ୟାବାଦିତା, ପାପବାକ୍ୟଉଚ୍ଚାରଣ, ଅସତ୍‌ସଙ୍ଗ, ପାପୀ ସହିତ ସଙ୍ଗ, ସରଳ ବ୍ୟକ୍ତି ପ୍ରତି ଅଯଥା ଦୋଷାରୋପ ଓ ଅସୂୟା ପାପ । ଦ୍ୟୁତକ୍ରୀଡାରେ ମତ୍ତ ହୋଇ ସର୍ବସ୍ୱ ହରାଇବା, ସ୍ତ୍ରୀ ପରିବାର ସମସ୍ତଙ୍କ ଦୁଃଖର କାରଣ ହେବା ପାପ । ଦ୍ୟୁତକ୍ରୀଡାରେ ଯେ ପ୍ରବଞ୍ଚନା କରେ ସେ ପାପୀ । ଗର୍ବ ହେତୁ ଯେ ଯଜ୍ଞାନୁଷ୍ଠାନରେ ହେଳା କରେ ସେ ପାପୀ । ଧନ କାମନା, ସମୃଦ୍ଧି କାମନା, ଗୋଧନ କାମନା, ଅଶ୍ୱଲାଭ କାମନା ଶତ ଶତ ସୂକ୍ତରେ ପ୍ରକାଶିତ ହୋଇଅଛି । ଆପାତତଃ ନିଃସ୍ୱାର୍ଥପରତା ନିର୍ଲୋଭତାର ଉଲ୍ଲେଖ ନାହିଁ । କିନ୍ତୁ ଧନ ପ୍ରାର୍ଥନା କାଳରେ ଅନେକ ସୂକ୍ତରେ ସ୍ତୋତା ବରଣୀୟ, ବାଞ୍ଛନୀୟ ଧନ, ମହତ୍ ଧନ, ଦେବପ୍ରେରିତ ଧନ କାମନା କରିଅଛନ୍ତି । ପୁଣି ପରର ଧନ ବଳପୂର୍ବକ ଗ୍ରହଣ ପାପ ବୋଲି ସୂଚିତ ହୋଇଅଛି ।

ଭ୍ରମ ବା ମଦ୍ୟପାନ ବା ମନ୍ୟୁ ବା ଦ୍ୟୁତକ୍ରୀଡା ବା ଅବିବେକିତା ପାପର କାରଣ ହୋଇପାରେ । କେତେକ ସମୟରେ ଜ୍ୟେଷ୍ଠ କନିଷ୍ଠକୁ ପାପ ପଥକୁ ନେଇଥାଏ ।ପାପବୃତ୍ତି, ଦେବତାଙ୍କ ପ୍ରତି ଅନ୍ୟାୟ ଆଚରଣ ନିଜ ପିତାଙ୍କଠାରୁ ମଧ୍ୟ ଜଣେ ପାଇପାରିଥାଏ । ସ୍ୱପ୍ନରେ

ମଧ୍ୟ ପାପ ଉତ୍ପନ୍ନ ହୋଇଥାଏ । କେତେକ ଶାରୀରିକ ଦୁଷ୍କର୍ମ ବା ପାପକର୍ମ ମଣିଷ କରିଥାଏ । କେତେକ ପାପ ବାହ୍ୟ, ପ୍ରକାଶିତ - କେତେକ ଅପ୍ରକାଶିତ, ଅନ୍ତର୍ନିହିତ । କେତେକ ମାନସିକ କ୍ରିୟା ପାପକ୍ଲିଷ୍ଟ ।

ବ୍ୟଭିଚାର ପାପ । ଗୁପ୍ତପ୍ରଣୟ ଫଳରେ ଗର୍ଭଧାରଣ ପାପ । ଭ୍ରାତୃରହିତା ଅର୍ଥାତ୍ ଭ୍ରାତାର ଅଭିଭାବକତ୍ୱରୁ ବଞ୍ଚିତା, କୁପଥଗାମିନୀ, ଦୁଶ୍ଚାରିଣୀ ନାରୀ ପାପିନୀ । ଯେ ପତିକୁ ବିରୋଧ କରେ, ଉପପତି ନିକଟକୁ ଗମନ କରେ, ସେ ପାପିନୀ ।

ଚୌରତସ୍କରାଦିଙ୍କ କାର୍ଯ୍ୟ ପାପ ।

ମିତ୍ର, ବୟସ୍ୟ, ଭ୍ରାତା, ନିକଟ-ପ୍ରତିବେଶୀ, ବାକ୍‌ଶକ୍ତିହୀନଙ୍କ ପ୍ରତି ଅନ୍ୟାୟ ଆଚରଣ ପାପ ।

୧୦ମ ମଣ୍ଡଳର ୫ମ ସୂକ୍ତର ୬ଷ୍ଠ ଋକ୍‌ରେ ତ୍ରିତ ଋଷି କହିଅଛନ୍ତି -କବି ବା ବିଦ୍ୱାନ୍‌ଗଣ ସାତଟି ମର୍ଯ୍ୟାଦା ବା ସୀମା ବା ଅକରଣୀୟ କାର୍ଯ୍ୟ ନିର୍ଣ୍ଣୟ କରି ଅଛନ୍ତି । ସେଥିରୁ ଯେକୌଣସି ଗୋଟିଏ ବି କାର୍ଯ୍ୟ ଯେଉଁ ବ୍ୟକ୍ତି କରେ ସେ ପାପୀ ।

କିନ୍ତୁ ସେହି ସାତଟି ଅକରଣୀୟ କାର୍ଯ୍ୟର ନାମ ସୂକ୍ତରେ ନାହିଁ ।

ସାୟଣଙ୍କ ମତରେ ସେଗୁଡିକ ହେଲା କାମଜନିତ, କ୍ରୋଧଜନିତ କ୍ରିୟା, ମଦ୍ୟପାନ, ଦ୍ୟୁତକ୍ରୀଡା, ନାରୀର ଅନୁଧାବନ, ଗୁରୁତର ହିଂସାତ୍ମକ ଦଣ୍ଡବିଧାନ ବା ଆଚରଣ, ଅନ୍ୟ ଅନ୍ୟାୟ ଆଚରଣ ।

ନିରୁକ୍ତରେ କଥିତ ହୋଇଅଛି- ଚୌରକାର୍ଯ୍ୟ, ଗୁରୁପତ୍ନୀ ପ୍ରତି ଯୌନ ଆସକ୍ତି, ବ୍ରହ୍ମହତ୍ୟା, ସୁରାପାନ, ପୁନଃ ପୁନଃ ଦୁଷ୍କୃତ କର୍ମକରଣ, ପାତକ, ଅସତ୍ୟବଚନ ମନୁଷ୍ୟକୁ ପାପବାନ୍ କରେ ।

ବିବର୍ତ୍ତନଶୀଳ, ଅନେକ ସମୟରେ ସଂଘର୍ଷବିକ୍ଷୁବ୍ଧ ଋଗ୍‌ବେଦକାଳୀନ ସମାଜରେ ନୈତିକ ବିଚାରର ମୂଖ୍ୟ ମାନଦଣ୍ଡ ଥିଲା ଋତ ଓ ସତ୍ୟ । ତହିଁରୁ ବିଚ୍ୟୁତି ପ୍ରଧାନ ପାପ ବୋଲି ପରିଗଣିତ ହେଉଥିଲା ।

******

# ଋତ ଓ ସତ୍ୟ

ଋଗ୍‌ବେଦର ଦଶମ ମଣ୍ଡଳର ପ୍ରାୟ ଶେଷ ପ୍ରାନ୍ତସ୍ଥ ୧୯୦ତମ ସୂକ୍ତ ବା ସୃଷ୍ଟି ସୂକ୍ତର ପ୍ରଥମ ଋକ୍ ହେଉଛି-

ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟଜାୟତ
ତତୋ ରାତ୍ର୍ୟଜାୟତ ତତଃ ସମୁଦ୍ରୋ ଅର୍ଣ୍ଣବଃ ।

ଅର୍ଥାତ୍ ପ୍ରଦୀପ୍ତ ତପସ୍ୟାରୁ ଋତ ଓ ସତ୍ୟ ଜାତ ହେଲେ । ତତ୍‌ପରେ ରାତ୍ରି ଜାତ ହେଲା । ପରେ ଜଳମୟ ସମୁଦ୍ର ଜାତ ହେଲା ।

ଋଗ୍‌ବେଦର ପ୍ରଥମ ମଣ୍ଡଳର ପ୍ରଥମ ସୂକ୍ତର ପଞ୍ଚମ ଋକ୍‌ରେ ଅଛି-

ଅଗ୍ନିର୍ହୋତା କବିକ୍ରତୁଃ ସତ୍ୟଶ୍ଚିତ୍ରଶ୍ରବସ୍ତମଃ ।

ଅର୍ଥାତ୍ ଅଗ୍ନି ହୋତା, ସଫଳକର୍ମା, ସତ୍ୟ, ବହୁବିବିଧକୀର୍ତ୍ତିସମନ୍ୱିତ । ସେହି ମଣ୍ଡଳର ଦ୍ୱିତୀୟ ସୂକ୍ତର ଅଷ୍ଟମ ଋକ୍‌ରେ ଅଛି-

ଋତେନ ମିତ୍ରାବରୁଣାବୃତାବୃଧାବୃତସ୍ପୃଶା ।

ମିତ୍ରାବରୁଣଙ୍କୁ ଋତବର୍ଦ୍ଧନକାରୀ, ଋତସ୍ପର୍ଶୀ ବୋଲି ବର୍ଣ୍ଣନା କରାହୋଇଅଛି ।

ଋଗ୍‌ବେଦର ଧାର୍ମିକ, ନୈତିକ ଚିନ୍ତାଧାରାର କେନ୍ଦ୍ରରେ ରହିଛି ଋତ ଓ ସତ୍ୟ । ଶ୍ରୀ ଅରବିନ୍ଦଙ୍କ ଅନୁଗାମୀ ଅଧ୍ୟାପକ ପୁରାଣି ଋଗ୍‌ବେଦରେ ଋତରୁ ଉଦ୍ଭୂତ ୫୧ଟି ଶବ୍ଦ ଅଛି ବୋଲି କହିଅଛନ୍ତି । ଋତ ବା ସତ୍ୟ ଶବ୍ଦ ବା ତହିଁରୁ ଉଦ୍‌ଭୂତ ଶବ୍ଦ ପ୍ରତ୍ୟେକ ଦେବତାଙ୍କଠାରେ ପ୍ରୟୋଗ କରାହୋଇଅଛି ।

ଅଗ୍ନି - 'ତ୍ୱଂ ହି ସତ୍ୟୋ.. (ତୁମେ ହିଁ ସତ୍ୟ) ୫ମ, ୨୩ସୂ, ୨ଋ

ଇନ୍ଦ୍ର - 'ସୋମପା ସତ୍ୟ'.... (ସୋମପାୟୀ, ସତ୍ୟ) ୧ମ, ୨୯ସୂ, ୧ଋ

ଉଷା - 'ସତ୍ୟା ସତ୍ୟେଭିର୍ମହତୀ'... ୭ମ, ୭୫ସୂ, ୭ଋ

ଇନ୍ଦ୍ର ଓ ବ୍ରହ୍ମଣସ୍ପତି - 'ବିଶ୍ୱଂ ସତ୍ୟଂ ମଘବାନା' (ସମସ୍ତ ସତ୍ୟ ତୁମର..) ୨ମ, ୨୪ସୂ, ୧୨ଋ

ସୋମ- ସତ୍ୟଂ ବଦନ୍ ସତ୍ୟକର୍ମନ୍- (ସତ୍ୟବାଦୀ, ସତ୍ୟକର୍ମା) ୯ମ, ୧୧୩ସୂ, ୪ଋ

୩୩ ଦେବତା- ଯୁବାଂ ଦେବାସ୍ତ୍ରୟ ଏକାଦଶାସଃ ସତ୍ୟାଃ ସତ୍ୟସ୍ୟ ଦଦୃଶେ

ପୁରସ୍ତାଦ୍ [ତେତ୍ରିଶ ଦେବତା ସତ୍ୟ ସ୍ୱରୂପ । ସେମାନେ ତୁମ ଦୁହିଙ୍କୁ (ଅଶ୍ୱିଦ୍ୱୟଙ୍କୁ) ସତ୍ୟର ସମ୍ମୁଖରେ ବା ସତ୍ୟପ୍ରତି ଅଗ୍ରସର ହେବାର ଦେଖିଲେ] ୮ମ, ୫୭ସୂ, ୨ର

ଋଭୁ- ସତ୍ୟମନ୍ତାଃ, ୧ମ.୨୦ସୂ.୪ର

ଅଥର୍ବ ବେଦରେ ଅଛି- ସବିତା ସତ୍ୟଧର୍ମା (୧/୨୪/୨)

ଋଷିମାନେ ଦେବତାମାନଙ୍କ ପରି ସତ୍ୟସ୍ୱରୂପ, ସତ୍ୟାଶ୍ରୟୀ । ୩ମ.୫୪ସୂ,୪ର ରେ ପୁରାତନ ଋଷିଗଣଙ୍କୁ 'ସତ୍ୟବାଚଃ' ବା ସତ୍ୟବାଦୀ କୁହା ହୋଇଅଛି ।

ଅଥର୍ବ ବେଦରେ (୧୨ : ୧.୧) ଅଛି-

ସତ୍ୟଂ ବୃହଦ୍ ଋତମ୍ ଉଗ୍ରଂ

ଦୀକ୍ଷା ତପୋ ବ୍ରହ୍ମ ଯଜ୍ଞଃ ପୃଥିବୀଂ ଧାରୟନ୍ତି ।

ବୃହଦ୍ ସତ୍ୟ, ଉଗ୍ର ଋତ, ଦୀକ୍ଷା, ତପ, ବ୍ରହ୍ମ (ପ୍ରାର୍ଥନା), ଯଜ୍ଞ ପୃଥିବୀକୁ ଧାରଣ କରନ୍ତି । ଏହି ଛଅଟି ହେଉଛନ୍ତି ବୈଦିକ ଧର୍ମର ମୌଳିକ ନୀତି ।

ଋଗ୍‌ବେଦର ଦଶମ ମଣ୍ଡଳର ୮୫ ତମ ସୂକ୍ତର ୧ମ ଋକ୍‌ରେ ଅଛି- 'ସତ୍ୟେନୋତ୍ତଭିତା ଭୂମିଃ' ଅର୍ଥାତ୍ ସତ୍ୟ ହିଁ ପୃଥିବୀକୁ ଉତ୍ତମ୍ଭିତ କରି ରଖିଛି ।

'ଋତ' ବା ସେହି ଶବ୍ଦରୁ ଉଦ୍‌ଭୂତ ଶବ୍ଦମାନଙ୍କର ଋଗ୍‌ବେଦର ବିଭିନ୍ନ ଦେବତାମାନଙ୍କ ସମ୍ପର୍କରେ ବ୍ୟାପକ ପ୍ରୟୋଗ ଲକ୍ଷ୍ୟ କରିବା କଥା ।

ଅଗ୍ନି- ଋତଜାତ, ଋତସ୍ୟ ଗୋପା, ଋତଧୀତି, ଋତବିଦ୍, ଋତାବା

ବରୁଣ, ମିତ୍ର, ଅଗ୍ନି- ଋତାବାନୋ ବରୁଣୋ ମିତ୍ରୋ ଅଗ୍ନି

ମିତ୍ର ଓ ବରୁଣ - ଋତାବୃଧୌ, ଋତସ୍ପୃଶା

ନାନା ଦେବତା- ଋତସାପାଃ,

ଉଷା- ଋତାବରୀ, ଋତେଜାଃ

ସୋମ- ଋତସ୍ୟ ଗୋପା, ଋତସ୍ୟ ତନ୍ତୁ, ଋତଦ୍ୟୁମ୍ନ

ଅଦିତି- ଋତାବରୀ

ତ୍ୱଷ୍ଟା- ଋତାବା

ବାୟୁ- ଋତସ୍ପତି

ବରୁଣ- ଋତଂ ବୃହଦ୍

ବୃହସ୍ପତି- ଋତଜ୍ୟ

ଇନ୍ଦ୍ର, ଆଦିତ୍ୟ ଓ ସୂର୍ଯ୍ୟ ତ କେତେକ ସ୍ଥାନରେ ଋତରୂପେ ଅଭିହିତ ହୋଇଛନ୍ତି ।

ଅଗ୍ନିଙ୍କ ପ୍ରତି ସତ୍ୟ, ଋତ ବା ତଦ୍‌ସଂପୃକ୍ତ ଶବ୍ଦମାନଙ୍କର ସର୍ବାଧିକ ପ୍ରୟୋଗ ଋଗ୍‌ବେଦରେ ଦେଖାଯାଏ ।

ଶ୍ରୀ ଅରବିନ୍ଦ କହିଛନ୍ତି, "The Vedic deity Agni is the first of the Powers, the pristine and pre-eminent, that have issued from the vast and secret Godhead. By conscious force of the Godhead the worlds have been created and are governed from within by that hidden and inner Control;...........

x x x x x

...... in the Vedic cosmos Agni appears first as a front of divine Force compact of burning heat and light which forms, assails, enters into, envelops, devours, rebuilds all things in Matter. He is no random fire, his is a flame of force instinct with the light of divine knowledge."

ଋତପାଳନକାରୀ ଋଷିଗଣ ମଧ୍ୟ ବେଦରେ ଋତ୍ୱିକ୍ ବୋଲି ଅଭିହିତ ହୋଇଅଛନ୍ତି । ସାୟଣ 'ଋତ' ଶବ୍ଦର ବିଭିନ୍ନ ସ୍ଥାନରେ ବିଭିନ୍ନ ଅର୍ଥ କରିଛନ୍ତି , ଯଥା :

ଋତ- <u>ସତ୍ୟ</u>- ଋତସ୍ୟ ପନ୍ଥା (୧ମ, ୨୩ସୂ.୬ର)- ସତ୍ୟସ୍ୟ ପନ୍ଥା

ଋତାବା (୪ମ, ୨ସୂ, ୧ର)- ସତ୍ୟବାନ୍

ଋତାବରୀ (୩ମ, ୬୧ସୂ, ୬ର)- ସତ୍ୟବତୀ

ଋତ-<u>ଉଦକ</u>- ଋତସ୍ପୃଶା (୧ମ,୨ସୂ,୮ର)- ଉଦକାଦୀନ୍ ସ୍ପୃଶନ୍ତୌ

ଋତାବୃଧୌ (୧ମ.୨ସୂ,୮ର)- ସତ୍ୟଂ ବା ଯଜ୍ଞଂ ବା ଉଦକାଦୀନାଂ ଅନ୍ୟତମସ୍ୟ ବର୍ଦ୍ଧୟିତାରୌ

(ସାୟଣ ଏ କ୍ଷେତ୍ରରେ ଯାସ୍କଙ୍କ 'ନିରୁକ୍ତ' ଅନୁଯାୟୀ 'ଋତ'ର ୩ଟି ଅର୍ଥ ଦେଇଛନ୍ତି- ସତ୍ୟ, ଯଜ୍ଞ, ଉଦକ)

ଋତସ୍ୟ ଧାରା (୫ମ, ୧୨ସୂ, ୨ର)- ଉଦକସ୍ୟ ଧାରା

ଋତଜାତାଃ (୩ମ, ୫୪ସୂ, ୧୩ର)- ଋତଂ ଉଦକଂ ଜାତଂ ଯେଭ୍ୟସ୍ତେ ଋତଜାତାଃ । କିନ୍ତୁ ଗୋଟିଏ ବିକଳ୍ପ ଅର୍ଥ 'ଯଜ୍ଞ' ମଧ୍ୟ ଦିଆ ହୋଇଅଛି- ଉଦକାଦ୍ ଯଜ୍ଞାଦ୍ ବା ପ୍ରାଦୁର୍ଭୂତା ।

ଋତ-<u>ଯଜ୍ଞ</u>- ଋତସ୍ୟ ଧାମ (୧୦ମ ୧୨୪ ସୂ.୩ର)- ଯଜ୍ଞସ୍ୟ ଧାମାନି

ଋତାୟ ସପ୍ତଦଧିକ୍ଷେ (୧୦ମ.୮ସୂ.୪ଋ)- ଯଜ୍ଞାର୍ଥ ଦଧିକ୍ଷେ ଧାରୟସି ।

ଋତସ୍ୟ ଯୋନା (୯ମ.୭୩ସୂ.୧ଋ)- ସତ୍ୟଭୂତସ୍ୟ ଯଜ୍ଞସ୍ୟ ଯୋନା

ଋତସ୍ୟ ଗୋପା (୯ମ.୭୩ସୂ.୮ଋ)- ସତ୍ୟଭୂତସ୍ୟ ଯଜ୍ଞସ୍ୟ ଗୋପା- ଗୋପାୟିତା

ଋତସ୍ୟ ଗୋପା (୧୦ମ.୮ସୂ.୫ଋ)- ଯଜ୍ଞସ୍ୟ ରକ୍ଷକଃ

ଋତୟନ୍ତ (୮ମ, ୩ସୂ, ୧୪ଋ)- ଯଜ୍ଞମୈଚ୍ଛନ୍ତ୍

ଋତ- ଆଦିତ୍ୟ-ଋତସ୍ୟ (୧ମ, ୧୨୩ସୂ, ୧୩ଋ)-ସତ୍ୟଭୂତସ୍ୟ ଆଦିତ୍ୟସ୍ୟ

ଋତସ୍ୟ ସଦ୍ମ (୩ମ, ୫୫ସୂ, ୧୪ଋ)- ଋତସ୍ୟ ସତ୍ୟଭୂତସ୍ୟ ଆଦିତ୍ୟସ୍ୟ

| | | |
|---|---|---|
| ଋତସ୍ୟ<br>ଋତସ୍ୟ | (୪ମ,୨୩ସୂ, ୮ଋ) | ଋତ ଶବ୍ଦେନ ଇନ୍ଦ୍ରୋ ବା ଆଦିତ୍ୟୋ ବା ସତ୍ୟଂ ବା ଯଜ୍ଞ |
| ଋତସ୍ୟ<br>ଋତେନ | (୪ମ, ୨୩ସୂ, ୯ଋ) | |
| ଋତଂ<br>ଋତାୟୁ | (୪ମ, ୨୩ସୂ, ୧୦ଋ) | |

ସର୍ବାଧିକ ସ୍ଥଳରେ ସାୟଣ 'ଋତ'ର ଅର୍ଥ 'ଯଜ୍ଞ' କରିଛନ୍ତି । କେତେକ ସ୍ଥାନରେ 'ସତ୍ୟ'ର ଅର୍ଥ ମଧ 'ଯଜ୍ଞ' କରାଯାଇଅଛି ।

Monier Williams ଅନେକ କ୍ଷେତ୍ରରେ 'ଋତ' ଶବ୍ଦର ବା 'ଋତ' ଶବ୍ଦ ସମ୍ପର୍କୀୟ ଶବ୍ଦର ସାୟଣ-ପ୍ରଦତ୍ତ ଅର୍ଥ ଗ୍ରହଣ କରିନାହାନ୍ତି । ସେ 'ଋତ'ର ଅର୍ଥ ଦେଇଛନ୍ତି- 'Fixed order, law, rule (esp. in religion), sacred or pious action or custom, divine law, faith, divine truth, ଏବଂ ଯାସ୍କ ବା ସାୟଣଙ୍କ ପ୍ରଦତ୍ତ ଅର୍ଥ- 'ଜଳ', 'ସୂର୍ଯ୍ୟ' ବା 'ଆଦିତ୍ୟ', 'ଯଜ୍ଞ' ପ୍ରଭୃତି ଗ୍ରହଣ କରିନାହାନ୍ତି ।

Griffith ମଧ ସାଧାରଣତଃ 'ଋତମ୍'ର ଅର୍ଥ Law or Eternal Law or Order- ଶାଶ୍ୱତ ନିୟମ ବା ଶୃଙ୍ଖଳା କରିଅଛନ୍ତି, ଯଥା; 'ଋତସ୍ୟ ସଦ୍ମ'ର ଅର୍ଥ 'ଆଦିତ୍ୟଙ୍କ ସ୍ଥାନ' ବା 'ଯଜ୍ଞର ସ୍ଥାନ' ନ କରି 'Seat of Law Eternal' କରିଛନ୍ତି । 'ଋତଜାତାଃ'ର ଅର୍ଥ କରିଛନ୍ତି 'Sons of Order', 'ଋତସ୍ୟ ବୃଷ୍ଟେ'ର ଅର୍ଥ କରିଛନ୍ତି 'Full streams or showers of Eternal Law or Order'.

Oldenbergଙ୍କ ମତରେ 'ଋତ'ର ଅର୍ଥ- ସୃଷ୍ଟିର ସମସ୍ତ ବସ୍ତୁର ଗତି ବା କାର୍ଯ୍ୟଧାରା, ପ୍ରକୃତି, ସୃଷ୍ଟିର ଶୃଙ୍ଖଳା ବା ବିଶ୍ୱର ଶୃଙ୍ଖଳା, ବିଶ୍ୱର ନିୟାମକ ନୀତି, ମାନବ ଜୀବନର ନୀତି ପରି ପ୍ରକୃତିର ନୀତି, ସତ୍ୟ ବା ଯଥାର୍ଥ ଶୃଙ୍ଖଳା, ଯଜ୍ଞ, ପବିତ୍ର (Course of Things, Nature, Cosmic Order, World Ordinance, the Law of Nature as in human life, Proper Order, Sacrifice, Sacred)

ଡ଼କ୍ଟର କାନେଙ୍କ ମତରେ 'ଋତ'ର ଅର୍ଥ ବିଶ୍ୱର ନିୟମିତ ବା ସାଧାରଣ ଶୃଙ୍ଖଳା, ଦେବଗଣଙ୍କର ପୂଜାପଦ୍ଧତିର ଭ୍ରାନ୍ତିଶୂନ୍ୟ ବା ନିର୍ଭୁଲ ଶୃଙ୍ଖଳିତ ଧାରା, ମନୁଷ୍ୟର ନୈତିକ ଆଚରଣ- (The regular or general order in the cosmos, the correct and ordered way of the cult of the gods, the moral conduct of man.)

ପୂର୍ବରୁ ଆଂଶିକ ଭାବରେ ଉଦ୍ଧୃତ ଦଶମ ମଣ୍ଡଳର ୮୫ତମ ସୂକ୍ତର ପ୍ରଥମ ଋକ୍‌ରେ ସତ୍ୟ ଓ ଋତର ସୂକ୍ଷ୍ମ ପାର୍ଥକ୍ୟ ସୂଚିତ ହୋଇଅଛି-

ସତ୍ୟେନୋତ୍ତଭିତା ଭୂମିଃ ସୂର୍ଯ୍ୟେଣୋତ୍ତଭିତା ଦ୍ୟୌଃ ।
ଋତେନାଦିତ୍ୟାସ୍ତିଷ୍ଠନ୍ତି ଦିବି ସୋମୋ ଅଧିଶ୍ରିତଃ ।।

ଅର୍ଥାତ୍ ସତ୍ୟହିଁ ପୃଥିବୀକୁ ଉତ୍ତମ୍ଭିତ କରି ରଖିଛନ୍ତି, ସୂର୍ଯ୍ୟ ସ୍ୱର୍ଗକୁ ଉତ୍ତମ୍ଭିତ କରି ରଖିଛନ୍ତି । ଋତଙ୍କର ପ୍ରଭାବରେ ଆଦିତ୍ୟଗଣ ଆକାଶରେ ଅବସ୍ଥାନ କରିଛନ୍ତି, ସୋମ ସେହି ସ୍ଥାନ ଆଶ୍ରୟ କରି ରହିଛନ୍ତି ।

ଋତ ଓ ସତ୍ୟ ପରସ୍ପର ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ସେଇଥିପାଇଁ 'ଋତ'ର ଅର୍ଥ 'ସତ୍ୟ' ବୋଲି ଅନେକ ସମୟରେ କରାଯାଇଥାଏ ।

ଋତ ସମଗ୍ର ବିଶ୍ୱସୃଷ୍ଟିର ଶାଶ୍ୱତ, ନିୟମିତ, ଶୃଙ୍ଖଳିତ ଧାରା ଓ ସେଥିର ଅନ୍ତର୍ନିହିତ ନୀତି- ଦିବ୍ୟ ସତ୍ୟ, ଦିବ୍ୟ ନିୟାମକ ନୀତି । ସେହି ନୀତିରେ ବିଶ୍ୱର ସମସ୍ତ ବିଭାବ, ପ୍ରକୃତିର ସମସ୍ତ ବିଭାବ ପରିଚାଳିତ । ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ,ସେହି ନୀତିରେ ଶୃଙ୍ଖଳିତ ଭାବରେ ଗତି କରୁଛନ୍ତି, ନିଜ ନିଜର କାର୍ଯ୍ୟ କରୁଛନ୍ତି । ଦିବା ରାତ୍ରି ସଂଘଟିତ ହେଉଅଛି । ଋତୁ ପରିବର୍ତ୍ତିତ ହେଉଅଛି । ('ଋତୁ' ଶବ୍ଦ 'ଋତ'ରୁ ଆସିଛି) । ଧରା ଉତ୍ତପ୍ତ ହେଉଅଛି । ଜଳରାଶି ବାଷ୍ପରେ ପରିଣତ ହୋଇ ଆକାଶରେ, ମେଘରେ ପରିଣତ ହେଉଛନ୍ତି । ପୁଣି ସେହି ମେଘଗୁଡ଼ିକ ଜଳବର୍ଷଣ କରୁଛନ୍ତି । ବାୟୁ, ଅଗ୍ନି, ଜଳ ପ୍ରଭୃତି ପ୍ରକୃତିର ବିଭିନ୍ନ ବିଭାବ ମଧ୍ୟରେ ସଂହତି ରହୁଛି ସେହି ନୀତି ହେତୁ । କୌଣସି ବିଭାବ ସେହି ନୀତିର ବ୍ୟତିକ୍ରମ କରୁନାହିଁ- କରିପାରିବ ନାହିଁ । ବୈଦିକ ଦେବତାଗଣ ସେହି ଶାଶ୍ୱତ ନୀତି ଜାଣନ୍ତି- ସେମାନେ ଋତବିଦ୍- 'ଋତ' କଣ ଜାଣନ୍ତି । ସେମାନେ ଋତବାନ୍

ବା ଋତାବା- ଋତାନୁଯାୟୀ କାର୍ଯ୍ୟ କରନ୍ତି । ଉଷା ଋତାବରୀ, ଅଦିତି ଋତାବରୀ । 'ଋତ'ରୁ ସେମାନଙ୍କର ଜନ୍ମ- ଶାଶ୍ୱତ ବିବର୍ତ୍ତନ ନୀତି ଋତରୁ ସେମାନେ ଉଦ୍‌ଭୂତ । ସେମାନେ ଋତଜା । ସେମାନେ ନିଜେ ସେହି 'ଋତଂ ବୃହତ୍', ବିରାଟ, ବିପୁଳ, ବ୍ୟାପକ ଋତର ପ୍ରତୀକ- ସେହି ଦିବ୍ୟ ସତ୍ୟର, ଦିବ୍ୟନୀତିର ପ୍ରତୀକ, ପ୍ରତିଭୂ । ସେହି ଋତହିଁ ସେମାନଙ୍କର ସ୍ୱରୂପ, ତାହାହିଁ ସେମାନଙ୍କର ପନ୍ଥା । ତହିଁର ବ୍ୟତିକ୍ରମ କରିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ପ୍ରଥମ ମଣ୍ଡଳରେ ଶୁନଃଶେପଙ୍କର ବନ୍ଦନା ମାଧ୍ୟମରେ ବରୁଣଙ୍କୁ ଏହି ଶାଶ୍ୱତ ନୀତିର, ଋତର ରକ୍ଷକ ରୂପେ ବର୍ଣ୍ଣନା କରାଯାଇଅଛି । ଋତ ଉଗ୍ର, ତାହାର ବ୍ୟତିକ୍ରମ କ୍ଷମଣୀୟ ନୁହେଁ ।

ଏହି ଦିବ୍ୟ ଶାଶ୍ୱତ ନୀତିର, ଋତର ପ୍ରତିଫଳନ ଘଟିଛି ମାନବ ଜୀବନରେ, ମାନବ ଜୀବନର ଧାର୍ମିକ, ନୈତିକ ଭିତ୍ତି ରୂପରେ । ସେହି ଭିତ୍ତି ହେତୁ, ସେହି ଋତ ବା ସତ୍ୟ ହେତୁ ମାନବଜଗତରେ ଶୃଙ୍ଖଳା ରହିଛି । ଦେବଗଣ, ପ୍ରକୃତିର ବିଭିନ୍ନ ବିଭାବଗଣ ସେହି ଶାଶ୍ୱତ ନୀତିର ବ୍ୟତିକ୍ରମ କଲେ, ଋତର ପନ୍ଥାରୁ ବିଚ୍ୟୁତ ହେଲେ ବିଶ୍ୱଶୃଙ୍ଖଳା ଭାଙ୍ଗିପଡ଼ିବ । ସେହିପରି ମାନବ ଜୀବନରେ ସେହି ଋତର ଯେଉଁ ପ୍ରତିଫଳନ ଘଟିଛି, ସେଥିରୁ ସାମାନ୍ୟ ବିଚ୍ୟୁତି ଘଟିଲେ, ବ୍ୟତିକ୍ରମ ଘଟିଲେ ଚରମ ବିଶୃଙ୍ଖଳା ଦେଖାଦେବ । ଅନୃତ ସତ୍ୟର, ନ୍ୟାୟର ବିପରୀତ, ପୁଣ୍ୟର ବିପରୀତ । ଅନୃତ ଅବିଧେୟ ।

ଏହି ପବିତ୍ର ଶାଶ୍ୱତ ନୀତି ବା ଋତକୁ ୪ର୍ଥ ମଣ୍ଡଳର ୨୩ତମ ସୂକ୍ତର ୮ମ, ୯ମ, ୧୦ମ ଋକ୍‌ରେ ଋତଦେବ ବୋଲି ଅଭିହିତ କରାଯାଇଅଛି । ଋତଦେବଙ୍କ ଗୌରବ ଗାନ କରାଯାଇଅଛି । ସେହି ମଣ୍ଡଳର ୪୦ ତମ ସୂକ୍ତର ଶେଷ ଋକ୍ (ହଂସବତୀ ଋକ୍)ରେ ଋତ ସର୍ବତ୍ର ବିଦ୍ୟମାନ ପରମାତ୍ମା ବା ପରବ୍ରହ୍ମ ବୋଲି ସୂଚିତ ହୋଇଛି- ସାୟଣ ଓ ମହୀଧର ଉଭୟେ ଏହି ମତ ପ୍ରକାଶ କରିଅଛନ୍ତି । ଋତ ସତ୍ୟରୂପେ ମାନବ ଜୀବନରେ ନୈତିକତାର ଭିତ୍ତି । ଦଶମ ମଣ୍ଡଳର ୧୩୩ ସୂକ୍ତର ୬ଷ୍ଠ ଋକ୍‌ରେ ଋଷି ଇନ୍ଦ୍ରଙ୍କୁ ପ୍ରାର୍ଥନା କରୁଛନ୍ତି, "ଆମକୁ ଋତର ପନ୍ଥାରେ ସମସ୍ତ ପାପ, ପୀଡ଼ା, ଦୁଃଖର ଦୂରକୁ ନେଇଯାଅ ।"

ସତ୍ୟର ଆପାତତଃ ଅର୍ଥଠାରୁ ଋତର ଅର୍ଥ ଅଧିକ ବ୍ୟାପକ । କିନ୍ତୁ ଋଗ୍ ବେଦରେ ଦେବତାମାନଙ୍କୁ ମଧେ ମଧେ ସତ୍ୟ, ସତ୍ୟବାନ୍ ବୋଲି ତ ବର୍ଣ୍ଣନା କରାହୋଇଛି; ସମୟ ସମୟରେ 'ସତ୍ୟ'କୁ ଋତ ଅର୍ଥରେ ବ୍ୟବହାର କରାହୋଇଛି ବୋଲି ମନେହୁଏ । ଯଥା: ୧୦ମ ମଣ୍ଡଳର ୩୭ତମ ସୂକ୍ତର ଦ୍ୱିତୀୟ ଋକ୍ ହେଉଛି-

ସା ମା ସତ୍ୟୋକ୍ତିଃ ପରି ପାତୁ ବିଶ୍ୱତୋ ଦ୍ୟାବା ଚ ଯତ୍ର ତେନନ୍ନହାନି ଚ ।
ବିଶ୍ୱମନ୍ୟନ୍ନି ବିଶତେ ଯଦେଜତି ବିଶ୍ୱାହାପୋ ବିଶ୍ୱହୋଦେତି ସୂର୍ଯ୍ୟଃ ।

ସେହି ଯେଉଁ ସତ୍ୟୋକ୍ତି ଯାହାକୁ ଅବଲମ୍ବନ କରି ଆକାଶ ଓ ଦିବସ ରହିଅଛନ୍ତି, ସାରା ବିଶ୍ୱ ଓ ପ୍ରାଣୀଗଣ ଯାହାକୁ ଆଶ୍ରୟ କରିଅଛନ୍ତି, ଯାହାର ପ୍ରଭାବରେ ପ୍ରତ୍ୟହ ଜଳ ପ୍ରବାହିତ ହେଉଅଛି ଏବଂ ସୂର୍ଯ୍ୟ ଉଦିତ ହେଉଅଛନ୍ତି, ସେହି ସତ୍ୟୋକ୍ତି ଯେପରି ମତେ ସର୍ବପ୍ରକାରେ ରକ୍ଷା କରନ୍ତୁ ।

Abel Bergaine ମତ ପ୍ରକାଶ କରିଛନ୍ତି ଯେ ଯଜ୍ଞ ହେଉଛି ଆକାଶ ଓ ବାୟୁମଣ୍ଡଳର ମୁଖ୍ୟ ବିଭାବ ଗୁଡ଼ିକର କ୍ରିୟାର ଅନୁସରଣ ମାତ୍ର । ଆଲୋକ ଓ ବର୍ଷା- ଅଗ୍ନି ଓ ଜଳ- ଦୁଇଟି ଯାକ ଏକାନ୍ତ ଆବଶ୍ୟକ । ଋତର ପ୍ରଶସ୍ତ ପନ୍ଥା ଅନୁସରଣ କରି ଦେବଗଣ- ପ୍ରକୃତିର ଶକ୍ତିଗଣ- ସେମାନଙ୍କୁ ସର୍ବଦା ଉତ୍ପାଦନ କରୁଛନ୍ତି ମନୁଷ୍ୟମାନଙ୍କ ମଙ୍ଗଳ ପାଇଁ । କୃତଜ୍ଞ ମନୁଷ୍ୟଗଣ ଦେବଗଣଙ୍କୁ ଉତ୍ସାହିତ କରିବା ପାଇଁ ନାନାବିଧ ଦ୍ରବ୍ୟ ପ୍ରଦାନ କରନ୍ତି, ପ୍ରାର୍ଥନା କରନ୍ତି, ପ୍ରତିଭାସମ୍ପନ୍ନ, ରହସ୍ୟମୟ ଶକ୍ତିସମ୍ପନ୍ନ, ଦିବ୍ୟବାକ୍‌ସମ୍ପନ୍ନ ଅଳ୍ପ କେତେକ ବ୍ୟକ୍ତିଙ୍କ ମାଧମରେ । ସେହିମାନେ ହେଲେ ପୁରୋହିତ । ଅରଣିରେ ସେମାନେ ପୃଥିବୀରେ ଅଗ୍ନି ଉତ୍ପାଦନ କରନ୍ତି । ମେଘ-ଗାଭୀର ସ୍ତନରୁ ବୃଷ୍ଟି ବର୍ଷିତ ହେଲାପରି ପାର୍ଥିବ ଗାଭୀର ସ୍ତନରୁ ଦୁଗ୍ଧ ନିଃସୃତ ହୁଏ । ଦେବଗଣ ଆକାଶରେ କେଉଁ ନିଭୃତ କୋଣରେ ଅମୃତରୂପକ ସୋମ ପ୍ରସ୍ତୁତ କରି ସ୍ୱଶକ୍ତି ବର୍ଦ୍ଧନ ପାଇଁ ତାହା ପାନ କରନ୍ତି । ପୃଥିବୀରେ ଗୋଦୁଗ୍ଧ ମିଶ୍ରିତ ହୁଏ ସୋମଲତାର ରସରେ- ଯେଉଁ କୁଣ୍ଡରେ ସୋମ ପ୍ରସ୍ତୁତ ହୁଏ ତା'ର ନାମ ମଧ 'ସମୁଦ୍ର'- ଯଜ୍ଞବେଦି ପରିଣତ ହୁଏ ବିବସ୍ୱତଙ୍କ ଆସନରେ । ଯଜ୍ଞ ହେଉଛି ପାର୍ଥିବ ଋତ- ଆକାଶ ଓ ମର୍ତ୍ତ୍ୟ ଭିତରେ ତାହା ସେତୁ ସଦୃଶ । ତାହା ମିଳିତ ହୁଏ ସ୍ୱର୍ଗୀୟ ଋତ ସହିତ । ମିଳେ ଦେବତାଙ୍କଠାରୁ ଦକ୍ଷିଣା ଆଲୋକ ରୂପେ, ବର୍ଷାରୂପେ । ସ୍ୱର୍ଗୀୟ ବିଶ୍ୱଶୃଙ୍ଖଳା- ରୂପକ ଋତର ବ୍ୟତିକ୍ରମ ହେଲେ ବିଶ୍ୱବିପନ୍ନ ହେବ । ପାର୍ଥିବ ଋତର ବ୍ୟତିକ୍ରମ ହେଲେ ମନୁଷ୍ୟ ବିପନ୍ନ ହେବ । ବିଧିବିଧାନର ଯଥାର୍ଥ ଅନୁସରଣ ବିନା ଯଜ୍ଞ ଫଳହୀନ । ଅବ୍ରହ୍ମ ଅର୍ଥାତ୍ ପ୍ରାର୍ଥନାବିହୀନ ଯଜ୍ଞ ମୂଲ୍ୟହୀନ, ଫଳହୀନ । ଯଜ୍ଞବିଧି ହେଉଛି ବିଶ୍ୱବ୍ରହ୍ମାଣ୍ଡର ଶାଶ୍ୱତ ବିଧି ବା ନୀତିର ଅନୁରୂପ ।

ଏହିପରି ପ୍ରକାରାନ୍ତରେ ଋତର ଅର୍ଥ ଯଜ୍ଞ କରାହୋଇଛି । ଆଗରୁ କୁହାହୋଇଅଛି, ସାୟଣ କିପରି ଅନେକ ସ୍ଥଳରେ ଋତର ଅର୍ଥ ଯଜ୍ଞ କରିଛନ୍ତି ।

ଋତ ସୃଷ୍ଟିକୁ, ବିଶ୍ୱବ୍ରହ୍ମାଣ୍ଡକୁ ଶୃଙ୍ଖଳିତ କରେ, ମାନବ ଜୀବନରେ ନୈତିକ ଶୃଙ୍ଖଳାରୂପେ ପରିସ୍ଫୁଟିତ ହୁଏ । ଋତ ମଧ ସୌନ୍ଦର୍ଯ୍ୟର ଭିତ୍ତି, ରୂପର ଶୃଙ୍ଖଳା, ସୁସଂହତ ରୂପର କାରଣ । ଦେବଗଣ ଋତବାନ୍- ଶାଶ୍ୱତ ବିଧି ବା ନୀତି ଜାଣନ୍ତି, ପାଳନ କରନ୍ତି । ପୁଣି ସେହି ହେତୁରୁ ସେମାନେ ସୌନ୍ଦର୍ଯ୍ୟରେ ମହିମାନ୍ୱିତ । କବି ଋଷିଗଣ, ଋତ ବିଷୟରେ ଅବହିତ ଋତ୍ୱିକ୍‌ଗଣ ବାରମ୍ବାର ଗାଇଛନ୍ତି ଦେବଗଣଙ୍କର ଅପରୂପ ରୂପର ମହିମା ।

'ଭୁବନାନାଂ ଧର୍ତ୍ତା' ବରୁଣ, କବି ବରୁଣ କବିପ୍ରତିଭା ବଳରେ (କାବ୍ୟା) ବହୁରୂପ (ପୁରୁରୂପଂ) ପୋଷଣ କରନ୍ତି (ସ କବି କାବ୍ୟା ପୁରୁରୂପଂ ଦ୍ୟୌରିବ ପୁଷ୍ୟତି- ୮ମ, ୪୧ସୂ, ୫ଋ) । ଋତାବରୀ, ଋତପାଳନକର୍ତ୍ତ୍ରୀ, ଋତବତୀ ଉଷା 'ଋତେନ ମହତୀ'- ଋତ ହେତୁ ମହିମାମୟୀ, ଶୋଭାମୟୀ (୫ମ, ୮୦ସୂ, ୧ଋ) । ବାରମ୍ବାର ଉଷାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରାହୋଇଅଛି ଉଚ୍ଛ୍ୱସିତ ଭାବରେ, କାବ୍ୟିକ ଭାଷାରେ । ୧ମ, ୯୨ସୂ, ୪ଋ. ରେ ଉଷାଙ୍କୁ ସୁନ୍ଦର ସୂଚିକର୍ମବିଶିଷ୍ଟବସ୍ତ୍ରପରିହିତା ନର୍ତ୍ତକୀତୁଲ୍ୟା (ନୃତୁରିବ) ବୋଲି ବର୍ଣ୍ଣନା କରାଯାଇଅଛି । ଇନ୍ଦ୍ରଙ୍କୁ ମଧ ସ୍ୱର୍ଗପରି ସୁଦୃଶ୍ୟ ନୃତ୍ୟରତ ନର୍ତ୍ତକ ରୂପେ ବର୍ଣ୍ଣନା କରାଯାଇଅଛି (୬ମ, ୨୯ସୂ, ୩ଋ.) । ତାଙ୍କର 'ଶ୍ରୀ' ଦ୍ୱାରା, ସୌନ୍ଦର୍ଯ୍ୟ ଦ୍ୱାରା ସେ ଭକ୍ତଗଣଙ୍କୁ ଆକର୍ଷଣ କରନ୍ତି । ୮ମ, ୬୮ସୂ, ୩ଋ,ରେ ମଧ ଇନ୍ଦ୍ର 'ନୃତୁଃ' ବା ନର୍ତ୍ତକ ରୂପେ ବର୍ଣ୍ଣିତ ହୋଇଅଛନ୍ତି । ୬ମ, ୬୩ସୂ, ୫ଋ.ରେ ଅଶ୍ୱିଦ୍ୱୟ 'ନତୁ' ବା ନୃତ୍ୟଶୀଳ ବୋଲି ଋଷି କହିଅଛନ୍ତି । ଉଷାଙ୍କର, ଇନ୍ଦ୍ରଙ୍କର, ଅଶ୍ୱିଦ୍ୱୟଙ୍କର ରମଣୀୟ ନୃତ୍ୟତୁଲ୍ୟ ଗତି ଯେପରି ବିଶ୍ୱର ଶାଶ୍ୱତ ବିଧିନିୟମିତ ଅପରୂପ ଛନ୍ଦ । ସୃଷ୍ଟିର ସୌନ୍ଦର୍ଯ୍ୟ ମୂଳରେ ରହିଛି ଋତ । ୪ମ, ୨୩ସୂ, ୯ଋ.ରେ ସୂଚିତ ହୋଇଅଛି ଯେ ଦୃଢ଼, ସୁଶୋଭନବପୁବିଶିଷ୍ଟ ଋତଙ୍କର ବହୁବିଧ ଆନନ୍ଦଦାୟକ ରୂପ ଅଛି । ସତ୍ୟ, ଶିବ, ସୁନ୍ଦରର ମିଳନ ଘଟିଛି ଋତରେ । ପୂର୍ବରୁ ଉଲ୍ଲେଖ କରାଯାଇଅଛି, ୪ର୍ଥ ମଣ୍ଡଳର ହଂସବତୀ ଋକ୍‌ର ଟୀକା କରିବାକୁ ଯାଇ ସାୟଣ ଓ ମହୀଧର ଋତ ହିଁ ପରଂବ୍ରହ୍ମ ବୋଲି କହିଅଛନ୍ତି । ପରଂବ୍ରହ୍ମ ସତ୍ୟ, ଶିବ, ସୁନ୍ଦର ।

ଋତ ମଧ ଆନନ୍ଦର, ମାଧୁର୍ଯ୍ୟର ମୂଳରେ ଅଛି । ଋତପାଳନକାରୀ ପାଇଁ ବାୟୁପ୍ରବାହଗଣ ମାଧୁର୍ଯ୍ୟଭରା, ନଦୀଗଣ ତାଙ୍କ ପାଇଁ ମାଧୁର୍ଯ୍ୟ ବର୍ଷଣ କରନ୍ତି- ମଧୁବାତା ଋତାୟତେ, ମଧୁ କ୍ଷରନ୍ତି ସିନ୍ଧବଃ (୧ମ,୯୦ସୂ,୬ଋ) ।

ଋତ ଓ ସତ୍ୟ ବର୍ଣ୍ଣବିଭାଗର ମୌଳିକ ଭିତ୍ତି । ଶାଶ୍ୱତ ବିଶ୍ୱନୀତି ବା ବିଧି ଋତର ରକ୍ଷକ ମୁଖ୍ୟତଃ ବରୁଣ ଦେବ । ସେଥିପାଇଁ ତାଙ୍କୁ ବୈଦିକ ସୂକ୍ତମାନଙ୍କରେ ସ୍ଥଳେ ସ୍ଥଳେ ସମ୍ରାଟ୍ ବା ସାମ୍ରାଜ୍ୟଲାଭ ପାଇଁ ଉଦ୍‌ଯୋଗୀ ବୋଲି ଅଭିହିତ କରାଯାଇଅଛି । (ଯଥା : ନି ଷସାଦ ଧୃତବ୍ରତୋ ବରୁଣଃ ପସ୍ତ୍ୟାସ୍ୱା । ସାମ୍ରାଜ୍ୟାୟ ସୁକ୍ରତୁଃ ।। ୧ମ. ୨୫ସୂ,୧୦ଋ) । କେତେକ ସ୍ଥାନରେ ମିତ୍ର ଓ ବରୁଣ ଉଭୟଙ୍କୁ ଋତର ରକ୍ଷକ ରୂପେ ସ୍ତୁତି କରାଯାଇଅଛି । ୮ମ,୨୫ସୂ.ରେ ବାରମ୍ବାର ସେମାନଙ୍କୁ 'ଋତାବାନା' (୪ଋ.୭ଋ,୮ଋ) ବୋଲି, 'ସମ୍ରାଟ୍' ବୋଲି ବର୍ଣ୍ଣନା କରାଯାଇଅଛି । 'କ୍ଷତ୍ର' ଶବ୍ଦର ଅର୍ଥ 'ଶକ୍ତି', 'ଆଧିପତ୍ୟ' । ୧ମ ମଣ୍ଡଳର ପୂର୍ବୋକ୍ତ ସୂକ୍ତରେ ବରୁଣ 'କ୍ଷତ୍ରଶ୍ରିୟ' ବୋଲି ବର୍ଣ୍ଣିତ ହୋଇଛନ୍ତି (କ୍ଷତ୍ରଶ୍ରିୟଂ ବରୁଣଂ- ୫ମ ଋକ୍) । 'କ୍ଷତ୍ର' ଶବ୍ଦରୁ ନିଷ୍ପନ୍ନ ହୋଇଅଛି 'କ୍ଷତ୍ରିୟ' ଶବ୍ଦ । ୮ମ, ୨୫ସୂ, ୮ଋ.ରେ ମିତ୍ର, ବରୁଣଙ୍କ ପ୍ରତି 'କ୍ଷତ୍ରିୟ' ଶବ୍ଦ ପ୍ରୟୋଗ କରାହୋଇଅଛି- 'ଋତାବାନା ନି ଷେଦତୁଃ ସାମ୍ରାଜ୍ୟାୟ ସୁକ୍ରତୁ । ଧୃତବ୍ରତା କ୍ଷତ୍ରିୟା କ୍ଷତ୍ରମାଶତୁଃ ।।'- 'ଋତର, ଶାଶ୍ୱତ ନୀତିର ଧାରକ,

ରକ୍ଷକ, ସୁକର୍ମା- ଅମିତଶକ୍ତିଶାଳୀ ମିତ୍ର ଓ ବରୁଣ ସାମ୍ରାଜ୍ୟ ଲାଭ ପାଇଁ ଉପସ୍ଥିତ ହୋଇଅଛନ୍ତି- ସେମାନେ ଧୃତବ୍ରତ-ବ୍ରତରୁ, ନିୟମରୁ ଅବିଚ୍ୟୁତ, କ୍ଷତ୍ରିୟ, (ପରାକ୍ରମୀ), ସେମାନେ 'କ୍ଷତ୍ର' ଶକ୍ତି ବା ଆଧିପତ୍ୟ ବିସ୍ତାର କରିଛନ୍ତି ।' ପାର୍ଥିବ ମାନବଜୀବନର ଋତର, ଶୃଙ୍ଖଳାର ବା ବିଧିର ରକ୍ଷକ କ୍ଷତ୍ରିୟ- ରାଜା । ବେଦରେ ପ୍ରଥମେ ଶାସକଙ୍କ ପ୍ରତି 'ରାଜନ୍ୟ' ଶବ୍ଦ ପ୍ରୟୋଗ କରାଯାଉଥିଲା । ପରେ 'କ୍ଷତ୍ରିୟ' ଶବ୍ଦ ପ୍ରୟୋଗ କରାହେଲା ।

ଯେଉଁମାନେ ପରମ ସତ୍ୟର, ବ୍ରହ୍ମ (ଆଧ୍ୟାତ୍ମିକ ବା ଧାର୍ମିକ ପ୍ରଜ୍ଞା)ର ଅନୁସରଣ କଲେ, ବ୍ରହ୍ମ ବା ଦେବସ୍ତୁତିମାନ ରଚନା କଲେ, ସେମାନେ ହେଲେ ବ୍ରାହ୍ମଣ, ହେଲେ ଯଜ୍ଞାଦି ଧାର୍ମିକାନୁଷ୍ଠାନମାନଙ୍କର ବିଧିଜ୍ଞାତା ପୁରୋଧା ।

ଋତ ଓ ସତ୍ୟ ମଧ୍ୟରେ ପାର୍ଥକ୍ୟ ସୂଚାଇ ଅରବିନ୍ଦ ତାଙ୍କର The Secret of the Veda ବହିରେ ଲେଖିଛନ୍ତି- "The defect of the translation is that we have had to employ one and the same word for *satyam* and *ṛtam* whereas, as we see in the formula *satyam ṛtam bṛhat,* there was a distinction in the Vedic mind between the precise significances of the two words."

ଉପନିଷଦ୍‌ର 'ସତ୍ୟଂ ଋତଂ ବୃହଦ୍'କୁ ସେ ଅନୁବାଦ କରିଛନ୍ତି- "the truth, the right, the vast" ଏବଂ ପରେ ପରେ ଶବ୍ଦ ଦୁଇଟିର ଅର୍ଥର ବିଭିନ୍ନତା ସୂଚାଇବାକୁ ଯାଇ ଲେଖିଅଛନ୍ତି-

"... truth ... is truth of divine essence, not truth of mortal sensation and appearence. It is *satyam*, truth of being ; it is in its action, *ṛtam*, right - truth of divine being regulating right activity both of mind and body; it is *bṛhat*, the universal truth proceeding direct and undeformed out of the Infinite. The consciousness that corresponds to it is also infinite, *bṛhat*, large as opposed to consciousness of the sense-mind which is founded upon limitation. ......... facts of sensation and appearence ..... are full of falsehoods (*anṛtam,* not-truth or wrong application of *satyam* in mental and bodily activity)."

ଅର୍ଥାତ୍, ସତ୍ୟ ... ହେଉଛି ଦିବ୍ୟସତ୍ତାଭିତ୍ତିକ ସତ୍ୟ, ମରଣଶୀଳ ଇନ୍ଦ୍ରିୟାନୁଭୂତିଭିତ୍ତିକ ଓ ବାହ୍ୟରୂପ ଭିତ୍ତିକ ସତ୍ୟ ନୁହେଁ । ଏହା 'ସତ୍ୟମ୍', ଅସ୍ତିତ୍ୱର ସତ୍ୟ; କ୍ରିୟାଶୀଳ ରୂପରେ ଏହା 'ଋତମ୍' - ଦିବ୍ୟ ସତ୍ତାଙ୍କ ସତ୍ୟ ଯାହା ମନ ଓ ଦେହ ଉଭୟର ଯଥାର୍ଥ କର୍ମର ନିୟାମକ । ଏହା ବୃହଦ୍, ସାର୍ବଜନୀନ ସତ୍ୟ, ଅନନ୍ତଙ୍କଠାରୁ ପ୍ରତ୍ୟକ୍ଷ ଓ ଅବିକୃତ ଭାବରେ ନିଃସୃତ ସତ୍ୟ । ଯେଉଁ ଚେତନା ଏହାର ଅନୁରୂପ ତାହା ମଧ୍ୟ ଅନନ୍ତ, ବୃହଦ୍, ବିରାଟ - ସୀମାବଦ୍ଧ ଇନ୍ଦ୍ରିୟଭିତ୍ତିକ ମାନସିକ ଚେତନାର ବିପରୀତ । ...

ଇନ୍ଦ୍ରିୟାନୁଭୂତିଭିତ୍ତିକ ଓ ବାହ୍ୟରୂପଭିତ୍ତିକ ବିଷୟ ବା ତଥ୍ୟମାନ... ମିଥ୍ୟାରେ ପରିପୂର୍ଣ୍ଣ (ଅନୃତ, ଅସତ୍ୟ ବା ମାନସିକ ଓ ଦୈହିକ କାର୍ଯ୍ୟଧାରାରେ ସତ୍ୟର ଅପପ୍ରୟୋଗ) ।

ଆଉ ଗୋଟିଏ ସ୍ଥାନରେ ଋତମ୍‌କୁ ସତ୍ୟ ଚେତନା (Truth-Consciousness) ବୋଲି ବର୍ଣ୍ଣନା କରି ଶ୍ରୀ ଅରବିନ୍ଦ କହିଅଛନ୍ତି - "The nature of this Truth-Consciousness is that it is abundant in its overflowing *Dhārā* or many-coloured in its variety of harmonised qualities, it is rapid in its movement- by the luminous rapidity it triumphs over all that seeks to break it. It is, above all, wide and vast."

(ଏହି ସତ୍ୟଚେତନାର ପ୍ରକୃତି ହେଉଛି, ଏହାର ପ୍ରଚୁର ଧାରା ବା ସ୍ରୋତ ଉଛୁଳି ପଡ଼େ ବା ଏଥିର ପରସ୍ପର ସହିତ ସୁସଂହତ ବିଭିନ୍ନ ପ୍ରକାର ଗୁଣଗୁଡ଼ିକ ହେତୁ ଏହା ବହୁ ବର୍ଣ୍ଣସମୃଦ୍ଧ । ଏହାର ଗତି ଦ୍ରୁତ - ଏହାର ସମୁଜ୍ଜ୍ୱଳ ବା ତେଜୋମୟ ଦ୍ରୁତତା ହେତୁ ଏହାକୁ ଯାହା କିଛି ଭାଙ୍ଗିବାକୁ ଚାହେଁ, ତାହା ଉପରେ ଏହା ବିଜୟ ହାସଲ କରେ । ସର୍ବୋପରି ଏହା ବ୍ୟାପକ ବା ସୁବିସ୍ତୃତ ଓ ବିରାଟ ।)

ଋଗ୍‌ବେଦରେ ଋତମ୍ ସହିତ, ସତ୍ୟମ୍ ସହିତ ଅନେକ କ୍ଷେତ୍ରରେ 'ବୃହତ୍'ର ପ୍ରୟୋଗ ହୋଇଅଛି । 'ଋତ'ର ବିପୁଳତା, ବିରାଟତା, ବ୍ୟାପକତା ବାରମ୍ବାର ସୂଚିତ ହୋଇଅଛି ଯଥା : 'ଯଜା ନୋ ମିତ୍ରାବରୁଣା ଯଜା ଦେବାଂ ଋତଂ ବୃହତ୍ । -୧ମ ୭୫ସୂ ୫ର; 'ତରସମୁଦ୍ରଂ ପବମାନ ଊର୍ମିଣା ରାଜା ଦେବ ଋତଂ ବୃହତ୍ । ଅର୍ଷନ୍ମିତ୍ରସ୍ୟ ବରୁଣସ୍ୟ ଧର୍ମଣା ପ୍ର ହିନ୍ୱାନ ଋତଂ ବୃହତ୍ ।।' ୯ମ, ୧୦୭ସୂ, ୧୫ର; 'ଋତେନ ଯ ଋତଜାତୋ ବିବାବୃଧେ ରାଜା ଦେବ ଋତଂ ବୃହତ୍ ।।' ୯ମ, ୧୦୮ସୂ, ୮ର; 'ପବମାନ ଋତଂ ବୃହଚ୍ଛୁକ୍ରଂ ଜ୍ୟୋତିରଜୀଜନତ୍ ।' ୯ମ, ୬୬ ସୂ, ୨୪ର; ପ୍ରଭୃତି ।

ଅଧ୍ୟାପକ ପୁରାଣି ଶ୍ରୀ ଅରବିନ୍ଦଙ୍କ ମତ ଅନୁସରଣ କରି ଋତର ଅର୍ଥ କରିଛନ୍ତି, 'dynamic truth' ବା କର୍ମଶୀଳ, ଗତିଶୀଳ ସତ୍ୟ- ଦିବ୍ୟ ସତ୍ୟର ଶକ୍ତି ଯାହାକି ବିଶ୍ୱ ଶୃଙ୍ଖଳାକୁ ପୋଷଣ କରୁଅଛି ଓ ତା'ର ଦିବ୍ୟ ପରିଣତି ପାଇଁ କାର୍ଯ୍ୟ କରୁଅଛି ।

ଶ୍ରୀ ଅରବିନ୍ଦଙ୍କ ଦର୍ଶନ ଦ୍ୱାରା ପ୍ରଭାବିତା ଗୌରୀ ଧର୍ମପାଳ ତାଙ୍କର 'ବେଦେର କବିତା' ପୁସ୍ତକରେ ଅନୁରୂପ ମତପ୍ରକାଶ କରିଅଛନ୍ତି । 'ବୃହତ୍ ସତ୍ୟମ୍'କୁ ବ୍ୟାଖ୍ୟା କରିବାକୁ ଯାଇ ସେ କହିଅଛନ୍ତି - ''ଧର୍ମାଧର୍ମ ପାପପୁଣ୍ୟର ଅତୀତ ବିଶ୍ୱମୂଳ ବିପୁଳ ଅସ୍ତିତା ହି ସତ୍ୟ । ସେହି ମହା ଅସ୍ତିତାରେ ପୃଥିବୀ ବିଧୃତା ।''

'ଉଗ୍ରଂ ଋତମ୍'ର ସ୍ୱରୂପ ବର୍ଣ୍ଣନା କରି କହିଅଛନ୍ତି - ''ସତ୍ୟର ସ୍ପନ୍ଦିତ ଛନ୍ଦିତ ଚଞ୍ଚଳ ପ୍ରକାଶ ହିଁ ଋତ ।

'ଋ'- ଚାଲିବା । ଈଶୋପନିଷଦ୍‌ର 'ତଦ୍ ନ ଏଜତି'- ସତ୍ୟ, 'ତଦ୍ ଏଜତି'- ଋତ ।'' କାବ୍ୟିକ ଭାଷାରେ ସେ ବ୍ୟାଖ୍ୟା କରିଛନ୍ତି - ''ସତ୍ୟ ଯେପରି ସ୍ତମ୍ଭିତ ସମାହିତ ନଟରାଜ ଶିବ, ଋତ ତାଙ୍କର ନୃତ୍ୟର ତାଳ । 'ଉଗ୍ର' - ଓଜସ୍ୱୀ, ଓଜଃକ୍ଷରା ।''

ପୁଣି କହିଛନ୍ତି ସେ .... ''ଋତ ସୃଷ୍ଟିର ଛନ୍ଦ । .... ସୃଷ୍ଟିର ଚାଲିବାର ଛନ୍ଦ ହେଲା ଋତ ... ସତ୍ୟ ହେଲା ସୃଷ୍ଟିର ଧ୍ରୁବ ପଦ, ଆଉ ଋତ ତାର ବିଶ୍ୱତାନ । ସେଇ ଋତର ପାଳିକା, ରାଖାଳିନୀ ହେଲେ ଉଷା । ସବୁ ଦେବତାହିଁ ତାହା । ତାଙ୍କର, ସେମାନଙ୍କର ଜନ୍ମ ହେଲା ଋତରେ, ସେଇଥିପାଇଁ ଉଷା ଋତେଜାଃ - ଋତଜାତା, ଋତର ଦୁହିତା । ଯେପରି ଅଗ୍ନି ହେଲେ ପ୍ରଥମଜା ଋତସ୍ୟ - ଋତର ପ୍ରଥମ ଜାତକ ।''

ସୃଷ୍ଟିସୂକ୍ତରୁ (୧୦ମ, ୧୯୦ସୂ) ଏଥି ପୂର୍ବରୁ ଉଦ୍ଧୃତ ଋକ୍‌ର (ଋତଂ ସତ୍ୟଂ ଚାଭୀଦ୍ଧା ତପସୋଽଧ୍ୟଜାୟତ, ତତୋ ରାତ୍ର୍ୟଜାୟତ ତତଃ ସମୁଦ୍ରୋ ଅର୍ଣ୍ଣବଃ) ଗୌରୀ ଧର୍ମପାଳ ନିମ୍ନଲିଖିତ ପ୍ରକାରେ ଆଲୋଚନା କରିଅଛନ୍ତି ।

ଦୀକ୍ଷାର ଅର୍ଥ ହେଉଛି, ଦହନର ଇଚ୍ଛା (ଦହ୍ + ଇଚ୍ଛାର୍ଥେ ସନ୍) । ''ଆତ୍ମ ଦହନର ତୀବ୍ର ଆକୂତି । ... ସୃଷ୍ଟି ଯଜ୍ଞରେ ପରମପୁରୁଷଙ୍କର ଆତ୍ମାହୁତି ଇଚ୍ଛା ହିଁ ପ୍ରଥମ ଦୀକ୍ଷା ।'' ତପଃ ହେଉଛି ''ଦୀକ୍ଷାର ପରିଣାମ, ତାପ, ବିକିରଣ । ସମିଦ୍ଧ ହେଉ ହେଉ ପ୍ରତପ୍ତ ହେଉ ହେଉ ସ୍ଥିର ଦ୍ୟୁତିରେ ଜଳି ଉଠିବା, ଜଳି ରହିବା ।''

''ଋତଂ ଚ ସତ୍ୟଂ ଚ ଅଭୀଦ୍ଧାଦ୍ ତପସୋଽଧ୍ୟଜାୟତ'' ଅର୍ଥାତ୍ ''ଅଭୀଦ୍ଧ ତପସ୍‌ରୁ ଜନ୍ମ ହେଲା ଋତ ଓ ସତ୍ୟ । ସ୍ରଷ୍ଟାଙ୍କର ଦୀକ୍ଷା ଓ ତପଃରୁ ... ସୃଷ୍ଟି, ତାଙ୍କର ଆତ୍ମ ସୃଷ୍ଟି, ନୂତନ ଜନ୍ମ....''

'ଯଜ୍ଞ'ର ଅର୍ଥ ''ଆତ୍ମାହୁତି'' ବୋଲି ଗୌରୀ ଧର୍ମପାଳ ବିଚାର କରି କହିଅଛନ୍ତି ଯେ ଏହି ସୃଷ୍ଟିକୁ ବେଦରେ ପ୍ରଜାପତିଙ୍କର ''ସହସ୍ର ଅର୍ଥାତ୍ ଅନନ୍ତ ସମ୍ବତ୍ସରବ୍ୟାପୀ ଯଜ୍ଞ'' ରୂପେ ଅଭିହିତ କରାଯାଇଅଛି । ମନେ ହୁଏ, ତାଙ୍କର ଏହି ଉକ୍ତି ଦଶମ ମଣ୍ଡଳସ୍ଥ ୧୩୦ ତମ (ପ୍ରଜାପତି) ସୂକ୍ତର ପ୍ରଥମ ଋକ୍‌ର ପ୍ରଥମ ପଦ ଉପରେ ପ୍ରତିଷ୍ଠିତ:

'ଯୋ ଯଜ୍ଞୋ ବିଶ୍ୱତସ୍ତନ୍ତୁଭିସ୍ତତ ଏକଶତଂ ଦେବକର୍ମେଭିରାୟତଃ ।' (ଯେଉଁ ଯଜ୍ଞତୁଲ୍ୟ ବସ୍ତ୍ର ଚତୁର୍ଦ୍ଦିଗକୁ ସୂତ୍ର ବିସ୍ତାର ଦ୍ୱାରା ବୟନ କରା ହୋଇଅଛି; ଦେବତାମାନଙ୍କ ଉଦ୍ଦେଶ୍ୟରେ ଏକଶତ ଅର୍ଥାତ୍ ବହୁସଂଖ୍ୟକ ଅନୁଷ୍ଠାନମାନଙ୍କ ଦ୍ୱାରା ତା'ର ବିସ୍ତାର ସଂଘଟିତ ହୋଇଅଛି ...) ।

ପୁଣି ସେ (ଗୌରୀ ଧର୍ମପାଳ) କହିଅଛନ୍ତି, ''ଯଜ୍ଞ ହେଲା ସୃଷ୍ଟି ତଥା ଜୀବନ ।'' ତେଣୁ ଏହି ଦୃଷ୍ଟିରୁ ଋତର ସାୟଣକୃତ ଅର୍ଥ 'ଯଜ୍ଞ' ଅଯଥାର୍ଥ ମନେ ହୁଏ ନାହିଁ ।

ଏଥି ପୂର୍ବରୁ ଦଶମ ମଣ୍ଡଳର ଆଉ ତିନୋଟି ସୂକ୍ତ (୮୧ ସୂ, ୮୨ ସୂ ଓ ୧୨୯ ସୂ)ରେ ସୃଷ୍ଟି ପ୍ରକ୍ରିୟାର ଅବତାରଣା କରାଯାଇଅଛି । ପ୍ରଥମଟିର (ବିଶ୍ୱକର୍ମା ସୂକ୍ତର) ପ୍ରଥମ ଋକ୍‌ରେ ସୃଷ୍ଟିକର୍ତ୍ତା ବିଶ୍ୱକର୍ମାଙ୍କୁ ପିତା ରୂପେ ଅଭିହିତ କରାଯାଇ ସେ ସୃଷ୍ଟିର ଆରମ୍ଭରେ ହୋମ କରିବାକୁ ବସିଥିଲେ ବୋଲି ଉଲ୍ଲେଖ ଅଛି । ବିଶ୍ୱକର୍ମାଙ୍କର ସୃଷ୍ଟିକ୍ରିୟା କଳ୍ପନା କରିବାକୁ ଯାଇ ସ୍ତୋତା ବିସ୍ମୟ-ବିମୁଗ୍ଧ ହୋଇ ପଡ଼ିଛନ୍ତି । ତାଙ୍କର ଯଜ୍ଞ ସମ୍ପର୍କରେ ପରେ କହିଅଛନ୍ତି - ''ସ୍ୱୟଂ ଯଜସ୍ୱ ତନ୍ୱଂ ବୃଧାନଃ - ତୁମେ ନିଜେ ନିଜର ଯଜ୍ଞ କରି ନିଜ ଶରୀରକୁ ପରିପୁଷ୍ଟ କର (୮୧ସୂ, ୫ଋ) ।'' ପରବର୍ତ୍ତୀ ଋକ୍‌ରେ ମଧ୍ୟ ପୁଣି କହିଅଛନ୍ତି - ''ହବିଷା ବ୍ୟାବୃଧାନଃ ସ୍ୱୟଂ ଯଜସ୍ୱ ପୃଥିବୀମୁତ ଦ୍ୟାମ୍'' ଅର୍ଥାତ୍ ''କି ପୃଥିବୀରେ କି ସ୍ୱର୍ଗରେ ତୁମେ ନିଜେ ନିଜର ଯଜ୍ଞ କରି ନିଜ ଶରୀରର ପୁଷ୍ଟିସାଧନ କର ।'' ସୃଷ୍ଟି ପ୍ରକ୍ରିୟାର ପ୍ରାରମ୍ଭରେ ହୋମ, ତପଃର ସୂଚନା ଅଛି । କିନ୍ତୁ ପ୍ରଦୀପ୍ତ, ପ୍ରଜ୍ୱଳିତ ତପଃରୁ ଋତ ଓ ସତ୍ୟର ସୃଷ୍ଟି କଥା ଉଲ୍ଲେଖ କରା ହୋଇନାହିଁ । ଶ୍ରୀ ଅରବିନ୍ଦଙ୍କ ଦ୍ୱାରା ସୂଚିତ "Force of the Godhead" ବା "Divine Force"ର (ଯାହାକୁ ତପଃ ଅର୍ଥରେ ଗ୍ରହଣ କରାଯାଇପାରେ) କଥା ନାହିଁ । ଅବଶ୍ୟ ''ଜୁହ୍ୱତ୍'' ଶବ୍ଦ ଯଜ୍ଞାଗ୍ନିର ସୂଚନା ଦେଉଅଛି ।

୮୨ତମ ସୂକ୍ତର ପ୍ରଥମ ଋକ୍‌ରେ ସେହି ସୃଷ୍ଟିକର୍ତ୍ତା ବିଶ୍ୱକର୍ମାଙ୍କୁ ପୂର୍ବପରି ପିତାରୂପେ ଅଭିହିତ କରି କୁହା ହୋଇଅଛି ଯେ ସେହି ଧୀର ପିତା ସମ୍ୟକ୍ ଦୃଷ୍ଟି ରଖି ମନରେ ବିଚାର ଆଲୋଚନା କରି (ମନସା ଚକ୍ଷୁଷା) ଜଳାକାର, ପରସ୍ପର ସହିତ ସଂପୃକ୍ତ ଦ୍ୟାବା ପୃଥିବୀ ସୃଷ୍ଟି କଲେ । ଏଥିରେ ତପଃ କଥା ନାହିଁ । ଋତ ଓ ସତ୍ୟ କଥା ନାହିଁ । Force କଥା ନାହିଁ - ପୂର୍ବବର୍ତ୍ତୀ ସୂକ୍ତରେ ଯେପରି ଇଚ୍ଛା ଜାଗ୍ରତ ହେବାରୁ ବିଶ୍ୱକର୍ମା ସୃଷ୍ଟି ଆରମ୍ଭ କଲେ ବୋଲି ସୂଚିତ ହୋଇଅଛି, ଏ ସୂକ୍ତରେ ମଧ୍ୟ ସୃଷ୍ଟି ମୂଳରେ ସ୍ରଷ୍ଟାଙ୍କର ଇଚ୍ଛା, ଚିନ୍ତା କେବଳ ଅଛି ବୋଲି ଉଲ୍ଲେଖ କରାଯାଇଅଛି । ସୂକ୍ତର ଶେଷ ଆଡ଼କୁ ସୃଷ୍ଟିକର୍ତ୍ତାଙ୍କର ଉଦ୍ଦେଶ୍ୟ, ସ୍ୱରୂପ, କୁହୁଡିକାରେ ଆଚ୍ଛନ୍ନ ହେଲାପରି (ନୀହାରେଣ ଆବୃତା) ମନୁଷ୍ୟ ପାଇଁ ଅବୋଧ ରହିଯାଇଛି ବୋଲି କୁହାଯାଇଅଛି ।

୧୨୯ତମ ସୂକ୍ତରେ ମଧ୍ୟ ଋତ ଓ ସତ୍ୟର ଉଲ୍ଲେଖ ନାହିଁ । ତପସ୍ୟା କଥା ଅଛି । ସ୍ୱତପସ୍ୟାରୁ ସର୍ବବ୍ୟାପୀ ସ୍ରଷ୍ଟା ନିଜେ ଉଦ୍‌ଭୂତ ହେଲେ । ତାଙ୍କର ମନରେ କାମର ଉଦୟ ହେଲାରୁ ସୃଷ୍ଟିର ପ୍ରାରମ୍ଭ ହେଲା । କିନ୍ତୁ ସୃଷ୍ଟିର ମୂଳ ରହସ୍ୟ ମନୁଷ୍ୟ ଜାଣିପାରେ ନାହିଁ । ସୂକ୍ତ ଶେଷରେ କୁହାହୋଇଛି, ସ୍ରଷ୍ଟା ନିଜେ ବୋଧହୁଏ ଜାଣିନାହାନ୍ତି, ସୃଷ୍ଟି କିପରି ହେଲା, କେଉଁଠୁ ହେଲା, କାହିଁକି ହେଲା !

କିନ୍ତୁ ଅପେକ୍ଷାକୃତ କ୍ଷୁଦ୍ର ୧୯୦ତମ ସୂକ୍ତରେ (ପରମାତ୍ମାଙ୍କ) ଦୀପ୍ୟମାନ ତପଃ ଫଳରେ ଋତ ଓ ସତ୍ୟର ଜନ୍ମ ହେଲା, ତହିଁରୁ ରାତ୍ରି ଓ ତପ୍ପରେ ଜଳମୟ ସମୁଦ୍ର ସୃଷ୍ଟି ହେଲା ବୋଲି କୁହାଯାଇଅଛି ।

ଦଶମ ମଣ୍ଡଳର ସୂକ୍ତଗୁଡ଼ିକ ଅପେକ୍ଷାକୃତ ଅର୍ବାଚୀନ ଓ ପ୍ରାୟ ତହିଁର ଶେଷ ପ୍ରାନ୍ତର ଏହି ସୂକ୍ତଟିରେ ସେ ସମୟର ସୃଷ୍ଟି ସମ୍ପର୍କୀୟ ଶେଷ ଚିନ୍ତାଧାରା ପ୍ରକାଶ ପାଇଅଛି ବୋଲି ମନେ ହେଉଅଛି ।

ଋଗ୍‌ବେଦ ଆରମ୍ଭ ହୋଇଅଛି ସତ୍ୟସ୍ୱରୂପ ଅଗ୍ନିଙ୍କ ସ୍ତୁତିରେ - 'ଅଗ୍ନିମୀଳେ' - 'ଅଗ୍ନିଙ୍କୁ ସ୍ତତି କରୁଛି' କହୁଛନ୍ତି ଋଷି ମଧୁଚ୍ଛନ୍ଦା । ୮ମ, ୪୩ସୂ, ୨୪ର ରେ ଅଙ୍ଗିରା ପୁତ୍ର ବିରୂପ ଋଷି ପ୍ରାର୍ଥନା କରୁଅଛନ୍ତି ଅଗ୍ନିଙ୍କୁ 'ଅଗ୍ନିମୀଳେ, ସ ଉ ଶ୍ରବଦ୍' - 'ଅଗ୍ନିଙ୍କୁ ପ୍ରାର୍ଥନା କରୁଛି, ସେ ଶୁଣନ୍ତୁ ।' ଅଗ୍ନିଙ୍କୁ ସେ ବର୍ଣ୍ଣନା କରିଅଛନ୍ତି 'ଅଧକ୍ଷ ଧର୍ମଣାଂ' । ଧର୍ମ ଶବ୍ଦ ଏଠାରେ ଋତ ଅର୍ଥରେ ବ୍ୟବହୃତ ହୋଇଅଛି ବୋଲି ମନେ ହୁଏ । (ପରମାତ୍ମାଙ୍କର) ଅଭିଦ୍ଧ ତପଃରୁ (ପ୍ରଜ୍ଜ୍ୱଳିତ ତପସ୍ୟାରୁ -Griffithଙ୍କ ଅନୁବାଦରେ from Fervour kindled to its height,ଅବିନାଶ ବୋଷଙ୍କର ଅନୁବାଦରେ perfect spiritual ardour ରୁ) ଋତ (Eternal Law) ଓ ସତ୍ୟ ଜାତ ହେଲେ । ଅଗ୍ନିଙ୍କୁ ଶ୍ରୀ ଅରବିନ୍ଦ 'a front of divine force, compact of burning heat and light..' ବୋଲି ବର୍ଣ୍ଣନା କରିଅଛନ୍ତି । 'ଅଭୀଦ୍ଧଃ ତପଃ' ତ ଅଗ୍ନିଙ୍କର ଏହି ରୂପ । ତେଣୁ ପ୍ରଥମଜାଃ ଅଗ୍ନି ଋତ ଓ ସତ୍ୟର ଉଦ୍‌ଭବ ମୂଳରେ ଥିଲେ ବୋଲି ଗ୍ରହଣ କରିବାକୁ ହେବ ।

ଅଥର୍ବ ବେଦର ପୂର୍ବୋଦ୍ଧୃତ ମନ୍ତ୍ରରେ (ଅ. ୧୨, ୧୧.) ଧର୍ମର ଛଅଟି ବିଭାବରୁ ଋତ ଗୋଟିଏ ବୋଲି ଉଲ୍ଲେଖ କରାଯାଇଅଛି । କିନ୍ତୁ କାଳକ୍ରମେ 'ଋତ'ର ପ୍ରୟୋଗ ପ୍ରାୟ ଲୁପ୍ତ ହୋଇଯାଇଅଛି (ଯଦିଚ 'ଅନୃତ' ଶବ୍ଦର ପ୍ରୟୋଗ ରହିଛି) ଏବଂ ତାହା ବଦଳରେ ସେହି ଏକା ଅର୍ଥରେ 'ଧର୍ମ' ଶବ୍ଦର ପ୍ରୟୋଗ ହେଉଅଛି । 'ଋତ'କୁ ସାଧାରଣତଃ 'ସତ୍ୟ' ରୂପେ ଅର୍ଥ କରାଯାଉଅଛି ।

******

# ଋଗ୍‌ବେଦର ପର୍ଜନ୍ୟ ସୂକ୍ତ (୫ମ ମଣ୍ଡଳ, ୮୩ ତମ ସୂକ୍ତ)
# ଓ
# ଅଥର୍ବ ବେଦର ବୃଷ୍ଟି ସୂକ୍ତ (୪ର୍ଥ କାଣ୍ଡ, ୧୫ଶ ସୂକ୍ତ)

ଆଷାଢ଼ ମାସର ଏକ ବର୍ଷାକୁଳ ଅପରାହ୍ଣରେ ଏକାକୀ ବସି ଘାଣ୍ଟୁଥିଲି ପୃଥିବୀର ପ୍ରାଚୀନତମ ମହାକାବ୍ୟ ବେଦ -ଅପୌରୁଷେୟ, ପୁଣି ପୌରୁଷେୟ ମଧ-ମହାନ୍ ସାହିତ୍ୟ-ସମସ୍ତ ଜ୍ଞାନର ମୂଳାଧାର ସ୍ୱରୂପ ଅଦ୍ୱିତୀୟ ସାହିତ୍ୟ ।

ଦୃଷ୍ଟି ପଡ଼ିଲା ଦୁଇଟି ସୂକ୍ତ ଉପରେ- ବର୍ଷାକୁ କେନ୍ଦ୍ରକରି ଦୁଇଟି ସୂକ୍ତ-ଋଗ୍‌ବେଦର ପର୍ଜନ୍ୟସୂକ୍ତ (୫ମ ମଣ୍ଡଳ, ୮୩ ସୂକ୍ତ) ଓ ଅଥର୍ବ ବେଦର ବୃଷ୍ଟି ସୂକ୍ତ (୪ର୍ଥ କାଣ୍ଡ, ୧୫ଶ ସୂକ୍ତ) ଉପରେ । ଏ ଦୁଇଟିରେ ପରବର୍ତ୍ତୀ କାଳର କାଳିଦାସଙ୍କର 'ମେଘଦୂତ'ରେ କି ଜୟଦେବଙ୍କର 'ଗୀତ ଗୋବିନ୍ଦ'ରେ ଲକ୍ଷିତ ପ୍ରେମ ବିହ୍ୱଳତା ନାହିଁ, ବିରହ ବ୍ୟାକୁଳତା ନାହିଁ, ପ୍ରିୟା ସହ ମିଳନ କାମନା ନାହିଁ । ଅଛି ଉଚ୍ଛ୍ୱସିତ ଉଦ୍ଦାମ ସ୍ତୁତି ବୃଷ୍ଟିର-ବୃଷ୍ଟିଦେବଙ୍କର-ପର୍ଜନ୍ୟଙ୍କର ଆଉ ତାଙ୍କର ସଙ୍ଗୀ ସହଚର ମରୁତ୍‌ଗଣଙ୍କର ।

ଋଗ୍‌ବେଦରେ ଅରଣ୍ୟାନୀ ସୂକ୍ତ, ରାତ୍ରି ସୂକ୍ତ ପରି ଅଳ୍ପ କେତୋଟି ସୂକ୍ତ ଛାଡ଼ିଦେଲେ ପ୍ରାୟ ସମସ୍ତ ସୂକ୍ତ ଦେବସ୍ତୁତିମୂଳକ । ସ୍ଥାନେ ସ୍ଥାନେ ପ୍ରକୃତିର ସ୍ୱଚ୍ଛ ଚିତ୍ର ମିଳିଲେ ମଧ ତା'ର ବିସ୍ମୟକର, ବ୍ୟାପକ, ଏକାଧାରରେ ବାସ୍ତବ ଓ କଳ୍ପନାସମୃଦ୍ଧ ବିଚିତ୍ର ଚିତ୍ର ମିଳେନାହିଁ । ଭୌମ ଅତ୍ରିଙ୍କର ଏହି ପର୍ଜନ୍ୟ ସୂକ୍ତଟି ସେହି ଦୃଷ୍ଟିରୁ ଅନନ୍ୟ ।

ଭୌମ ଅତ୍ରି- ଭୂମିର, ପୃଥିବୀ ମାତାର ସନ୍ତାନ ମହାଋଷି ଅତ୍ରି- ତାଙ୍କର ପିତୃକୁଳ ଯାହା ହେଉନା କାହିଁକି- ଆବେଗମୟ, ଉଚ୍ଛ୍ୱସିତ ହୃଦୟ ତାଙ୍କର ଅନୁଭବ କରିଛି ପୃଥିବୀ ସହିତ ଘନିଷ୍ଠ ଆତ୍ମୀୟତା, ଅନୁଭବ କରିଛି ସେ ଯେପରି ପୃଥିବୀର ସନ୍ତାନ- ଭୂମିର ସନ୍ତାନ । ସେଇଥିପାଇଁ ସେ ରଚନା କରିଛନ୍ତି ପୃଥିବୀ ସୂକ୍ତ - ସମଗ୍ର ଋଗ୍‌ବେଦରେ କେବଳ ପୃଥିବୀ ପ୍ରତି ଉଦ୍ଦିଷ୍ଟ ଏକମାତ୍ର ସୂକ୍ତ- ସଦ୍ୟବର୍ଷାପ୍ଲାବିତ ପୃଥିବୀର ଯାଦୁକରୀ ଚିତ୍ର ବିଶିଷ୍ଟ ସୂକ୍ତ । ତା'ରି ପ୍ରେରଣାରେ ବୋଧହୁଏ ପରେ ଅଥର୍ବା ମୁନି ଅଥର୍ବ ବେଦରେ ସୁଦୀର୍ଘ ଭୂମି ସୂକ୍ତ (୧୨ଶ କାଣ୍ଡ, ୧ମ ସୂକ୍ତ) ଲେଖିଛନ୍ତି । ନିଜକୁ ଭୌମ ନ କହିଲେ ମଧ ସେ ଭୂମିର ସନ୍ତାନ-ଭୂମିମାତାର ସନ୍ତାନ ଯାହାର ଗୌରବଗାଥା ସେ ଗାନ କରିଛନ୍ତି ଭୂମି ସୂକ୍ତରେ—

ତ୍ୱଜାତାସ୍ତ୍ୱୟି ଚରନ୍ତି ମର୍ତ୍ତ୍ୟାସ୍ତ୍ୱଂ ବିଭର୍ଷି ଦ୍ୱିପଦସ୍ତ୍ୱଂ ଚତୁଷ୍ପଦଃ

'ତୁମରି ଗର୍ଭରେ ସମସ୍ତଙ୍କର ଜନ୍ମ, ତୁମରି ଉପରେ ସମସ୍ତେ ବିଚରଣ କରନ୍ତି । ଦ୍ୱିପଦ, ଚତୁଷ୍ପଦ ସମସ୍ତଙ୍କୁ ତୁମେ ଭରଣ ପୋଷଣ କର ।'

ଭୌମ ଅତ୍ରିଙ୍କର ପର୍ଜନ୍ୟ ସୂକ୍ତ ପୃଥିବୀ ସୂକ୍ତର ଠିକ୍ ପୂର୍ବରୁ ରହିଛି । 'ପର୍ଜନ୍ୟ' ଶବ୍ଦ ପ୍ରଥମେ କେବଳ ମେଘ-ଜଳଭରା ମେଘ ବୁଝାଉଥିଲା । କ୍ରମେ ବୁଝାଇଲା- ବଜ୍ରଧାରୀ ବୃଷ୍ଟି ଦେବତା, ପ୍ରଭଞ୍ଜନ ଦେବତା ।

## ପର୍ଜନ୍ୟ ସୂକ୍ତ :

ଋଷି ଭୌମ ଅତ୍ରି ସ୍ତୋତାଙ୍କୁ କହୁଛନ୍ତି- ଏହି ସବୁ ସ୍ତୋତ୍ର ଗାନ କରି ଅଭ୍ୟର୍ଥନା କର, ଆହ୍ୱାନ କର ମହାଶକ୍ତିଶାଳୀ ପର୍ଜନ୍ୟଙ୍କୁ । ପ୍ରାର୍ଥନା କର, ସ୍ତୁତି କରି ହବ୍ୟାଦି ଦ୍ୱାରା ତାଙ୍କର ସେବା କର । ବୃଷଭ ତୁଲ୍ୟ ଗର୍ଜନ କରନ୍ତି ସେ, ସବେଗେ ଜଳଧାରା ବର୍ଷଣ କରନ୍ତି, ଅବିଳମ୍ବେ ଦାନ କରନ୍ତି । ବୃଷ୍ଟି ଯେପରି ତାଙ୍କର ବୀର୍ଯ୍ୟ । ଢ଼ାଳି ଦିଅନ୍ତି ସେ ତାହା ପୃଥିବୀ ଉପରେ, ଓଷଧିମାନଙ୍କରେ, ଗୁଳ୍ମ ଲତାଦିରେ ଗର୍ଭ ଉତ୍ପାଦନ କରନ୍ତି । ବୃକ୍ଷମାନ ଭାଙ୍ଗି ପଡ଼ନ୍ତି ତାଙ୍କର ଆଘାତରେ । ଦୈତ୍ୟମାନଙ୍କୁ ସେ ବଧ କରନ୍ତି । (ଇନ୍ଦ୍ର ବୃତ୍ରାସୁରକୁ ହତ୍ୟା କରିଥିଲେ । ବୃତ୍ର ମେଘର ଅନ୍ୟ ନାମ । ମେଘରୂପକ ଦୈତ୍ୟଗଣଙ୍କୁ ବିଦୀର୍ଣ୍ଣ କରି ଜଳବୃଷ୍ଟି କରନ୍ତି ପର୍ଜନ୍ୟ ଦେବ । ଇନ୍ଦ୍ରଙ୍କୁ ମଧ୍ୟ ବେଦରେ ସ୍ଥାନେ ସ୍ଥାନେ ପର୍ଜନ୍ୟ ରୂପେ ଅଭିହିତ କରାହୋଇଅଛି ।) ସାରା ଭୁବନ ଭୟାର୍ତ୍ତ ହୋଇପଡ଼େ ତାଙ୍କର ସଂହାରିଣୀ ଶକ୍ତି ଦର୍ଶନରେ । ଦୁଷ୍ଟଙ୍କୁ ସେ ଗର୍ଜନ କରି ପରାହତ କଲାବେଳେ ନିର୍ଦ୍ଦୋଷଗଣ ମଧ୍ୟ ଭୀତତ୍ରସ୍ତ ହୋଇ ପଳାୟନ କରନ୍ତି । ମନେ ହୁଏ, ଯେପରି ସେ ମହାବିନାଶକାରୀ ଅସ୍ତ୍ର ଧାରଣ କରିଛନ୍ତି । ରଥଚାଳକ ଯେପରି କଷାଘାତ କରି ଅଶ୍ୱଗଣଙ୍କୁ ଉତ୍ତେଜିତ, ଉତ୍କ୍ଷିପ୍ତ କରେ, ବେଗଶୀଳ କରେ, ସେହିପରି ପର୍ଜନ୍ୟ ଦେବ ତାଡ଼ିତ କରନ୍ତି ବର୍ଷାର ଦୂତସ୍ୱରୂପ ମେଘଗଣଙ୍କୁ ବର୍ଷାପାତ କରିବାକୁ ଆଗେଇଯିବାକୁ । ଅନ୍ତରିକ୍ଷକୁ ପରିବ୍ୟାପ୍ତ କରିଦିଅନ୍ତି ଜଳବର୍ଷଣକାରୀ ମେଘସମୂହରେ । ଦୂରରେ ଉତ୍ଥିତ ହୁଏ ସିଂହ ଗର୍ଜନ (ତୁଲ୍ୟ ମେଘ ଗର୍ଜନ) । ପ୍ରବଳ ବେଗରେ ପ୍ରବାହିତ ହୁଏ ବାୟୁ । ସ୍ଫୁରିତ ହୁଏ ବିଦ୍ୟୁତ୍ ଚତୁର୍ଦ୍ଦିଗରେ । ଓଷଧିଗଣ ଅଙ୍କୁରିତ ହୁଅନ୍ତି । ସାରା ଅନ୍ତରିକ୍ଷ ଯେପରି ତରଳିଯାଏ, ଧାର ଧାର ହୋଇ ବୋହିଆସେ ତଳକୁ । ପୃଥିବୀ ଆର୍ଦ୍ର ହୋଇଯାଏ, ଜୀବନ୍ତ ହୋଇଯାଏ- ସକ୍ଷମ ହୁଏ (ଶସ୍ୟାଦି ଉତ୍ପାଦନ ଦ୍ୱାରା) ଜୀବଗଣଙ୍କର ମଙ୍ଗଳ ସାଧନ କରିବାକୁ । ପର୍ଜନ୍ୟ ଦେବଙ୍କ ନିର୍ଦ୍ଦେଶରେ ପୃଥିବୀ ମସ୍ତକ ଆନତ କରେ । ଖୁରବିଶିଷ୍ଟ ଗୋ-ମହିଷାଦି ପଶୁଗଣ ପରିପୁଷ୍ଟ ହୁଅନ୍ତି (ବା ଭୟରେ ଇତସ୍ତତଃ ଧାବମାନ ହୁଅନ୍ତି) । ଓଷଧିଗଣ, ଗୁଳ୍ମଲତାଦିଗଣ ପର୍ଜନ୍ୟଙ୍କ ଆଦେଶକ୍ରମେ (ବା କାର୍ଯ୍ୟ ଫଳରେ) ବିଚିତ୍ର ରୂପ, ବର୍ଣ୍ଣ ଧାରଣ କରି ବିକଶି ଉଠନ୍ତି । ସ୍ତୋତା ପ୍ରାର୍ଥନା କରୁଛନ୍ତି- ହେ ପର୍ଜନ୍ୟ, ତୁମେ ଆମକୁ ମହାସୁଖ (ବା ନିରାପତ୍ତା ବା ଆଶ୍ରୟ) ଦାନ କର । ମରୁତ୍‌ଗଣଙ୍କୁ ପ୍ରାର୍ଥନା କରୁଛନ୍ତି- ଅନ୍ତରିକ୍ଷରୁ ଆମପାଇଁ ଢ଼ାଳିଦିଅ ବାରିଧାରା । ଦିଗନ୍ତବ୍ୟାପୀ ମେଘାଶ୍ୱର

ପ୍ରଚୁର ଜଳସ୍ରୋତ ଝରିପଡୁ (ପୃଥିବୀ ଉପରେ) । ପୁଣି ପ୍ରାର୍ଥନା କରୁଛନ୍ତି ପର୍ଜନ୍ୟଙ୍କୁ- ବାରି ବର୍ଷଣ କରି କରି ଗୁରୁ ଗର୍ଜନ କରି କରି, ହେ ଆମର ପ୍ରଭୁ, ହେ ପିତା, ଆସ ଆମ ନିକଟକୁ । ତୁମେ ଆମର ଜଳଦାନକାରୀ ରକ୍ଷକ । ବଜ୍ରଗମ୍ଭୀର ନାଦ କର, ଗର୍ଜନ କର ତୁମେ, ଜଳଧାରା ବର୍ଷଣ ଦ୍ୱାରା ଗର୍ଭ ବିଧାନ କର (ଓଷଧିମାନଙ୍କରେ), ବାରିପୂର୍ଣ୍ଣ ମେଘରଥରେ (ଅନ୍ତରିକ୍ଷର) ଚତୁର୍ଦ୍ଦିଗରେ ବିଚରଣ କର । ମେଘ ଯେପରି ଏକ ଜଳପୂର୍ଣ୍ଣ ଚର୍ମାଧାର । (ବନ୍ଧନ ତା'ର ଖୋଲିଦିଅ) ମୁଖ ତା'ର ତଳକୁ କରି ଖୋଲିଦିଅ, ବାରିବର୍ଷଣ କର । ଉଚ୍ଚ ନୀଚ ସମସ୍ତ ସ୍ଥାନ ଯେପରି ଜଳମୟ ହୋଇ ସମତଳ ଦିଶୁ । ବିରାଟ ଜଳାଧାରତୁଲ୍ୟ ମେଘକୁ ଉତ୍ତୋଳନ କରି ଢ଼ାଳିଦିଅ ତହିଁରୁ ଅପର୍ଯ୍ୟାପ୍ତ ଜଳ । ବିମୁକ୍ତ ଜଳସ୍ରୋତଗଣ ପ୍ରବଳ ବେଗରେ ପ୍ରବାହିତ ହୁଅନ୍ତୁ । ସ୍ୱର୍ଗ, ମର୍ତ୍ତ୍ୟ ଆର୍ଦ୍ର କରିଦିଅ ଜଳରେ । ଗୋରୁଗଣ ପାନ କରିବାକୁ ଅପର୍ଯ୍ୟାପ୍ତ ଜଳ ଲାଭ କରନ୍ତୁ । ହେ ପର୍ଜନ୍ୟ, ଯେତେବେଳେ ତୁମେ ବଜ୍ରଧ୍ୱନି କରି ପାପୀ (ମେଘ) ଗଣଙ୍କୁ ପରାହତ କର, ସେତେବେଳେ ସାରା ବିଶ୍ୱ ଆନନ୍ଦରେ ଉଚ୍ଛ୍ୱସିତ ହୁଏ । ଯାହା କିଛି ପୃଥିବୀରେ ଅଛି, ସେସବୁ ଉଲ୍ଲସିତ ହୁଏ ।

ପ୍ରବଳ ପ୍ରଚୁର ବର୍ଷା ହୋଇଯାଇଅଛି । ସ୍ତୋତାଙ୍କ ପ୍ରାର୍ଥନା ପୂରଣ ହୋଇଅଛି । ଶେଷରେ ସେ ପ୍ରାର୍ଥନା କରିଛନ୍ତି ପର୍ଜନ୍ୟଙ୍କୁ- ତୁମେ ଢ଼ାଳି ଦେଇଛ ଅପର୍ଯ୍ୟାପ୍ତ ବୃଷ୍ଟିଜଳ ; ବର୍ତ୍ତମାନ ତାହା ସମ୍ବରଣ କର । ମରୁଭୂମିଗୁଡ଼ିକୁ ତୁମେ ଗମନାଗମନ ପାଇଁ ଯୋଗ୍ୟ (ଆର୍ଦ୍ର) କରିଦେଇଛ । ଆମର ଉପଭୋଗ ପାଇଁ ଓଷଧିଗୁଡ଼ିକୁ ବର୍ଦ୍ଧନ କରିଛ । ଜନଗଣଙ୍କର ପ୍ରଶଂସା ଭାଜନ ହୋଇଛ (ବା କାମନା ଚରିତାର୍ଥ କରିଛ) ।

ପ୍ରବଳ ବର୍ଷାର, ପ୍ରଭଞ୍ଜନର ଭୀମକାନ୍ତ ରୂପ ଏହି ସୂକ୍ତରେ ବର୍ଣ୍ଣିତ ହୋଇଅଛି । ବର୍ଣ୍ଣିତ ହୋଇଅଛି ବର୍ଷାକୁ ଜନଗଣଙ୍କର ଉଲ୍ଲାସମୟ ଅଭ୍ୟର୍ଥନା, ଅଭିନନ୍ଦନ - ବର୍ଷାର ସଂଜୀବନୀ ଶକ୍ତି । ଯେ ଯେପରି ପର୍ଜନ୍ୟ ଓ ପୃଥିବୀଙ୍କର ପ୍ରଣୟାଲିଙ୍ଗନର ଚିତ୍ର । ଭୂମିରେ ଓଷଧିଗଣ ଗର୍ଭଧାରଣ କରିଛନ୍ତି । ବୀଜଗଣ ସଂଜୀବିତ ହୋଇଛନ୍ତି, ଅଙ୍କୁରିତ ହୋଉଛନ୍ତି । ନବଜୀବନର ଉନ୍ମେଷ ଘଟିଛି । ପର୍ଜନ୍ୟଦେବ ସ୍ତୋତାଙ୍କ ପ୍ରାର୍ଥନା ଶୁଣି ବୃଷ୍ଟି ସମ୍ବରଣ କରିଛନ୍ତି । ପରବର୍ତ୍ତୀ ପୃଥିବୀ ସୂକ୍ତ (୫ମ ମଣ୍ଡଳ, ୮୪ ତମ ସୂକ୍ତ)ରେ ରହିଛି ସଦ୍ୟ ବର୍ଷା-ସ୍ନାତା ପୃଥିବୀଙ୍କ ଚିତ୍ର । ବର୍ଷା ସରିଯାଇଛି । ମେଘଗୁଡ଼ିକ ଖଣ୍ଡବିଖଣ୍ଡ ହୋଇଯାଇଛି । ସ୍ତୋତା ବିସ୍ମୟରେ କହୁଅଛନ୍ତି- ସତରେ ପୃଥିବୀଙ୍କର ରହିଛି ମେଘ- ପର୍ବତକୁ ଛିନ୍ନ ଭିନ୍ନ କରିଦେବାର ଶକ୍ତି । ବର୍ଷାଜଳର ପ୍ଲାବନ ଫଳରେ ବହୁ ନିର୍ଝରିଣୀ ଢ଼ାଲୁରେ ଝରି ଯାଉଛନ୍ତି ତଳକୁ । ସେମାନଙ୍କର ଝରଝର ଶବ୍ଦରେ ମୁଖରିତ ହେଉଛି ଚତୁର୍ଦ୍ଦିଗ । ପୃଥିବୀଙ୍କର ମହିମା ଭୂମିକୁ ଜୀବନ୍ତ କରିଦେଉଛି । ଅଙ୍କୁରିତ ହେଉଛନ୍ତି ଅଗଣିତ ବୀଜ । ପୃଥିବୀ 'ବିଚାରିଣୀ', 'ବିବିଧ-ଚରଣଶୀଳା' (ସାୟଣ) । ଚତୁର୍ଦ୍ଦିଗରେ ବାଜିଉଠୁଛି ତାଙ୍କର ସ୍ତୁତିଗାନ ବିଦ୍ୟୁତ୍‌ର ଝଲକ ସହିତ । ବିଦ୍ୟୁତ୍‌ରେ ଉଦ୍‌ଭାସିତା ଶ୍ୱେତବର୍ଣ୍ଣା ପୃଥିବୀ ହ୍ରେଷାଧ୍ୱନିକାରୀ (ବା ଉଦ୍ଦାମଗତିସମ୍ପନ୍ନ) ଅଶ୍ୱତୁଲ୍ୟ ଜଳମୟ ମେଘଗୁଡ଼ିକୁ ବିଦ୍ୟୁତ୍‌ପ୍ରବାହ ସହିତ

ଉତ୍‌କ୍ଷିପ୍ତ କରନ୍ତି- ଦ୍ରୁତବେଗରେ ଚାଳିତ କରନ୍ତି । ଯେତେବେଳେ ସଜଳ ମେଘ ଓ ବିଦ୍ୟୁତ୍‌ରୁ ସମୁଜ୍ଜ୍ୱଳ ବୃଷ୍ଟି ଆଲୋକର ଧାରା ପରି ବୋହିଆସେ ଉର୍ଦ୍ଧ୍ୱରୁ ପୃଥିବୀର ବକ୍ଷକୁ, ସେତେବେଳେ ପୃଥିବୀ ବନସ୍ପତି (ବୃହଦ୍ ବୃକ୍ଷ) ଗୁଡ଼ିକୁ ମାଟିରେ ଦୃଢ଼ ଭାବରେ ବଳପୂର୍ବକ ଧରି ରଖନ୍ତି, ଯେପରି ସେମାନେ ବୃଷ୍ଟିର ଆଘାତରେ ପଡ଼ି ନ ଯାଆନ୍ତି ।

ପୃଥିବୀ ସୂକ୍ତଟି ଯେପରି ପର୍ଜନ୍ୟ ସୂକ୍ତର ଉପସଂହାର । ପର୍ଜନ୍ୟ ସୂକ୍ତରେ ମୁଖ୍ୟତଃ ପର୍ଜନ୍ୟଙ୍କର ମାହାତ୍ମ୍ୟ, ତାଙ୍କର ସଙ୍ଗୀ ମରୁଦ୍‌ଗଣଙ୍କର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ପୃଥିବୀ ସୂକ୍ତରେ ପ୍ରଣୟିନୀ ପୃଥିବୀର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ପୃଥିବୀ ସୂକ୍ତଟି ଆପାତତଃ ସ୍ୱତନ୍ତ୍ର ହେଲେ ମଧ ବିଷୟବସ୍ତୁ ଦୃଷ୍ଟିରୁ ପର୍ଜନ୍ୟ ସୂକ୍ତ ସହିତ ଘନିଷ୍ଠ ଭାବେ ଜଡ଼ିତ ।

ଭୌମ ଅତ୍ରିଙ୍କ ପର୍ଜନ୍ୟ ସୂକ୍ତର ଅନେକାଂଶରେ ଅନୁରୂପ, ବୃଷ୍ଟି ସୂକ୍ତ (ଅଥର୍ବ ବେଦ, ୪ର୍ଥ କାଣ୍ଡ ୧୫ଶ ସୂକ୍ତ, ୩ୟ ଅନୁବାକ୍, ୫ମ ସୂକ୍ତ) ରଚନା କରିଛନ୍ତି ଋଷି ଅଥର୍ବା । ଅଥର୍ବ ବେଦର ଅନେକ ସୂକ୍ତ ଋଗ୍‌ବେଦର ଅନୁରୂପ ବିଷୟମୂଳକ ସୂକ୍ତ ଗୁଡ଼ିକର ପରିବର୍ଦ୍ଧିତ, ଆଂଶିକ ପରିବର୍ତ୍ତିତ ରୂପ । ଅଥର୍ବ ବେଦର ଭୂମି ସୂକ୍ତ (୧୨ଶ କାଣ୍ଡ, ୧ମ ସୂକ୍ତ) ଋଗ୍‌ବେଦର ପୃଥିବୀ ସୂକ୍ତର ଭିତ୍ତିରେ ରଚିତ ବୋଲି ମନେହୁଏ । ଅଥର୍ବ ବେଦର ବିବାହ ସମ୍ବନ୍ଧୀୟ ଦୁଇଟି ସୂକ୍ତ (୧୪ଶ କାଣ୍ଡ, ୧ମ ଓ ୨ୟ ସୂକ୍ତ)ରେ ଋଗ୍‌ବେଦରେ ସୂର୍ଯ୍ୟା ସୂକ୍ତ (୧୦ମ ମଣ୍ଡଳ, ୮୪ତମ ସୂକ୍ତ)ର ତିରିଶରୁ ଅଧିକ ଋକ୍ ଦେଖିବାକୁ ମିଳେ । ଋଗ୍‌ବେଦର ବାଗ୍‌ଦେବୀ ସୂକ୍ତ (୧୦ମ ମଣ୍ଡଳ, ୧୨୫ ତମ ସୂକ୍ତ) ତ ପୂରାପୁରି ଅଥର୍ବ ବେଦରେ (୪ର୍ଥ କାଣ୍ଡ, ୬ଷ୍ଠ ଅନୁବାକ୍, ୫ମ ସୂକ୍ତ) ସ୍ଥାନ ପାଇଛି । ଋକ୍ ଗୁଡ଼ିକର କ୍ରମରେ ସାମାନ୍ୟ ପରିବର୍ତ୍ତନ ହୋଇଛି ।

ଅଥର୍ବନ୍ ବା ଅଥର୍ବା ଶବ୍ଦ Monier Williamsଙ୍କ ମତରେ ଏକ ଅପ୍ରଚଳିତ ଶବ୍ଦ 'ଅଥର୍' (ବା ଅଗ୍ନି)ରୁ ନିଷ୍ପନ୍ନ ହୋଇଅଛି । ଅଥର୍ବା ହିଁ ପ୍ରଥମେ ଅଗ୍ନିପୂଜା, ସୋମ ପୂଜା ପ୍ରବର୍ତ୍ତନ କରିଥିଲେ, ପ୍ରଥମେ ବ୍ରହ୍ମବିଦ୍ୟା ଶିକ୍ଷା ଦେଇଥିଲେ । ଅଥର୍ବା ଓ ଅଙ୍ଗୀରସ ଅଭିନ୍ନ ବୋଲି କେତେକଙ୍କ ମତ । ବିଭିନ୍ନ ସ୍ଥଳରେ ଅଥର୍ବା ଭଗବାନ୍, ପ୍ରଜାପତି, ବ୍ରହ୍ମାଙ୍କର ଜ୍ୟେଷ୍ଠପୁତ୍ର ରୂପେ ବର୍ଣ୍ଣିତ ହୋଇଅଛନ୍ତି ।

ଅଥର୍ବାଙ୍କ ଏହି ବୃଷ୍ଟି ସୂକ୍ତ ବୃଷ୍ଟିର ଆବାହନୀ ଏକ ଆବେଗମୟ ସୂକ୍ତ । ବୃଷ୍ଟିଲାଭ କାମନାରେ ଅନୁଷ୍ଠିତ ଆଦ୍ୟ ହୋମରେ ଏଥିର ଋକ୍‌ଗୁଡ଼ିକ ପ୍ରୟୋଜିତ ହୁଏ ।

**ବୃଷ୍ଟି ସୂକ୍ତ :**

ଜଳାକ୍ତ ବାୟୁରେ ଭରା ପୂର୍ବାଦି ଦିଗ ସମୂହ ଏକ ସଙ୍ଗରେ (ଉଦ୍‌ପତନ୍ତୁ) ଉଡନ୍ତୁ (ଉର୍ଦ୍ଧ୍ୱରେ ମେଘ ସହିତ ମିଳିତ ହୁଅନ୍ତୁ) । ବାୟୁତାଡ଼ିତ ହୋଇ ଜଳଭରା ମେଘଗଣ ସମ୍ମିଳିତ ହୁଅନ୍ତୁ (ଅନ୍ତରିକ୍ଷରେ) । ସେହି ବାୟୁତାଡ଼ିତ ବୃଷଭ ପରି ବିଶାଳାକୃତି ଗର୍ଜନଶୀଳ ମେଘମାନଙ୍କରୁ ଝରିପଡୁ ବାରିଧାରା । ପୃଥିବୀକୁ ତୃପ୍ତ କରୁ ।

ପ୍ରବଳ ଶକ୍ତିଶାଳୀ ମହାଦାନୀ ମରୁଦ୍‌ଗଣ ପ୍ରତ୍ୟେକେ ଆମକୁ ଦେଖାଦିଅନ୍ତୁ, ଅନୁଗ୍ରହ କରନ୍ତୁ ଆମକୁ ବୃଷ୍ଟିଦାନ କରି । ବୃଷ୍ଟିଜଳର ସାର ଅଂଶ ବା ରସ ମିଶିଯାଉ ଓଷଧିଙ୍କ ସହିତ । ବୃଷ୍ଟିର ଜଳଧାରା ଭୂମିକୁ ଶସ୍ୟସମୃଦ୍ଧ କରି ମହା ଆନନ୍ଦରେ ଭରିଦେଉ । ବିଚିତ୍ର ରୂପର ବିଭିନ୍ନ ପ୍ରକାର ଓଷଧି ଜନ୍ମଲାଭ କରନ୍ତୁ ।

ହେ ମରୁଦ୍‌ଗଣ ! ମେଘ ଦର୍ଶନରେ ଉଲ୍ଲସିତ ଆମେ ସ୍ୱତଃ ଗାନ କରୁଛୁ । ଆମର ସ୍ତୁତିଗାନରେ ପ୍ରୀତ ହୋଇ ଆମକୁ ଆହୁରି ମେଘରାଶି ପ୍ରଦର୍ଶନ କର, ଆହୁରି ସଙ୍ଗୀତର ରୋଳ ଉଠୁ । ପୃଥକ୍ ପୃଥକ୍ ଭାବରେ ସବେଗରେ ପ୍ରବାହିତ ହୁଅନ୍ତୁ ଜଳଧାରାଗୁଡ଼ିକ । ବୃଷ୍ଟିର ଜଳଧାରା ଭୂମିକୁ ଶସ୍ୟସମୃଦ୍ଧ କରୁ । ମହା ଆନନ୍ଦରେ ଭରିଦେଉ । ବିଭିନ୍ନ ରୂପର ବିଭିନ୍ନ ପ୍ରକାରର ବ୍ରତତୀ ଜନ୍ମଲାଭ କରନ୍ତୁ ।

ହେ ପର୍ଜନ୍ୟ ଦେବ, ଗୁରୁଗର୍ଜନଶୀଳ ସପ୍ତମରୁଦ୍‌ଗଣ ପ୍ରତ୍ୟେକେ ଆଦରରେ ତୁମରି ଉଦ୍ଦେଶ୍ୟରେ (ବା ତୁମରି ସଙ୍ଗରେ) ଗାନ କରନ୍ତୁ । ବର୍ଷଣଶୀଳ ବୃଷ୍ଟିର ଜଳଧାରାଗୁଡ଼ିକ ପୃଥିବୀ ଉପରେ ଅବିଶ୍ରାନ୍ତ ଭାବରେ ଝରିପଡ଼ନ୍ତୁ, ସିକ୍ତ କରନ୍ତୁ ତାକୁ ।

ହେ ମରୁତ୍‌ଗଣ, ସାଗରଗର୍ଭରୁ (ସୂର୍ଯ୍ୟଙ୍କ ଉତ୍ତାପ ସାହାଯ୍ୟରେ) ତୋଳି ଆଣ ଜଳକଣା, ଘେନିଯାଅ ଊର୍ଦ୍ଧ୍ୱକୁ । ଉତ୍ପନ୍ନ କର ପୂଜାର ଉପଯୋଗୀ, ସମୁଜ୍ଜ୍ୱଳ ଜଳରେ ପୂର୍ଣ୍ଣ ମେଘକୁ । ବିରାଟ, ଦୃପ୍ତ ଋଷଭ ପରି ଗର୍ଜନ କରୁଥିବା ସେହି ମେଘରୁ ସଶବ୍ଦେ ଜଳଧାରାଗୁଡ଼ିକ ଝରିପଡ଼ନ୍ତୁ ପୃଥିବୀ ଉପରେ, ତୃପ୍ତ କରନ୍ତୁ ତାକୁ ।

[ହେ ମରୁଦ୍‌ଗଣ, ସୂର୍ଯ୍ୟଙ୍କର ରଶ୍ମି ସାହାଯ୍ୟରେ ଜଳୀୟବାଷ୍ପ ଉତ୍ତୋଳନ କର ସମୁଦ୍ରର ଊର୍ଦ୍ଧ୍ୱକୁ, ଗାନ କର ସୁଦୀପ୍ତ ସଙ୍ଗୀତ । ଆକାଶରେ ପରିବ୍ୟାପ୍ତ ମେଘଗଣ ଗର୍ଜନ କରି ଢ଼ାଳନ୍ତୁ ଜଳଧାରା, ପୃଥିବୀକୁ ତୃପ୍ତ କରନ୍ତୁ । (Whitney ଙ୍କ ଅନୁବାଦର ଛାୟାରେ)]

ହେ ପର୍ଜନ୍ୟ, ତୁମେ ଚତୁର୍ଦ୍ଦିଗରେ ଗର୍ଜନ କର । ମେଘମାନଙ୍କ ମଧ୍ୟରେ ପ୍ରବେଶ କରି ବଜ୍ରଧ୍ୱନି କର । ବିକ୍ଷୁବ୍ଧ କରି ଦିଅ ମହା ସମୁଦ୍ରକୁ । ଭୂମିକୁ ସମ୍ୟକ୍ ରୂପେ ଜଳାଞ୍ଜନରେ ଲିପିଦିଅ । ତୁମରି ଦ୍ୱାରା ସୃଷ୍ଟି ହୋଇ ଆସୁ, ନିକ୍ଷିପ୍ତ ହୋଇ ଆସୁ ପ୍ରଚୁର ପ୍ରବଳ ବର୍ଷା । କ୍ଷୀଣ କରିଦିଅନ୍ତୁ ସୂର୍ଯ୍ୟ ତାଙ୍କର ଆଲୋକ । ଶରଣପ୍ରୟାସୀ ରୂପେ ଲୁଚିଯାଆନ୍ତୁ ସେ ମେଘର ଅନ୍ତରାଳରେ ସେହି କୃଶ ରଶ୍ମିଜାଳ ସହିତ । [ଅନ୍ୟ ଏକ ଅର୍ଥ-ଚତୁର୍ଦ୍ଦିଗରୁ ବର୍ଷା କାମନା କରୁଥିବା କୃଷକ ତା'ର ଜମି ହଳକରି ଅଙ୍କ ଗୋରୁଙ୍କ ସହିତ ଘରକୁ ଫେରିଯାଉ । (Whitneyଙ୍କ ଅନୁବାଦର ଛାୟାରେ)]

ହେ ଜନଗଣ, ତୁମ୍ଭମାନଙ୍କୁ ପରିତୃପ୍ତ କରନ୍ତୁ (ଏକସଙ୍ଗେ ସମ୍ୟକ୍ ପରିପାଳନ କରନ୍ତୁ) ପରମ ଦାନଶୀଳ ମରୁଦ୍‌ଗଣ । ଅଜଗରତୁଲ୍ୟ ଜଳପ୍ରବାହମାନ ସୃଷ୍ଟ ହୁଅନ୍ତୁ, ତୃପ୍ତ କରନ୍ତୁ ପୃଥିବୀକୁ । ମରୁଦ୍‌ଗଣଙ୍କ ଦ୍ୱାରା ତାଡ଼ିତ ମେଘଗୁଡ଼ିକ ପୃଥିବୀ ଉପରେ ଢ଼ାଳିଦିଅନ୍ତୁ ବର୍ଷାଜଳ, ସିକ୍ତ କରିଦିଅନ୍ତୁ ତାକୁ ।

ଚତୁର୍ଦ୍ଦିଗରେ ବିଦ୍ୟୁତ୍ ସ୍ଫୁରିତ ହେଉ । ପ୍ରତି ଦିଗକୁ ବାୟୁ ପ୍ରବାହିତ ହେଉ । ମରୁତ୍‌ଗଣଙ୍କ ଦ୍ୱାରା ତାଡ଼ିତ ମେଘଗଣ ପୃଥିବୀ ଉପରେ ଢ଼ାଳିଦିଅନ୍ତୁ ବର୍ଷାଜଳ, ସିକ୍ତ କରିଦିଅନ୍ତୁ ତାକୁ ।

ମହାଦାନଶୀଳ ମରୁଦ୍‌ଗଣ ଜଳ, ବିଦ୍ୟୁତ୍, ସଜଳ ମେଘ, ବୃଷ୍ଟି, ଅଜଗରତୁଲ୍ୟ ଜଳପ୍ରବାହ ଦ୍ୱାରା ତୁମମାନଙ୍କୁ ପରିତୃପ୍ତ କରନ୍ତୁ (ଏକ ସଙ୍ଗରେ ସମ୍ୟକ୍ ପରିପାଳନ କରନ୍ତୁ) । ମରୁଦ୍‌ଗଣଙ୍କ ଦ୍ୱାରା ତାଡ଼ିତ ମେଘଗଣ ପୃଥିବୀ ଉପରେ ଢ଼ାଳିଦିଅନ୍ତୁ ବର୍ଷାଜଳ, ପ୍ଲାବିତ କରିଦିଅନ୍ତୁ ତାକୁ ।

ମେଘାନ୍ତର୍ଗତ ଜଳର ଶରୀର ସହିତ ମିଶି ରହିଥିବା (ବିଦ୍ୟୁତ୍ ରୂପକ) ଅଗ୍ନି (ବା ବୃଷ୍ଟିର ଜଳଧାରା ସହିତ ମିଶୁଥିବା ସୂର୍ଯ୍ୟୋତ୍ତାପ ରୂପକ ଅଗ୍ନି) ଓଷଧିମାନଙ୍କର, ଆରଣ୍ୟ ଗୁଳ୍ମଲତାମାନଙ୍କର (ପ୍ରାଣଦାତା) ଅଧିପତି । ସେହି ଜାତବେଦା ଅଗ୍ନି ଆମ୍ଭମାନଙ୍କର ସନ୍ତାନସନ୍ତତିଙ୍କ ପାଇଁ ଦ୍ୟୁଲୋକରୁ ଜୟକରି ଆଣିଦିଅନ୍ତୁ ନବଜୀବନ ସୃଷ୍ଟିକାରୀ ରସ,ଅମୃତତୁଲ୍ୟ ବାରିଧାରା ।

ପ୍ରଜାପତି ଦିଗନ୍ତବ୍ୟାପୀ ଅଗାଧ ଜଳରାଶିପୂର୍ଣ୍ଣ ସାଗରରୁ ଜଳକଣା ସଂଗ୍ରହ କରିନିଅନ୍ତୁ ତା'କୁ ଉତ୍ପୀଡିତ କରି । ବର୍ଷାକାରୀ, ବ୍ୟାପକ, ବଳିଷ୍ଠ ଅଶ୍ୱତୁଲ୍ୟ ମେଘକୁ ବୀର୍ଯ୍ୟବାନ୍, ପରିପୁଷ୍ଟ କରନ୍ତୁ । ସେହି ଗୁରୁଗର୍ଜନଶୀଳ ମେଘ ସହିତ, ହେ ପର୍ଜନ୍ୟ, ତୁମେ ଆମ ନିକଟକୁ ଓହ୍ଲାଇ ଆସ ।

ହେ ବରୁଣ ଦେବତା, ତୁମେ ପ୍ରାଣପ୍ରଦ ଜଳ ଢ଼ାଳି ଚାଲିଛ, ଢ଼ାଳି ଚାଲିଥାଅ ତଳକୁ ତିର୍ଯ୍ୟକ୍ ଭାବରେ । ସେହି ଜଳଧାରା ଗରଗର ଶବ୍ଦ କରି ପତିତ ହେଉ । ଜଳପ୍ରବାହଗୁଡ଼ିକ ସ୍ଫୀତ ହୋଇଉଠୁ । ସେମାନଙ୍କ ଧାରରେ ବସି ଏତେ କାଳ ନିଦାଘପ୍ରପୀଡ଼ିତ, ବର୍ତ୍ତମାନ ବୃଷ୍ଟିଜଳର ପ୍ଲାବନରେ ଆନନ୍ଦିତ, ଚିତ୍ର-ବିଚିତ୍ର ବାହୁବିଶିଷ୍ଟ (ବା ଶ୍ୱେତବାହୁ ବିଶିଷ୍ଟ) ମଣ୍ଡୂକଗଣ ରବ କରନ୍ତୁ ।

ବ୍ରତଚାରୀ ତପସ୍ୱୀ ବ୍ରାହ୍ମଣମାନଙ୍କ ପରି ସେମାନେ ଯେପରି ସାରାବର୍ଷ ଉପବାସରେ ରହି କ୍ଷୀଣକାୟ ହୋଇଯାଇଥିଲେ । ବର୍ତ୍ତମାନ ବର୍ଷାଜଳ ଲାଭକରି ଏକସ୍ୱରରେ ଆନନ୍ଦରେ ରବ କରୁଛନ୍ତି । ପର୍ଜନ୍ୟଙ୍କୁ ତଦ୍ୱାରା ପ୍ରୀତ କରୁଛନ୍ତି । (ଋଗ୍‌ବେଦର ମଣ୍ଡୂକ ସୂକ୍ତର -୧୦ମ ମଣ୍ଡଳ, ୧୦୩ତମ ସୂକ୍ତ-ପ୍ରାରମ୍ଭରେ ଅଛି ଏହି ଋକ୍‌ଟି । ଏଥିର ପରବର୍ତ୍ତୀ ଋକ୍‌ଟି ମଧ ସ୍ଥାନ ପାଇଛି ଋଗ୍ ବେଦର 'ଖିଳ' ଅଂଶରେ ।)

ହେ ମଣ୍ଡୂକୀଗଣ, ତୁମେ ସବୁ ମଧ ସେମାନଙ୍କ ସହିତ ସ୍ୱର ମିଳାଇ ଆନନ୍ଦରେ ରବକରି ବାରିଦକୁ, ବର୍ଷାଜଳକୁ ଅଭ୍ୟର୍ଥନା କର, ଆକୃଷ୍ଟ କର । ବର୍ଷାର ସ୍ତୁତି ଗାନକର । ବାରମ୍ବାର ରବ କରି ବର୍ଷାକୁ ଡ଼ାକିଆଣ । ବର୍ଷା ଓହ୍ଲାଇ ଆସୁ । ହେ ତାଦୁରୀ,ଚାରିପାଦ ମେଲାଇ ଡେଇଁ ଡେଇଁ ପରିପୂର୍ଣ୍ଣ ହ୍ରଦରେ ସନ୍ତରଣ କର ।

ହେ ଖଣଖା, ହେ ଖେମଣା, ହେ ତାଦୁରୀ (ସାୟଣଙ୍କ ମତରେ ଏହା ବିଭିନ୍ନ ଜାତିର ମଣ୍ଡୂକୀଙ୍କର ନାମ । ଦେବୀ ଚାନ୍ଦ ଇଂରାଜୀରେ ଅନୁବାଦ କରି ଲେଖିଛନ୍ତି- ' O female frog that lives in the hole, O contented female frog, O tiny frog'), ହେ ପାଲିକାଗଣ, (ପର୍ଜନ୍ୟଙ୍କ ପ୍ରୀତିଜନକ ରବ ଦ୍ୱାରା ବର୍ଷାକୁ ଡ଼ାକିଆଣି ପୃଥିବୀକୁ ଶସ୍ୟସମୃଦ୍ଧ କରି ଜନଗଣଙ୍କ ପୁଷ୍ଟି ସାଧନ କରୁଥିବାରୁ ମଣ୍ଡୂକୀଗଣଙ୍କୁ 'ପାଳିକା' ବୋଲି ସମ୍ବୋଧନ କରାଯାଉଅଛି) ଶୁଣ, ଶୁଣ । ହ୍ରଦ ମଧ୍ୟରେ ଥାଇ ତୁମର ରବ ଦ୍ୱାରା ବର୍ଷାକୁ ଆବାହନ କରିଆଣ । ମରୁଦ୍‌ଗଣଙ୍କୁ ବଶ କରି ବର୍ଷାକୁ ଜୟ କରିଆଣ ।

ହେ ପର୍ଜନ୍ୟ, ମହାସମୁଦ୍ରରୁ ଜଳ ଆହରଣ କର- ବିରାଟ ଜଳାଧାର ମେଘ ଉତ୍ତୋଳନ କର, ଢ଼ାଳିଦିଅ ବର୍ଷା । ଏହି ପୃଥିବୀକୁ ଅଭିଷିକ୍ତ କର । ବିଦ୍ୟୁତ୍ ସ୍ଫୁରିତ ହେଉ ମେଘରେ । ଅନୁକୂଳ ବାୟୁ ପ୍ରବାହିତ ହେଉ । ଚତୁର୍ଦ୍ଦିଗରେ ମେଘରୁ ବର୍ଷିତ ଜଳ ଖେଳିଯାଉ, ଯାଗାଦି କର୍ମର ସହାୟକ, ବର୍ଦ୍ଧକ ହେଉ । ଓଷଧିଗଣ, ବୃକ୍ଷଲତାଦିଗଣ ବୃଷ୍ଟି ଲାଭ କରି ଆନନ୍ଦିତ ହୁଅନ୍ତୁ ।

ଋଗ୍‌ବେଦର ପର୍ଜନ୍ୟ ସୂକ୍ତ ଓ ଅଥର୍ବ ବେଦର ବୃଷ୍ଟି ସୂକ୍ତ ମଧ୍ୟରେ ଭାବଗତ, ଭାଷାଗତ, ବର୍ଣ୍ଣନାଶୈଳୀଗତ ସାମଞ୍ଜସ୍ୟ ସୁସ୍ପଷ୍ଟ । ଉଭୟରେ ପର୍ଜନ୍ୟ ଦେବ ଓ ମରୁଦ୍‌ଗଣଙ୍କର ସ୍ତୁତି କରା ହୋଇଅଛି । ବର୍ଷାପାଇଁ ପ୍ରାର୍ଥନା କରା ହୋଇଅଛି । ଅନ୍ତରିକ୍ଷରେ ପର୍ଜନ୍ୟ ଦେବ, ମରୁଦ୍‌ଗଣ, ମେଘ ଓ ବିଦ୍ୟୁତ୍‌ଙ୍କର କାର୍ଯ୍ୟଧାରା ବର୍ଣ୍ଣିତ ହୋଇଅଛି । ସେହି ବର୍ଣ୍ଣନା ପଢ଼ିଲେ ମନେ ପଡୁଛି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ରୋମାଣ୍ଟିକ୍ କବି ଶେଲୀଙ୍କର ଦୁଇଟି କବିତା- The Cloud ଓ Ode to the West Wind । ଶେଲୀ ଯେପରି ପଶ୍ଚିମ ବାୟୁକୁ ଜୀବନ୍ତ ରୂପ ଦେଇଅଛନ୍ତି- ଶକ୍ତିର ରୂପ, ଧ୍ୱଂସକାରିଣୀ ଶକ୍ତିର ରୂପ, ପୁଣି ନବଜୀବନସମ୍ଭବକାରିଣୀ ଶକ୍ତିର ରୂପ- ସେହିପରି ରୂପ ଦେଇଛନ୍ତି ଭୌମ ଅତ୍ରି ଓ ଅଥର୍ବା ପର୍ଜନ୍ୟଙ୍କୁ, ମରୁଦ୍‌ଗଣଙ୍କୁ- ପ୍ରକୃତିର ଅନୁରୂପ ପରମ ଶକ୍ତି ଦୁଇଟିକୁ । ପର୍ଜନ୍ୟ ଗର୍ଜନ କରି ବର୍ଷଣ କରନ୍ତି ବର୍ଷାଧାରା । ବିଦୀର୍ଣ୍ଣ ମେଘରୁ- 'ସୁଦାନବ' ମରୁଦ୍‌ଗଣ ମେଘଗଣଙ୍କୁ ସ୍ୱସ୍ଥାନରୁ ବିଚ୍ୟୁତ କରି ଢ଼ାଳନ୍ତି ବର୍ଷା । ପର୍ଜନ୍ୟ ଜନମଙ୍ଗଳକର- ସେ ଶସ୍ୟାଦିର ଉତ୍ପାଦନର କାରଣ ହୁଅନ୍ତି ଜଳଧାରା ପ୍ରେରଣ କରି । ଓଷଧିଗଣଙ୍କୁ, ବ୍ରତତୀଙ୍କୁ ଉଜ୍ଜୀବିତ କରନ୍ତି, ବୀଜଗଣ ଅଙ୍କୁରିତ ହୁଅନ୍ତି । ୭ମ ମଣ୍ଡଳର ୧୦୨ତମ ସୂକ୍ତର ୨ୟ ଋକ୍‌ରେ ବସିଷ୍ଠ ଋଷି ପର୍ଜନ୍ୟ ଦେବଙ୍କର ବର୍ଣ୍ଣନା କରି କହିଛନ୍ତି- 'ଯୋ ଗର୍ଭମୋଷଧୀନାଂ ଗବାଂ କୃଣୋତ୍ୟର୍ବତାଃ । ପର୍ଜନ୍ୟଃ ପୁରୁଷୀଣାମ୍ ।' (ଅର୍ଥାତ୍ ଯେଉଁ ପର୍ଜନ୍ୟଦେବ ଓଷଧିଗଣଙ୍କର, ଗାଭୀଗଣଙ୍କର, ଅଶ୍ୱଗଣଙ୍କର ଓ ନାରୀଗଣଙ୍କର ଗର୍ଭ ଉତ୍ପାଦନ କରନ୍ତି...) । ଅଥର୍ବ ବେଦର ଭୂମି ସୂକ୍ତର ଦ୍ୱାଦଶ ଋକ୍‌ରେ ଅଥର୍ବା ଋଷି କହିଛନ୍ତି-

ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ
ପର୍ଜନ୍ୟଃ ପିତା ସ ଉନଃ ପିପର୍ତ୍ତୁ ।

. ଅର୍ଥାତ୍, ଭୂମି ମୋର ମାତା- ପୃଥିବୀଙ୍କର ପୁତ୍ର ମୁଁ । ସେହି ପର୍ଜନ୍ୟ ପିତା ଆମର, ଆମକୁ ପାଳନ କରନ୍ତୁ ।

ସେହି ସୂକ୍ତରେ ୪୨ ତମ ଋକ୍‌ରେ ଋଷି ଲେଖିଛନ୍ତି-

ଭୂମ୍ୟୈ ପର୍ଜନ୍ୟପତ୍ନ୍ୟୈ ନମୋଽସ୍ତୁ ବର୍ଷ ମେଦସେ-
ଅର୍ଥାତ୍, ପର୍ଜନ୍ୟପତ୍ନୀ ବର୍ଷାମେଦୁର ଭୂମିଙ୍କୁ ନମସ୍କାର ।

ଭୌମ ଅତ୍ରି ଓ ଅଥର୍ବା ଉଭୟେ ପର୍ଜନ୍ୟ ପୃଥିବୀର ଗୁଳ୍ମ ଲତାଦିରେ ଓଷଧିରେ ଗର୍ଭବିଧାନ କରନ୍ତି ବୋଲି ବର୍ଣ୍ଣନା କରିଛନ୍ତି । ସେମାନେ, ଶେଲୀଙ୍କ ଭାଷାରେ, 'quicken a new birth' (Ode to the West Wind). The Cloud କବିତାରେ Cloud ବା ମେଘ କହୁଅଛି-

From my wings are shaken the dews that waken
The sweet buds everyone.

ଭୂମି ସୂକ୍ତରେ ଅଥର୍ବା ଋଷି ଭୂମିକୁ 'ବିଶ୍ୱଗର୍ଭା' ବୋଲି ବର୍ଣ୍ଣନା କରିଛନ୍ତି (୪୩ ତମ ଋକ୍) ।

ବୈଜ୍ଞାନିକ ସତ୍ୟ ଅଛି ଅଥର୍ବା ଋଷିଙ୍କ କଳ୍ପନା ମୂଳରେ । ସମୁଦ୍ରରୁ ଉଦ୍‌ଗତ ହେଉଛି ଜଳୀୟ ବାଷ୍ପ ସୂର୍ଯ୍ୟଙ୍କ ଉତ୍ତାପରେ, ମେଘରେ ପରିଣତ ହେଉଛି । ମେଘରୁ ପୁଣି ଝରିପଡୁଛି ଜଳ । ପୃଥିବୀର ଜଳ ଫେରିଆସୁଛି ପୁଣି ପୃଥିବୀକୁ ବୃଷ୍ଟି ଜଳରୂପେ । ଯେ ପ୍ରକୃତିର ଜଳଚକ୍ର । ଶେଲୀଙ୍କ The Cloud ରେ Cloud କହିଛି-

I bring forth showers for the thirsty flowers
From the seas and streams.

ବାଇବିଲ୍‌ରେ ଭଗବାନ୍‌ଙ୍କୁ Water of Life ବୋଲି ବର୍ଣ୍ଣନା କରାଯାଇଛି । ପର୍ଜନ୍ୟ ଦେବତା- ଅନ୍ତରିକ୍ଷର ବୃଷ୍ଟି ଦେବତା Water of Life । ଜୀବଜଗତ୍, ଉଦ୍ଭିଦ ଜଗତ୍ ଚାହିଁ ରହିଛନ୍ତି ସେ Water of Life କୁ । ଜଳ ଆଉ ଉଷ୍ମତା ଆବଶ୍ୟକ ଜୀବନର ଉନ୍ମେଷ ପାଇଁ । ବିଦ୍ୟୁତ୍‌ରୂପକ ଅଗ୍ନି ଉତ୍ପାଦିତ ହୁଏ ଜଳାଧାର ମେଘରେ । ବୃଷ୍ଟିଧାରାରେ ଯେପରି ତା'ର ଉଷ୍ମତା ସଂଯୁକ୍ତ ରହିଛି, ସଂଯୁକ୍ତ ରହିଛି ସୂର୍ଯ୍ୟକିରଣର ଉଷ୍ମତା । ଜଳ ଓ ଅଗ୍ନିର ସାନ୍ନିଧ, ସୃଷ୍ଟି କ୍ରିୟାରେ ସହଯୋଗ ରୂପ ପାଇଛି ବୃଷ୍ଟି ସୂକ୍ତରେ । ବିଦ୍ୟୁତ୍‌ସ୍ପୃଷ୍ଟ ମେଘର ଚିତ୍ର ଦେଇଛନ୍ତି ଅଥର୍ବା । ଶେଲୀଙ୍କ The Cloud କବିତାରେ Cloud ବା ମେଘ କହିଛି-

Sublime on the towers of my skiey bowers
Lightning my pilot sits ;

ବର୍ଷା ପ୍ଲାବିତ ପୃଥିବୀର ଚିତ୍ର ରହିଛି ଉଭୟ ସୂକ୍ତରେ । ପୃଥିବୀ ହୋଇଛି ବାରିସିକ୍ତ, ବାରିପ୍ଲାବିତ । ନିର୍ଝରିଣୀଗଣ ଛୁଟିଛନ୍ତି ତା'ର ବକ୍ଷରେ- ସେମାନଙ୍କର ଝରଝର ଶବ୍ଦ ମିଶିଯାଇଛି ପର୍ଜନ୍ୟଙ୍କର ବଜ୍ରଗର୍ଜନ ସହିତ, ମେଘର ଗର୍ଜନ ସହିତ, ମରୁଦ୍‌ଗଣଙ୍କ, Whitney ଙ୍କ ଭାଷାରେ, 'brilliant song' ସହିତ । ବିଶ୍ୱକବି ରବୀନ୍ଦ୍ରନାଥ 'ବର୍ଷା ମଙ୍ଗଳ' ନାମକ କବିତାରେ ଲେଖିଛନ୍ତି-

ଶତେକ ଯୁଗେର କବିଦଲେ ମିଲି ଆକାଶେ,
ଧ୍ୱନିୟା ତୁଲିଛେ ମତ୍ତମଦିର ବାତାସେ
ଶତେକ ଯୁଗେର କବିତା ।

ଚତୁର୍ଦ୍ଦିଗରେ ଉଠିଛି ଉଦାତ୍ତ ସଙ୍ଗୀତ । ତା'ରି ସହିତ ମିଶିଯାଇଛି ସ୍ତୋତା ଋଷିଗଣଙ୍କର ସ୍ତୁତିଗାନ-ପର୍ଜନ୍ୟଙ୍କର, ମରୁଦ୍‌ଗଣଙ୍କର ସ୍ତୁତି- ମେଘ ଦର୍ଶନରେ ବାରିବର୍ଷଣରେ ଉଲ୍ଲାସଭରା ଗାନ । ସେମାନେ ପ୍ରାର୍ଥନା କରିଛନ୍ତି- ଆମକୁ ଆହୁରି ମେଘରାଶି ଦେଖାଅ, ଆହୁରି ଉଲ୍ଲାସରେ ଆମେ ଗାଇବୁ ।

ଏ ସଙ୍ଗୀତ ସହିତ ମିଶିଛି ମଣ୍ଡୂକମଣ୍ଡୂକୀଙ୍କ ସମବେତ ରବ- ଋଗ୍‌ବେଦର ପର୍ଜନ୍ୟ ସୂକ୍ତରେ ଏହା ନାହିଁ । କିନ୍ତୁ ଋଗ୍‌ବେଦର ବାସ୍ତବଧର୍ମୀ, ଆଂଶିକ ଭାବରେ ବ୍ୟଙ୍ଗାତ୍ମକ ମଣ୍ଡୂକ ସୂକ୍ତ (୭ମ ମଣ୍ଡଳ, ୧୦୩ ତମ ସୂକ୍ତ)ରୁ ଆହରଣ କରିଛନ୍ତି ଋଷି ଅଥର୍ବା ପ୍ରଥମ ଋକ୍‌ଟି ଓ ତଦ୍‌ସହିତ 'ଖିଲ'ରେ ସ୍ଥାନିତ ଦ୍ୱିତୀୟ ଋକ୍‌ଟି । ଉଭୟକୁ ସନ୍ନିବେଶିତ କରିଛନ୍ତି ବୃଷ୍ଟିସୂକ୍ତରେ । ଏହିପରି ସେଇ ସୁଦୂର ଅତୀତରେ ମଧ ବିଶ୍ୱାସ ଥିଲା ଯେ ମଣ୍ଡୂକ ରବ ଡ଼ାକିଆଣେ ବର୍ଷାକୁ । ସେଇଥିପାଇଁ ଅଥର୍ବା କହିଛନ୍ତି ମଣ୍ଡୂକ ମଣ୍ଡୂକୀଙ୍କୁ- ପର୍ଜନ୍ୟଙ୍କୁ ପ୍ରୀତ କରେ ତୁମର ରବ । ବାରମ୍ବାର ରବ କରି ଡ଼ାକିଆଣ ବର୍ଷାକୁ । ବର୍ଷା ଜଳରେ ପରିପୂର୍ଣ୍ଣ ହୋଇଯାଉ ପୁଷ୍କରିଣୀ । ଛୋଟ ଛୋଟ ମଣ୍ଡୂକୀ, ଦାଦୁରୀଗଣ ଜଳରେ ଲମ୍ଫ ପ୍ରଦାନ କରି କରି, ତାଙ୍କର ଚିତ୍ରବିଚିତ୍ର ଚାରିବାହୁ ମେଲାଇ ଆନନ୍ଦରେ ସନ୍ତରଣ କରନ୍ତୁ । ରବୀନ୍ଦ୍ରନାଥ 'ବର୍ଷାମଙ୍ଗଲ୍'ରେ ଲେଖିଛନ୍ତି- 'ଡ଼ାକିଛେ ଦାଦୁରି ତମାଲ କୁଞ୍ଜ ତୀରେ' ।

ଗୁରୁଗମ୍ଭୀର କିନ୍ତୁ ଆବେଗମୟ ଏହି ବୃଷ୍ଟି ସୂକ୍ତଟିରେ ଋଗ୍‌ବେଦରେ ମଣ୍ଡୂକ ସୂକ୍ତରୁ ଗୃହୀତ ଋକ୍‌ଟି ହାସ୍ୟୋଦ୍ଦୀପକ । ନିଦାଘର ଉତ୍ତାପରେ ଜୀର୍ଣ୍ଣଶୀର୍ଣ୍ଣ ମଣ୍ଡୂକ ମଣ୍ଡୂକୀଗଣ ମୃତବତ୍ ପଡ଼ିଥାନ୍ତି । ବର୍ଷା ଆସିଲାକ୍ଷଣି ଜୀବନ ପାଆନ୍ତି । ଏକତ୍ର ରବ କରନ୍ତି । ମଣ୍ଡୂକ ସୂକ୍ତ ରଚୟିତା ବସିଷ୍ଠ ସେମାନଙ୍କୁ ତୁଳନା କରିଛନ୍ତି ବ୍ରତଚାରୀଙ୍କ ସହିତ । ସମ୍ବତ୍ସର ବ୍ୟାପୀ ଉପବାସ ପାଳନ ପରେ, ଜୀର୍ଣ୍ଣଶୀର୍ଣ୍ଣ ବ୍ରତଚାରୀଗଣ ବ୍ରତଭଙ୍ଗ ପରେ ଏକତ୍ର ସ୍ତୋତ୍ର ପାଠ କରନ୍ତି ପୁଷ୍କରିଣୀ ତୀରରେ । ମଣ୍ଡୂକମଣ୍ଡୂକୀଗଣ ଯେପରି ଠିକ୍ ସେମାନଙ୍କ ପରି (ଲକ୍ଷ୍ୟ କରିବା କଥା, ଋଗ୍‌ବେଦର ମଣ୍ଡୂକ ସୂକ୍ତର ଠିକ୍ ପୂର୍ବରୁ ରହିଛି ଏକ କ୍ଷୁଦ୍ର ପର୍ଜନ୍ୟ ସୂକ୍ତ- ୭ମ ମଣ୍ଡଳ ୧୦୨ ସୂକ୍ତ) ।

ବୃଷ୍ଟି ସୂକ୍ତ (୧୬ଟି ଋକ୍ ବିଶିଷ୍ଟ) ପର୍ଜନ୍ୟ ସୂକ୍ତ (୧୦ଟି ଋକ୍ ବିଶିଷ୍ଟ) ଠାରୁ ଦୀର୍ଘତର । ମନେ ହୁଏ, ଯେପରି ବୃଷ୍ଟି ସୂକ୍ତଟି ପର୍ଜନ୍ୟ ସୂକ୍ତର ଏକ ପରିବର୍ଦ୍ଧିତ, ପରିବର୍ତ୍ତିତ ସଂସ୍କରଣ ।

ଏଥିରେ ମଣ୍ଡୂକଙ୍କ ସମ୍ପର୍କୀୟ ତିନୋଟି ଋକ୍ ଅଛି । ଅଗ୍ନି, ପ୍ରଜାପତି ଓ ବରୁଣଙ୍କୁ ମଧ୍ୟ ବୃଷ୍ଟିଦାନ କରିବାକୁ ପ୍ରାର୍ଥନା କରାହୋଇଛି ।

ଏହି ସୂକ୍ତରେ ଘୋଷାରୂପେ ରହିଛି କେତେକ ଋକ୍‌ର ଅଂଶ ବିଶେଷ । ୧ମ ଓ ୫ମ ଋକ୍‌ର ଦ୍ୱିତୀୟାଂଶ ସମାନ- 'ମହର୍ଷଭସ୍ୟ ନଦତୋ ନଭସ୍ୱତୋ ବାଶ୍ରା ଆପଃ ପୃଥିବୀଂ ତର୍ପୟନ୍ତୁ ।' ୨ୟ ଓ ୩ୟ ଋକ୍ ଦୁଇଟିର ଦ୍ୱିତୀୟାଂଶ ପ୍ରାୟ ସମାନ-

ବର୍ଷସ୍ୟ ସର୍ଗା ମହୟନ୍ତୁ ଭୂମିଂ ପୃଥର୍ ଜାୟନ୍ତାମୋଷଧୟୋ ବିଶ୍ୱରୂପାଃ । ୨ୟ ।<br>
ବର୍ଷସ୍ୟ ସର୍ଗା ମହୟନ୍ତୁ ଭୂମିଂ ପୃଥର୍ ଜାୟନ୍ତାଂ ବୀରୁଧୋ ବିଶ୍ୱରୂପାଃ । ୩ୟ ।

୭ମ, ୮ମ ଓ ୯ମ ଋକ୍‌ରେ ଶେଷକୁ ଯଥାକ୍ରମେ ରହିଛି-

ମରୁଭିଃ ପ୍ରଚ୍ୟୁତା ମେଘାଃ  ବର୍ଷନ୍ତୁ ପୃଥିବୀଂ ଅନୁ । ୭ମ ।<br>
ମରୁଭିଃ ପ୍ରଚ୍ୟୁତା ମେଘାଃ  ସଂ ଯନ୍ତୁ ପୃଥିବୀଂ ଅନୁ । ୮ମ ।<br>
ମରୁଭିଃ ପ୍ରଚ୍ୟୁତା ମେଘାଃ  ପ୍ରାବନ୍ତୁ ପୃଥିବୀଂ ଅନୁ । ୯ମ ।

ଏପରି ପୁନରାବୃତ୍ତି- ଅଧିକାଂଶ କ୍ଷେତ୍ରରେ ପ୍ରାର୍ଥନାର ପୁନରାବୃତ୍ତି- ବେଦର ବହୁ ସୂକ୍ତରେ ଦେଖାଯାଏ ।

ଅଥର୍ବା ଋଷିଙ୍କର ଯେ ଋଗ୍‌ବେଦର ପର୍ଜନ୍ୟ ସୂକ୍ତ ସହିତ ପରିଚୟ ଥିଲା, ସେଥିର ପ୍ରମାଣ ମିଳେ ବୃଷ୍ଟି ସୂକ୍ତର ଶେଷ ଋକ୍‌ରେ । ପର୍ଜନ୍ୟ ସୂକ୍ତର ୮ମ ଋକ୍‌ର ପ୍ରାରମ୍ଭରେ ଅଛି- ମହାନ୍ତଂ କୋଶମୁଦଚା ନି ଷିଞ୍ଚ-ମହାନ୍ ଜଳାଧାର ଉତ୍ତୋଳନ କର, ଢ଼ାଳିଦିଅ ତାର ଜଳ ତଳକୁ (ପୃଥିବୀକୁ) । ସାମାନ୍ୟ ବଦଳାଇ ଅଥର୍ବା ବୃଷ୍ଟି ସୂକ୍ତରେ ଲେଖିଛନ୍ତି- ମହାନ୍ତଂ କୋଶମ୍ ଉଦଚାଭିଷିଞ୍ଚ..... ମହାନ୍ ଜଳାଧାର ଉତ୍ତୋଳନ କର, ଅଭିଷିକ୍ତ କର ଏ ଧରାକୁ ।

ଯୁଗଯୁଗ ଧରି ଅନନ୍ତ କାଳ ଧରି ଏହି ପ୍ରାର୍ଥନା କରି ଆସୁଛି ମନୁଷ୍ୟ- ପୃଥିବୀକୁ ଅଭିଷିକ୍ତ କର ବାରିଧାରାରେ, ଦିବ୍ୟ ଆଲୋକମୟ, ପ୍ରାଣମୟ ଅମୃତତୁଲ୍ୟ ବାରିଧାରାରେ ।

******

# ଋଗ୍‌ବେଦର ଦୁଇଟି ସୂର୍ଯ୍ୟ ସୂକ୍ତ

ଋଗ୍‌ବେଦର ମନ୍ତ୍ରରଚୟିତା କବିଋଷିଗଣ ବାରମ୍ବାର ସୂର୍ଯ୍ୟଙ୍କର ବନ୍ଦନା ଗାନ କରିଅଛନ୍ତି । ଲକ୍ଷ୍ୟ କରିଛନ୍ତି ସେମାନେ- ଉଦୟକାଳୀନ ସୂର୍ଯ୍ୟଙ୍କର ସ୍ନିଗ୍ଧ ଅରୁଣାଭ ଆଭା- ସମୁଜ୍ଜ୍ୱଳ ସ୍ୱର୍ଣ୍ଣାଭ ରଶ୍ମିଜାଳରେ ଦ୍ୟୁଲୋକ ଭୂଲୋକ ପ୍ଲାବିତ କରି ଗଗନର ଶିଖର ଦେଶକୁ ତାଙ୍କର ଆରୋହଣ- ପୁଣି ତାଙ୍କର ଅବରୋହଣ ପ୍ରତୀଚୀରେ । ସୂର୍ଯ୍ୟଙ୍କର ଜ୍ୟୋତିର୍ମୟ ସୌନ୍ଦର୍ଯ୍ୟରେ ବିସ୍ମିତ, ବିମୁଗ୍ଧ ହୋଇଛନ୍ତି । କଳ୍ପନାସମୃଦ୍ଧ ଚିତ୍ର ତାଙ୍କର ଆଙ୍କିଛନ୍ତି ଉଚ୍ଛ୍ୱସିତ ଆବେଗମୟ କବିତାରେ । କିନ୍ତୁ ସୂର୍ଯ୍ୟ ତାଙ୍କ ପାଇଁ ପ୍ରକୃତିର କେବଳ ଏକ ବାହ୍ୟ ବସ୍ତୁନିଷ୍ଠ ବିଭାବ ହୋଇ ରହିନାହାନ୍ତି । ଦ୍ରଷ୍ଟା କବି ସେମାନେ- ଦର୍ଶନ କରିଛନ୍ତି ସୂର୍ଯ୍ୟଙ୍କ ଠାରେ ସର୍ବଦେବମୟ ରୂପ- ପରମବ୍ରହ୍ମଙ୍କର ସ୍ୱରୂପ- ଅନ୍ଧତମସାବିନାଶୀ, ଅଜ୍ଞାନତମସାବିନାଶୀ ଦିବ୍ୟ ପ୍ରଜ୍ଞାଲୋକ- ଦିବ୍ୟଦୃଷ୍ଟି ।

ଋଷି ଆଙ୍ଗିରସ (ଅଙ୍ଗିରା ପୁତ୍ର) କୁସଙ୍କ ଦ୍ୱାରା ରଚିତ ସୂର୍ଯ୍ୟ-ସୂକ୍ତ (୧ମ ମଣ୍ଡଳ, ୧୧୫ ତମ ସୂକ୍ତ) ଏକ ଅତ୍ୟନ୍ତ ପ୍ରସିଦ୍ଧ, ହୃଦୟସ୍ପର୍ଶୀ ସୂକ୍ତ ।

ବିଚିତ୍ର ସମୁଜ୍ଜ୍ୱଳ ରଶ୍ମିପୁଞ୍ଜସମନ୍ୱିତ (ବା ସମସ୍ତ ଦେବଗଣଙ୍କର ସମୁଜ୍ଜ୍ୱଳ ମୁଖ ସ୍ୱରୂପ- ଦିବ୍ୟ ଶକ୍ତିଙ୍କର ପ୍ରତୀକ ସ୍ୱରୂପ- ଚିତ୍ରଂ ଦେବାନାଂ ଅନୀକଂ) ସୂର୍ଯ୍ୟ ଉଦିତ ହୋଇଅଛନ୍ତି । ସେ ମିତ୍ର, ବରୁଣ ଓ ଅଗ୍ନିଙ୍କର ଚକ୍ଷୁ । ଦ୍ୟୁଲୋକ, ଭୂଲୋକ ଓ ଅନ୍ତରିକ୍ଷକୁ ସେ ପରିବ୍ୟାପ୍ତ କରିଦେଇଛନ୍ତି (ତାଙ୍କର ଆଲୋକରେ) । ସେ ହେଉଛନ୍ତି ସ୍ଥାବର, ଜଙ୍ଗମ ସମସ୍ତଙ୍କର ଆତ୍ମା । ୧ ।

ଦୀପ୍ତିମାନ୍ ଜଣେ ତରୁଣ (ପ୍ରେମିକ) ଯେପରି ଜଣେ ତରୁଣୀକୁ ଲକ୍ଷ୍ୟକରି ଅନୁଧାବନ କରେ, ସେହିପରି ସୂର୍ଯ୍ୟ ଜ୍ୟୋତିର୍ମୟୀ ଉଷାଙ୍କୁ ଅନୁଧାବନ କରୁଛନ୍ତି । (ସୂର୍ଯ୍ୟୋଦୟ କାଳରେ) ଦେବକାମ, ଦେବଭକ୍ତ ନରଗଣ ଆରମ୍ଭ କରି ଦିଅନ୍ତି ଯଜ୍ଞକର୍ମ, 'ଭଦ୍ରଂ ପ୍ରତି ଭଦ୍ରାୟ' ଅର୍ଥାତ୍ ଭଦ୍ର ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ମଙ୍ଗଳ କାମନା କରି । 'ନରୋ ଦେବୟନ୍ତୋ ଯୁଗାନି ବିତନ୍ୱତେ'ର ବିଭିନ୍ନ ଅର୍ଥ କରାଯାଇଅଛି- ଯୁଗ ଯୁଗଧରି ପ୍ରଚଳିତ ଯଜ୍ଞକର୍ମ ଆରମ୍ଭ କରନ୍ତି, ବା ଯଥାକାଳରେ (ପ୍ରାତଃ କାଳ ଯଜ୍ଞ କରିବାର ଉପଯୁକ୍ତ କାଳ) ଯଜ୍ଞ କରନ୍ତି, ବା ନରଗଣ ସସ୍ତ୍ରୀକ (ଯୁଗ ଅର୍ଥାତ୍ ଯୁଗଳ ଭାବରେ) ଯଜ୍ଞ କରନ୍ତି, କିମ୍ବା ଯଜ୍ଞ କରିବା ଉଦ୍ଦେଶ୍ୟରେ ଲଙ୍ଗଳ ବିଛାନ୍ତି, ଅର୍ଥାତ୍ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରନ୍ତି । ୨ ।

ସୂର୍ଯ୍ୟଙ୍କର ଭଦ୍ର ଅର୍ଥାତ୍ କଲ୍ୟାଣକର ହିରଣ୍ୟବର୍ଣ୍ଣ ଅପରୂପ ଦୀପ୍ତିମନ୍ତ, ବିଚିତ୍ରବର୍ଣ୍ଣ ଅଶ୍ୱଗଣ ଆକାଶରେ ବ୍ୟାପିଗଲେ (ଋଷି ଆଙ୍ଗିରସ କୁସ ସୂର୍ଯ୍ୟଙ୍କର ରଶ୍ମିଗଣଙ୍କୁ ତାଙ୍କର ହିରଣ୍ୟବର୍ଣ୍ଣ ଅଶ୍ୱ ବୋଲି ବର୍ଣ୍ଣନା କରିଛନ୍ତି) । ସେମାନଙ୍କୁ ଦେଖି ସମସ୍ତେ ଆନନ୍ଦଧ୍ୱନି

କରୁଅଛନ୍ତି, ସ୍ତୁତି କରୁଛନ୍ତି ସେମାନଙ୍କୁ । ସେମାନେ ଗୋଟିଏ ମୁହୂର୍ତ୍ତରେ ସାରା ଦ୍ୟାବାପୃଥିବୀ ସମ୍ପୂର୍ଣ୍ଣ ରୂପେ ବ୍ୟାପିଯାଇଛନ୍ତି । ୩ ।

ସୂର୍ଯ୍ୟଙ୍କର ସେଇ ହେଉଛି ଦେବତ୍ୱ, ସେଇ ହେଉଛି ମହିମା ଯେ ମନୁଷ୍ୟମାନଙ୍କର କର୍ମର ଠିକ୍ ମଝିରେ ଅର୍ଥାତ୍ କର୍ମ ନ ସରିବା ପୂର୍ବରୁ ସେ ତାଙ୍କର ପରିବ୍ୟାପ୍ତ କିରଣଜାଳକୁ ସମ୍ବରଣ କରି ନିଅନ୍ତି (ଏହାର ଆଉ ଏକ ଅର୍ଥ କରାହୋଇଅଛି- ସୂର୍ଯ୍ୟ ତାଙ୍କର କର୍ମର ଠିକ୍ ମଝିରେ ଅର୍ଥାତ୍ ମଧ୍ୟାହ୍ନରେ ଯେତେବେଳେ ତାଙ୍କର କିରଣଜାଳ ସର୍ବାପେକ୍ଷା ଉଜ୍ଜ୍ୱଳ ସେତିକିବେଳେ ସେହି ପରିବ୍ୟାପ୍ତ କିରଣଜାଳକୁ ସମ୍ବରଣ କରିବା ଆରମ୍ଭ କରିଦିଅନ୍ତି, ଅର୍ଥାତ୍ ଏପରି ଆତ୍ମସଂଯମୀ ସେ ଯେ ନିଜର ଗୌରବମୟ ଅବସ୍ଥାରୁ ନିଜେ ଅପସରି ଯାଆନ୍ତି) । ଯେଉଁ ମୁହୂର୍ତ୍ତରେ ସେ ତାଙ୍କର ହିରଣ୍ୟବର୍ଣ୍ଣ ଅଶ୍ୱିଗଣଙ୍କୁ ବା ହରିଦ୍‌ନାମା ଅଶ୍ୱଗଣଙ୍କୁ ବିଶ୍ୱରୁ ବିଯୁକ୍ତ କରିଦିଅନ୍ତି, ସେହି ମୁହୂର୍ତ୍ତରେ ରାତ୍ରି ସର୍ବତ୍ର ତାଙ୍କର (ଅନ୍ଧକାରରୂପ) ବସ୍ତ୍ରକୁ ବିଛାଇ ଦିଅନ୍ତି । ୪ ।

ମିତ୍ର ଓ ବରୁଣଙ୍କର ଦର୍ଶନ ପାଇଁ ସୂର୍ଯ୍ୟ ଆକାଶର କୋଳରେ ତାଙ୍କର ଜ୍ୟୋତିର୍ମୟ ରୂପ ପ୍ରକାଶ କରିଅଛନ୍ତି । (ମିତ୍ର ଓ ବରୁଣଙ୍କୁ ଆମେ ଯେପରି ଦର୍ଶନ ଲାଭ କରିପାରିବା ସେଥିପାଇଁ ସୂର୍ଯ୍ୟ ତାଙ୍କର ଦୀପ୍ତିମୟ ରୂପ ପ୍ରକାଶ କରିଅଛନ୍ତି) । ସୂର୍ଯ୍ୟଙ୍କର ହିରଣ୍ୟବର୍ଣ୍ଣ (ବା ହରିଦ୍ ନାମଧେୟ) ଅଶ୍ୱଗଣ ଏକ ଦିଗରେ ଅନନ୍ତ ଉଜ୍ଜ୍ୱଳ ଆଲୋକ ଧାରଣ କରନ୍ତି, ଅନ୍ୟ ଦିଗରେ ଅନନ୍ତ କୃଷ୍ଣ ତେଜ ବହନ କରନ୍ତି । (ମିତ୍ର ହେଉଛନ୍ତି ଅନନ୍ତ, ପ୍ରକାଶିତ ଆଲୋକ, ବରୁଣ ହେଉଛନ୍ତି ଅନନ୍ତ, ଅପ୍ରକାଶିତ ଅନ୍ଧକାର ବା କୃଷ୍ଣବର୍ଣ୍ଣ । ସୂର୍ଯ୍ୟ ଦିବାରାତ୍ରି ଉଭୟ ସଂଘଟିତ କରନ୍ତି, ହରିଦ୍ରାଲୋକ ବିସ୍ତାର କରିବା ଦ୍ୱାରା ଏବଂ ପୁଣି ତାହା ସମ୍ବରଣ କରିବା ଦ୍ୱାରା) । ୫ ।

ହେ ଦେବତାଗଣ, ଆଜି ଏହି ସୂର୍ଯ୍ୟୋଦୟ କାଳରେ ଆମକୁ ଆମ ଚିତ୍ତର ସମସ୍ତ ଗ୍ଳାନିରୁ, ଦୈନ୍ୟରୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ କରିଦିଅ, ଆମକୁ ପରିପୂର୍ଣ୍ଣ କର । ଆମର ଏହି ପ୍ରାର୍ଥନା ସ୍ୱୀକାର କରନ୍ତୁ ମିତ୍ର, ବରୁଣ, ଅଦିତି, ଆକାଶ, ପୃଥିବୀ, ସାଗର ଓ ଅନ୍ତରିକ୍ଷ । ୬ ।

ଆଙ୍ଗିରସ କୁତ୍ସ ଏହି ସୂକ୍ତର ପ୍ରଥମ ଋକ୍‌ରେ ଯେପରି ସୂର୍ଯ୍ୟଙ୍କୁ ମିତ୍ର, ବରୁଣ ଅଗ୍ନିଙ୍କର ଚକ୍ଷୁ ରୂପରେ ବର୍ଣ୍ଣନା କରିଅଛନ୍ତି, ସେହିପରି ବହୁ ସୂର୍ଯ୍ୟସୂକ୍ତରେ କରାହୋଇଅଛି । ଯଥା : ନମୋ ମିତ୍ରସ୍ୟ ବରୁଣସ୍ୟ ଚକ୍ଷସେ (୧୦ମ, ୩୭ସୂ, ୧ଋ) ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟ ଦେବଃ....(୭ମ.୬୩ସୂ.୧ଋ)

ଏହି ସୂକ୍ତର ପ୍ରଥମ ଋକ୍‌ଟି ଯଜୁର୍ବେଦରେ (ବା, ୭।୪୨, ୧୩/୪୬) ଓ ଅଥର୍ବ ବେଦରେ (୧୩/୨/୩୫, ୨୦/୧୦୨/୧୪) ମଧ୍ୟ ଲକ୍ଷିତ ହୁଏ ।

ମିତ୍ର, ବରୁଣ ଓ ଅଗ୍ନି ଯେ ଏକ ପରମବ୍ରହ୍ମଙ୍କର ବିଭିନ୍ନ ରୂପ ତାହା ପ୍ରଥମ ମଣ୍ଡଳର ୧୬୪ ତମ ସୂକ୍ତର ୪୬ ତମ ଋକ୍‌ରେ ସୂଚାଇ ଦିଆ ହୋଇଅଛି ।

ଇନ୍ଦ୍ରଂ ମିତ୍ରଂ ବରୁଣଂ ଅଗ୍ନିମାହୁ-
ରେକଂ ସଦ୍‌ବିପ୍ରା ବହୁଧା ବଦନ୍ତି ।

ମିତ୍ରଙ୍କ ବିଷୟରେ ୩ମ.୫୯ସୂ. ୧ଋ.ରେ କୁହା ହୋଇଅଛି ଯେ ତାଙ୍କୁ ସ୍ତୁତି କରିବାରୁ ସେ ସମସ୍ତଙ୍କୁ କାର୍ଯ୍ୟରେ ପ୍ରବର୍ତ୍ତିତ କରୁଛନ୍ତି । ସେ ପୃଥିବୀ ଓ ଦ୍ୟୁଲୋକ ଧାରଣ କରିଛନ୍ତି ଓ ନିର୍ନିମେଷ ନୟନରେ ସମସ୍ତଙ୍କୁ ଚାହିଁ ରହିଛନ୍ତି ।

୭ମ.୮୭ସୂ.୩ଋ.ରେ ଅଛି, ''ବରୁଣଙ୍କର ଚରମାନଙ୍କର ଗତି ସର୍ବତ୍ର ଅବ୍ୟାହତ । ସେମାନେ ସୁରୂପ ଦ୍ୟାବାପୃଥିବୀକୁ ଦର୍ଶନ କରନ୍ତ ।'' ବରୁଣ ବିଶ୍ୱର ଶାସକ, ସମ୍ରାଟ୍, ଋତର ରକ୍ଷକ । ସେ ଚରମାନଙ୍କ ଦ୍ୱାରା ସମସ୍ତଙ୍କ ଉପରେ ଦୃଷ୍ଟି ରଖନ୍ତି, ଲକ୍ଷ୍ୟ କରନ୍ତି କିଏ ପାପ କରୁଛି । ଦଣ୍ଡ ଦିଅନ୍ତି ତାକୁ ।

ସୂର୍ଯ୍ୟ ସେହି ମିତ୍ର, ବରୁଣଙ୍କର ଚକ୍ଷୁ ସ୍ୱରୂପ ।
ସୂକ୍ତର ଦ୍ୱିତୀୟ ଋକ୍‌ଟି ଏକାନ୍ତ ହୃଦୟଗ୍ରାହୀ ।

ରାତ୍ରିର ଅବସାନ ପରେ ଆସନ୍ତି ଦୀପ୍ତିମତୀ ଅରୁଣାମ୍ବରୀ ଉଷା । ଉଷାଙ୍କ ଆଗମନ ପରେ ଉଦୟ ହୁଅନ୍ତି ସୂର୍ଯ୍ୟ । ଉଷା ପଳାୟନ କରନ୍ତି । ଆଙ୍ଗିରସ କୁସ ବର୍ଣ୍ଣନା କରିଛନ୍ତି, ସୂର୍ଯ୍ୟ ଯେପରି ଜଣେ ପ୍ରଣୟବ୍ୟାକୁଳ ତରୁଣ- ଉଷାଙ୍କର ପଛେ ପଛେ ଧାଇଁଛନ୍ତି । ମନେ ପଡ଼େ ପ୍ରାଚୀନ ଗ୍ରୀସ୍‌ର ଗୋଟିଏ ଗଳ୍ପ । ଆପୋଲୋ (Apollo) - ପ୍ରାଚୀନ ଗ୍ରୀସ୍‌ବାସୀଙ୍କର ସୂର୍ଯ୍ୟ ଦେବତା- ଡ଼ାଫ୍‌ନେ (Daphne) ଙ୍କର ପଛେ ପଛେ ପ୍ରେମାକୁଳ ହୋଇ ଧାଇଁଥିଲେ (ଉଷାଙ୍କର ଗୋଟିଏ ନାମ ଦହନା) । ଆପୋଲୋ ତାଙ୍କୁ ଧରିଲାକ୍ଷଣି ସେ ବିନାଶପ୍ରାପ୍ତ ହୋଇଥିଲେ । ସୂର୍ଯ୍ୟଙ୍କର ଉଦୟ ହେଲେ ଉଷା ନିଶ୍ଚିହ୍ନ ହୋଇ ଯାଆନ୍ତି । ପ୍ରଥମ ମଣ୍ଡଳର ୯୨ ତମ ସୂକ୍ତ ର ୧୧ଶ ଋକ୍‌ରେ ଉଷାଙ୍କୁ ପ୍ରେମିକ ସୂର୍ଯ୍ୟଙ୍କର ସ୍ତ୍ରୀ (ଜାରସ୍ୟ ଯୋଷା) ରୂପେ ଋଷି ଗୋତମ ବର୍ଣ୍ଣନା କରିଛନ୍ତି । କିନ୍ତୁ ଆଙ୍ଗିରସ ଋଷି ନିଜେ ତାଙ୍କର ଗୋଟିଏ ଉଷା ସୂକ୍ତରେ (୧ମ, ୧୧୩ସୂ) ସୁନ୍ଦରୀ,ଶ୍ୱେତବର୍ଣ୍ଣା ଉଷା ସୂର୍ଯ୍ୟଙ୍କର ମାତା (ସବିତୁଃ ପ୍ରସୂତା) ବୋଲି କହିଅଛନ୍ତି ।

ସେହି ଦ୍ୱିତୀୟ ଋକ୍‌ର ଦ୍ୱିତୀୟ ପଦ (ଯତ୍ରା ନରୋ ଦେବୟନ୍ତୋ ଯୁଗାନି ବିତନ୍ୱତେ ପ୍ରତି ଭଦ୍ରାୟ ଭଦ୍ରମ୍)ର ପୂର୍ବୋକ୍ତ ଅର୍ଥଗୁଡ଼ିକ ବ୍ୟତୀତ ଆଉ ଗୋଟିଏ ଅର୍ଥ ଲକ୍ଷ୍ୟ କରା ହୋଇଅଛି- ଦେବତ୍ୱ ପ୍ରାପ୍ତି ପାଇଁ ଇଚ୍ଛୁକ ମନୁଷ୍ୟ ଯୋଗ୍ୟ କର୍ମ କରେ । ସେହି କ୍ଷେତ୍ରରେ 'ଭଦ୍ରଂ ପ୍ରତି ଭଦ୍ରାୟ' ଅର୍ଥାତ୍ ସେହି କଲ୍ୟାଣକାରୀ ପୁରୁଷର କଲ୍ୟାଣ କରିବା ପାଇଁ ସୂର୍ଯ୍ୟ ନିଜକୁ ପ୍ରକାଶ କରନ୍ତି ।

ଋଷି କବି ଆଙ୍ଗିରସ କୁସ କଳ୍ପନା କରିଛନ୍ତି- ସୂର୍ଯ୍ୟଙ୍କର ରଶ୍ମି ସମୂହ ଯେପରି ସପ୍ତ ଅଶ୍ୱୀ । (ସୂର୍ଯ୍ୟ କିରଣ ତ ସପ୍ତବର୍ଣ୍ଣର ସମାହାର । ସେଇଥିପାଇଁ ମନେ ହୁଏ ଅଶ୍ୱୀଙ୍କ ସଂଖ୍ୟା ସପ୍ତ ବୋଲି ଋଷି କହିଅଛନ୍ତି । ବେଦରେ ବହୁ ସ୍ଥଳରେ କିରଣକୁ ଅଶ୍ୱରୂପେ ବର୍ଣ୍ଣନା କରାଯାଇଅଛି) । ସେମାନେ ବାହି ନେଉଛନ୍ତି ସୂର୍ଯ୍ୟଙ୍କର ସମୁଜ୍ଜ୍ୱଳ ରଥ ଆକାଶ ମାର୍ଗରେ । ଋଗ୍‌ବେଦର ସପ୍ତମ ମଣ୍ଡଳର ୬୬ ସୂକ୍ତରେ ଅଛି-

ଶୀର୍ଷ୍ଣ ଶୀର୍ଷ୍ଣୋ ଜଗତସ୍ତସ୍ଥୁଷସ୍ପତିଂ ସମୟା ବିଶ୍ୱମା ରଜଃ
ସପ୍ତ ସ୍ୱସାରଃ ସୁବିତାୟ ସୂର୍ଯ୍ୟଂ ବହନ୍ତି ହରିତୋ ରଥେ ।। ୧୫ ।।

ତଚ୍ଚକ୍ଷୁର୍ଦେବହିତଂ ଶୁକ୍ରମୁଚ୍ଚରେତ୍ । ପଶ୍ୟେମ ଶରଦଃ ଶତଂ, ଜୀବେମ ଶରଦଃ ଶତମ୍ ।। ୧୬ ।।

ସୂର୍ଯ୍ୟ ମସ୍ତକର ମଧ୍ୟ ମସ୍ତକ- (ସର୍ବୋଚ୍ଚ ସ୍ଥଳରେ ବିଦ୍ୟମାନ- ସମସ୍ତଙ୍କ ମସ୍ତକୋପରି ବିଦ୍ୟମାନ)- ସମସ୍ତଙ୍କ ଉପରେ, ସାରା ବିଶ୍ୱ ଉପରେ ସମାନ ଭାବରେ ଉଦ୍‌ଭାସିତ । ସେ ସ୍ଥାବର, ଜଙ୍ଗମ ସମସ୍ତଙ୍କର ପତି, ହରିତନାମ୍ନୀ ସପ୍ତ ଅଶ୍ୱୀଭଗିନୀ ତାଙ୍କୁ ରଥରେ ବହନ କରି ନେଉଛନ୍ତି । ସର୍ବ ଜନଙ୍କର, ବିଶ୍ୱର ମଙ୍ଗଳ ପାଇଁ ସେହି ଜ୍ୟୋତିର୍ମୟ ଚକ୍ଷୁସ୍ୱରୂପ ସୂର୍ଯ୍ୟ ଦେବନିର୍ଦ୍ଦେଶରେ ଉଦିତ ହେଉଅଛନ୍ତି । ଆମେ ଶତ ଶରତ୍ ଋତୁ ଯେପରି ଦେଖୁଁ, ଆମେ ଶତ ଶରତ୍ ଋତୁ ଯେପରି ବଞ୍ଚିରହୁ ।

(ଲକ୍ଷ୍ୟକରିବା କଥା, ଏହି ଋକ୍ ଦୁଇଟିରେ କେବଳ ସପ୍ତସଂଖ୍ୟକ ଅଶ୍ୱୀ ସୂର୍ଯ୍ୟଙ୍କୁ ରଥରେ ବହନ କରିନେବା କଥା ନାହିଁ, ତାଙ୍କୁ 'ଚକ୍ଷୁ' ରୂପେ ବର୍ଣ୍ଣନା କରାହୋଇଛି । ଆଙ୍ଗିରସଙ୍କ ସୂକ୍ତରେ ତାଙ୍କୁ 'ଆତ୍ମା ଜଗତସ୍ତସ୍ଥୁଷଶ୍ଚ'- 'ସ୍ଥାବରଜଙ୍ଗମଙ୍କ ଆତ୍ମା' ରୂପେ ବର୍ଣ୍ଣନା କରାହୋଇଥିବା ବେଳେ ଏଥିରେ (୧୫ଋ) 'ଜଗତସ୍ତସ୍ଥୁଷସ୍ପତି'- 'ସ୍ଥାବରଜଙ୍ଗମଙ୍କ ପତି' ରୂପେ ବର୍ଣ୍ଣନା କରାହୋଇଅଛି ।)

ଋଗ୍‌ବେଦରେ ବହୁ ସ୍ଥଳରେ ଦେବଦେବୀଗଣଙ୍କର ଆକାଶମାର୍ଗରେ ରଥରେ ଗମନର ବର୍ଣ୍ଣନା ଅଛି । କିରଣସମୂହକୁ ମଧ୍ୟ ଅଶ୍ୱରୂପେ ବର୍ଣ୍ଣନା କରାହୋଇଛି । ଅଶ୍ୱିଦ୍ୱୟ (ଅଶ୍ୱିନୀକୁମାର)ଙ୍କର ରଥ ତ୍ରିକୋଣାକାର ତ୍ରିଚକ୍ର ବିଶିଷ୍ଟ । ଅଗ୍ନିଙ୍କର ଅଶ୍ୱର ନାମ ରୋହିତ (ତାଙ୍କର ଜ୍ୟୋତି ରୋହିତ ବର୍ଣ୍ଣ) । ପ୍ରସ୍କଣ୍ୱ ଋଷି ଊଷାଙ୍କର ଆଗମନ ବର୍ଣ୍ଣନା କରି କହିଛନ୍ତି : ଏଷା ଯୁକ୍ତ ପରାବତଃ ସୂର୍ଯ୍ୟସ୍ୟୋଦୟନାଦଧି । ଶତଂ ରଥେଭିଃ ସୁଭଗୋଷା ଇୟଂ ବି ଯାତ୍ୟଭି ମାନୁଷାନ୍ (୧ମ,୪୮ସୂ, ୭ଋ) । ଅର୍ଥାତ୍, 'ଊଷା ରଥ ଯୋଜିତ କରିଛନ୍ତି; ଏହି ସୌଭାଗ୍ୟଶାଳିନୀ ଊଷା ବହୁ ଦୂରରୁ ସୂର୍ଯ୍ୟଙ୍କର ଉଦୟସ୍ଥାନର ବହୁ ଊର୍ଦ୍ଧ୍ୱରେ ସ୍ୱର୍ଲୋକରୁ ଶତ ସଂଖ୍ୟକ ରଥ ଦ୍ୱାରା ମନୁଷ୍ୟଙ୍କ ନିକଟକୁ ଆସୁଛନ୍ତି । ସେ ଅରୁଣବର୍ଣ୍ଣ ଅଶ୍ୱଯୁକ୍ତ ରଥରେ ଆସନ୍ତି (୧୧୩ସୂ. ୧୬ଋ) ।' ତାଙ୍କର ଅରୁଣ ବର୍ଣ୍ଣ କିରଣକୁ

ଅଶ୍ୱରୂପେ ବର୍ଣ୍ଣନା କରା ହୋଇଅଛି । ଇନ୍ଦ୍ରଙ୍କର ହିରଣ୍ମୟ ରଥର ବର୍ଣ୍ଣନା ଅଛି, ମରୁଦ୍‌ଗଣଙ୍କର ରଥର ମଧ୍ୟ ।

ଋତବାନ୍ ସୂର୍ଯ୍ୟ ଯଥା ସମୟରେ ଦ୍ୟାବାପୃଥିବୀ ବ୍ୟାପ୍ତ ରଶ୍ମିସମୂହକୁ ସମ୍ବରଣ କରନ୍ତି, ଅସ୍ତ ହୋଇଯାଆନ୍ତି । କାହାର କାମ ସରିଲା କି ନାହିଁ ସେଥିକୁ ଦୃଷ୍ଟି ଦିଅନ୍ତି ନାହିଁ । ବିଶ୍ୱର ଶାଶ୍ୱତ ନୀତି ପାଳନ କରି ଅପସରି ଯାଆନ୍ତି । କାହାକୁ ଅପେକ୍ଷା କରନ୍ତି ନାହିଁ । ଚତୁର୍ଥ ଋକ୍‌ରେ ଆଙ୍ଗିରସ ଋଷି ଏହା ପ୍ରତିପାଦନ କରିଛନ୍ତି । ରାତ୍ରି ଯେପରି ଅପେକ୍ଷା କରିଥାଆନ୍ତି ତାଙ୍କର ଯିବାର ମୁହୂର୍ତ୍ତକୁ । ସଙ୍ଗେ ସଙ୍ଗେ ସେ ପୃଥିବୀକୁ ଘୋଡ଼ାଇ ଦିଅନ୍ତି କୃଷ୍ଣବର୍ଣ୍ଣ ବସ୍ତ୍ରରେ । ସେ ମଧ୍ୟ ଋତାବରୀ, ନିଜର ଦେବନିୟତ, ପ୍ରକୃତିନିୟତ କର୍ତ୍ତବ୍ୟ କରିଯାଆନ୍ତି ।

ଋଷି ପ୍ରସ୍କଣ୍ୱଙ୍କ ଦ୍ୱାରା ରଚିତ ସୂର୍ଯ୍ୟ-ସୂକ୍ତ (୧ମ.୫୦ସୂ) ଋଗ୍‌ବେଦର ଆଉ ଏକ ପ୍ରସିଦ୍ଧ ସୂକ୍ତ ।

ସୂର୍ଯ୍ୟ ଜ୍ୟୋତିର୍ମୟ । ସେ ଜାଣନ୍ତି ସକଳ ପ୍ରାଣୀଙ୍କୁ, ସକଳ ପ୍ରାଣୀ ତାଙ୍କୁ ଜାଣନ୍ତି- ତାଙ୍କରି ହିଁ ସକଳ ପ୍ରାଣୀ । ତାଙ୍କର ରଶ୍ମିସ୍ୱରୂପ ଅଶ୍ୱଗଣ (ସୂର୍ଯ୍ୟାଶ୍ୱାଃ ଯଦ୍ୱା ସୂର୍ଯ୍ୟରଶ୍ମୟଃ) ତାଙ୍କୁ ବହନ କରି ନେଉଛନ୍ତି ଉର୍ଦ୍ଧ୍ୱକୁ ସମଗ୍ର ବିଶ୍ୱକୁ ଦର୍ଶନ କରିବାକୁ । ସମଗ୍ର ବିଶ୍ୱ ମଧ୍ୟ ସେଥିପାଇଁ ତାଙ୍କୁ ଦେଖିପାରେ । ୧ ।

ସେ ବିଶ୍ୱଚକ୍ଷୁ- ବିଶ୍ୱଦ୍ରଷ୍ଟା । ତାଙ୍କରି ଆଲୋକରେ ସମଗ୍ର ବିଶ୍ୱକୁ ଦର୍ଶନ କରିହୁଏ । ସେ ଉଦିତ ହେଲେ ନକ୍ଷତ୍ରଗଣ ତସ୍କରତୁଲ୍ୟ ରାତ୍ରି ସହିତ ପଳାଇଯାଆନ୍ତି । ୨ ।

ଅଗ୍ନିପରି ଜାଜ୍ୱଲ୍ୟମାନ ସୂର୍ଯ୍ୟଙ୍କର ଉପସ୍ଥିତିସୂଚକ, ପ୍ରକାଶକ ରଶ୍ମିସମୂହ ମନୁଷ୍ୟମାନଙ୍କୁ ସ୍ୱଷ୍ଟଭାବରେ ଗୋଟି ଗୋଟି କରି ଦେଖୁଛନ୍ତି । ୩ ।

ହେ ସୂର୍ଯ୍ୟ, ତୁମେ ଉର୍ଦ୍ଧ୍ୱପଥରେ ଦ୍ରୁତ ଗତିରେ ଭ୍ରମଣ କର । ତୁମେ ସୁଶୋଭନ- ବିଶ୍ୱବାସୀଙ୍କର ଦର୍ଶନୀୟ । ତୁମେ ଜ୍ୟୋତିଷ୍କୃତ୍- ଜ୍ୟୋତି ଉତ୍ପନ୍ନ କରୁଛ । ସମଗ୍ର ଅନ୍ତରିକ୍ଷରେ, ବିଶ୍ୱରେ ଆଲୋକ ଉଦ୍‌ଭାସିତ କରୁଛ । ୪ ।

ତୁମେ ଦେବଗଣଙ୍କ ସମକ୍ଷରେ ଉଦୟ ହୁଅ, ମନୁଷ୍ୟମାନଙ୍କ ସମ୍ମୁଖରେ ଉଦୟ ହୁଅ, ସାରା ସଂସାରରେ ଉଦୟ ହୁଅ । ବିଶ୍ୱର ସମସ୍ତଙ୍କ ଦୃଷ୍ଟିଗୋଚର ହୁଅ । ୫ ।

ହେ ବରୁଣ (ଅନିଷ୍ଟନିବାରକ), ହେ ପାବକ (ପବିତ୍ରକାରୀ) ସୂର୍ଯ୍ୟ, ତୁମେ ଯେଉଁ ଆଲୋକଦ୍ୱାରା (ଚକ୍ଷସା) ସକଳ ପ୍ରାଣୀମାନଙ୍କର ଭରଣ-ପୋଷଣକର୍ତ୍ତାରୂପେ ସେମାନଙ୍କୁ ଦର୍ଶନ କର, ସେହି ଆଲୋକ ଦ୍ୱାରା ରାତ୍ରି ସହିତ ଦିବସକୁ ଉତ୍ପାଦନ କର ଓ ପ୍ରାଣୀମାନଙ୍କୁ ଦେଖି ଦେଖି ସୁବିସ୍ତୃତ ସ୍ୱର୍ଲୋକ, ଅନ୍ତରିକ୍ଷ ପରିଭ୍ରମଣ କର । ୬ । ୭ ।

ହେ ତେଜୋମୟ ସୂର୍ଯ୍ୟ, ତୁମର ଆଲୋକରେ ତୁମେ ସମଗ୍ର ଜଗତ୍‌କୁ ପ୍ରକାଶ କର । ତୁମକୁ ସପ୍ତ ହିରଣ୍ୟବର୍ଣ୍ଣ (ବା ହରିତ୍ ନାମକ) ଅଶ୍ୱଗଣ ରଥରେ ବାହି ନିଅନ୍ତି । ଜ୍ୟୋତିପୁଞ୍ଜ ତୁମର କେଶତୁଲ୍ୟ । ୮ ।

ସୂର୍ଯ୍ୟ ରଥର ବାହକ ସପ୍ତଅଶ୍ୱୀଙ୍କୁ ରଥରେ ଯୋଜିତ କଲେ । ନିଜଦ୍ୱାରା ଯୋଜିତ ସେହି ଅଶ୍ୱୀଗଣଙ୍କ ଦ୍ୱାରା ସେ ଗମନ କରୁଛନ୍ତି । ୯ ।

ଅନ୍ଧକାର ଉପରେ ଉଦିତ ଉତ୍କୃଷ୍ଟ ଜ୍ୟୋତିକୁ ଦର୍ଶନ କରି ଆମେ ଦେବତାଗଣଙ୍କ ମଧ୍ୟରେ ଶ୍ରେଷ୍ଠ, ସର୍ବାପେକ୍ଷା ଉଜ୍ଜ୍ୱଳ ସୂର୍ଯ୍ୟଙ୍କ ନିକଟକୁ ଗଲୁ । ୧୦ ।

ହେ (ଆମ୍ଭମାନଙ୍କ ପ୍ରତି) ଦୟାଶୀଳ, ଜ୍ୟୋତିର୍ମୟ ସୂର୍ଯ୍ୟ । ଆଜି ଉଦୟ ହୋଇ ଊର୍ଦ୍ଧ୍ୱର ଆକାଶ ଶିଖରକୁ ଆରୋହଣ କରି ମୋର ହୃଦ୍‌ରୋଗ ଓ ହରିମାଣ ରୋଗ ବିନଷ୍ଟ କର । ୧୧ ।

ତୁମେ ଆମର ହରିମାଣ ରୋଗ ଶୁଆ ଶାରୀ ପକ୍ଷୀମାନଙ୍କଠାରେ ନିହିତ କର, ଆମର ହରିମାଣ ରୋଗ ହରିଦ୍ରାରେ ନିହିତ କର । ୧୨ ।

(ହରିମାଣ ରୋଗ ବୋଧହୁଏ ରୁଗ୍ଣଯକୃତଜନିତ କାମଳ ରୋଗ ବା ଧଳା-ହଳଦିଆ ଛଉ ରୋଗ । ରୋଗୀଠାରୁ ସେହି ରୋଗକୁ ବୃକ୍ଷକୁ ବା ପକ୍ଷୀକୁ ପ୍ରେରଣ କରିଦେଲେ ରୋଗୀ ରୋଗମୁକ୍ତ ହୁଏ । ଐତିହାସିକ ପ୍ଲିନି (Pliny) ଲେଖିଛନ୍ତି ଯେ ତାଙ୍କ ଦେଶର ଲୋକଙ୍କ ବିଶ୍ୱାସ ଥିଲା, ରୋଗୀ icterlei ପକ୍ଷୀକୁ ଚାହିଁଲେ ନିଜେ ରୋଗମୁକ୍ତ ହୁଏ, କିନ୍ତୁ ପକ୍ଷୀଟି ସେହି ରୋଗରେ ମରିଯାଏ । ସୂର୍ଯ୍ୟାଲୋକ ଚର୍ମରୋଗ ନାଶ କରେ । ସୂର୍ଯ୍ୟପୂଜା କୁଷ୍ଠରୋଗରୁ ମୁକ୍ତି ଦିଏ ବୋଲି ପାରମ୍ପରିକ ବିଶ୍ୱାସ ଅଛି । ଶାମ୍ବ କୁଷ୍ଠ ରୋଗାକ୍ରାନ୍ତ ହୋଇ ସେଥିରୁ ମୁକ୍ତିପାଇଁ ସୂର୍ଯ୍ୟଙ୍କୁ ପୂଜା କରିଥିଲେ । ଭେଷଜ ବିଜ୍ଞାନ ଚର୍ମରୋଗର ପ୍ରତିକାର ପାଇଁ ସୂର୍ଯ୍ୟାଲୋକର ଉପଯୋଗିତା ସ୍ୱୀକାର କରେ ।)

ଏହି ଆଦିତ୍ୟ (ସୂର୍ଯ୍ୟ) ସମଗ୍ର ଆଲୋକ ସମ୍ଭାର ସହିତ ଉଦୟ ହୋଇ ଅଛନ୍ତି । ସେ ମୋର (ଶତ୍ରୁ ତୁଲ୍ୟ)ଅମଙ୍ଗଳକାରୀ ରୋଗ ଧ୍ୱଂସ କରିଛନ୍ତି । ମୁଁ ଆଉ କେବେହେଲେ ଯେପରି ସେହି ଅମଙ୍ଗଳକାରୀ ରୋଗର କର୍ତ୍ତୃତ୍ୱାଧୀନ ନ ହୁଏ । ୧୩ ।

(ପ୍ରବାଦ ଅଛି ଯେ ଋଷି ପ୍ରସ୍କଣ୍ୱ ସୂର୍ଯ୍ୟଙ୍କୁ ୧୧ଶ, ୧୨ଶ ଓ ୧୩ଶ ମନ୍ତ୍ରଗୁଡ଼ିକ ପଢ଼ି ସ୍ତୁତି କଲାରୁ ସୂର୍ଯ୍ୟ ତାଙ୍କୁ ଶ୍ୱେତ ବା ଧଳା ଛଉ ରୋଗରୁ ମୁକ୍ତ କରିଦେଇଥିଲେ । ସେଥିପାଇଁ ଅନୁରୂପ ରୋଗର ଉପଶମ ପାଇଁ ସେହି ମନ୍ତ୍ରଗୁଡ଼ିକ ବୋଲି ସୂର୍ଯ୍ୟଙ୍କର ଆରାଧନା କରାଯାଏ ।)

କଣ୍ୱବଂଶୀୟ ବା କଣ୍ୱପୁତ୍ର ଋଷି ପ୍ରସ୍କଣ୍ୱ ଋଗ୍‌ବେଦର ପ୍ରଥମ ମଣ୍ଡଳର ୪୪-୫୦ ତମ, ଅଷ୍ଟମ ମଣ୍ଡଳର ୪୯ ତମ ଓ ନବମ ମଣ୍ଡଳର ୯୫ ତମ ସୂକ୍ତଗୁଡ଼ିକର ରଚୟିତା । ଅଷ୍ଟମ ମଣ୍ଡଳର ସୂକ୍ତଟି ଇନ୍ଦ୍ରଙ୍କ ପାଇଁ ଉଦ୍ଦିଷ୍ଟ, ନବମ ମଣ୍ଡଳର ସୂକ୍ତଟି ସୋମଙ୍କ ପାଇଁ ଉଦ୍ଦିଷ୍ଟ । କିନ୍ତୁ ପ୍ରଥମ ମଣ୍ଡଳର ଉପରୋକ୍ତ ସୂର୍ଯ୍ୟସୂକ୍ତ ବ୍ୟତୀତ ଅନ୍ୟ ଛଅଟି ସୂକ୍ତ ମଧ୍ୟରୁ ଦୁଇଟି ଅଗ୍ନିଙ୍କ ପ୍ରତି, ଦୁଇଟି ଅଶ୍ୱିଦ୍ୱୟଙ୍କ ପ୍ରତି ଓ ଦୁଇଟି ଊଷାଙ୍କ ପ୍ରତି ଉଦ୍ଦିଷ୍ଟ ।

ମନେ ହୁଏ, ପ୍ରସ୍କଣ୍ୱ ମୁଖ୍ୟତଃ ଆଲୋକର, ଜ୍ୟୋତିର କବି । ଅଗ୍ନି ତ ଉତ୍ତାପର, ଆଲୋକର, ଜ୍ୟୋତିର ଉତ୍ସ । ଗୃହରେ ସେ ଯଜ୍ଞାଗ୍ନି ଦେବଦୂତ, ପୁରୋହିତ । ଆକାଶରେ ସେ ସୂର୍ଯ୍ୟରୂପେ ଅବସ୍ଥାନ କରନ୍ତି । ଊଷା ଆକାଶଦୁହିତା, ସୂର୍ଯ୍ୟକାନ୍ତା, ଅନ୍ଧକାର-ବିନାଶିନୀ, ଅରୁଣବର୍ଣ୍ଣା, ପ୍ରସ୍କଣ୍ୱଙ୍କ ଭାଷାରେ (୪୯ ତମ ସୂକ୍ତ ୪ର୍ଥ ଋକ୍, ପ୍ରଥମ ପଦ) ''ବ୍ୟୁଚ୍ଛନ୍ତୀ ହି ରଶ୍ମିଭିର୍ବିଶ୍ୱମାଭାସି ରୋଚନମ୍''- ସେ ଅନ୍ଧକାର ବିନାଶ କରି ରଶ୍ମିସମୂହ ଦ୍ୱାରା ବିଶ୍ୱକୁ ପ୍ରକାଶ କରନ୍ତି- ଆଙ୍ଗିରସ କୁସଙ୍କ ଭାଷାରେ ସେ ''ଜ୍ୟୋତିଷାଂ ଜ୍ୟୋତିଃ'' ଜ୍ୟୋତିସମୂହଙ୍କ ମଧ୍ୟରେ ଶ୍ରେଷ୍ଠ ଜ୍ୟୋତି । ଯଜ୍ଞାଗ୍ନି ପ୍ରଜ୍ୱଳିତ କରନ୍ତି, ସୂର୍ଯ୍ୟଙ୍କ ଜ୍ୟୋତି ଦ୍ୱାରା ରାତ୍ରିର ଅନ୍ଧକାର ଦୂର କରନ୍ତି (ମ ୧. ସୂ. ୧୧୩.ଋ.୧ ଓ ଋ୯) । ଅଶ୍ୱିଦ୍ୱୟ ସୂର୍ଯ୍ୟ ଦୁହିତା ସୂର୍ଯ୍ୟାଙ୍କର ପତି (ମ୧୦ ସୂ.୮୫) । ସେମାନେ ପ୍ରଥମେ ଆବିର୍ଭୂତ ହୁଅନ୍ତି ଆକାଶରେ- ସେମାନଙ୍କ ପରେ ଆସନ୍ତି ଊଷା । ସେମାନେ ଯେପରି ଜ୍ୟୋତିର୍ମୟୀ ଊଷାଙ୍କ ଆଗମନପାଇଁ ପଥ ପ୍ରସ୍ତୁତ କରନ୍ତି- ସେମାନେ ଊଷାଙ୍କର, ସୂର୍ଯ୍ୟଙ୍କର ଜ୍ୟୋତିର ଆବାହକ । ସେମାନେ ପୁଣି ଭିଷକ୍ ଶ୍ରେଷ୍ଠ । ଶ୍ୱେତରୋଗ ପୀଡ଼ିତ ପ୍ରସ୍କଣ୍ୱଋଷି ତାଙ୍କ ବନ୍ଦନା ଗାଇବା ସ୍ୱାଭାବିକ ।

ଦ୍ୱିଶତର୍ଚ୍ଚୀ (ଦ୍ୱିଶତ ସୂକ୍ତ ରଚୟିତା) ଆଙ୍ଗିରସ କୁସ ଋଷି ତ ଅଗ୍ନିଙ୍କର ଭ୍ରାତାତୁଲ୍ୟ (ଅଙ୍ଗିରସଙ୍କ ଜ୍ୟେଷ୍ଠ ପୁତ୍ର ହେଉଛନ୍ତି ଅଗ୍ନି) । ସେ ମଧ ପ୍ରଣୟନ କରିଛନ୍ତି ଅଗ୍ନି ସୂକ୍ତ (ମ୧. ସୂ୯୨), ଊଷା ସୂକ୍ତ (ମ୧.ସୂ୧୧୩), ଅଶ୍ୱିସୂକ୍ତ (ମ୧.ସୂ୧୧୨) । ସେ ମଧ ଆଲୋକର ପୂଜାରୀ ।

ପ୍ରସ୍କଣ୍ୱଙ୍କ ସୂର୍ଯ୍ୟ ସୂକ୍ତର ପ୍ରଥମ ଋକ୍‌ଟି ଯଜୁର୍ବେଦରେ (ବା.୨.୪୧) ସ୍ଥାନ ପାଇଛି । ଦଶମ ଋକ୍‌ଟି ମଧ ଯଜୁର୍ବେଦରେ (ବା.୨୦/୨୧, ୨୭/୧୦, ୩୮/୨୪) ସ୍ଥାନ ପାଇଛି । ଏହି ଦୁଇଟି ଋକ୍ ଆଙ୍ଗିରସଙ୍କ ସୂର୍ଯ୍ୟସୂକ୍ତର ପ୍ରଥମ ଋକ୍ ସହିତ ମିଳିତ ହୋଇ ଯଜୁର୍ବେଦୀୟ ସନ୍ଧ୍ୟା ମନ୍ତ୍ରରେ ଯୁକ୍ତ ହୋଇଅଛନ୍ତି :

ଉଦୁ ତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବମ୍ ।<br>
ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ।<br>
(ଋଗ୍.୧ମ.୫୦ସୂ. ୧ ଋ)

ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରା ଦ୍ୟାବା ପୃଥିବୀ ଅନ୍ତରିକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥
(ଋଗ୍. ୧ମ.୧୧୫ସୂ.୧ଋ)

ଉଦ୍‌ବୟଂ ତମସସ୍ପରି ଜ୍ୟୋତିଷ୍ପଶ୍ୟନ୍ତ ଉତ୍ତରମ୍ ।
ଦେବଂ-ଦେବତ୍ରା ସୂର୍ଯ୍ୟମଗନ୍ମ ଜ୍ୟୋତିରୁତ୍ତମମ୍ ॥
(ଋଗ୍.୧ମ.୫୦ସୂ.୧୦ଋ)

ପ୍ରସ୍କଣ୍ୱ ଋଷି ମଧ୍ୟ ସୂର୍ଯ୍ୟଙ୍କୁ ଅଭିହିତ କରିଛନ୍ତି 'ବିଶ୍ୱଚକ୍ଷୁ' ରୂପେ (ସୁରାୟ ବିଶ୍ୱଚକ୍ଷସେ. ଋ.୨) । ମନେ ପଡୁଛି ସନ୍ଧ୍ୟା ମନ୍ତ୍ରରେ ସବିତାଙ୍କର ପ୍ରାର୍ଥନା-

ନମଃ ସବିତ୍ରେ ଜଗଦେକଚକ୍ଷୁଷେ ଜଗଦ୍‌ପ୍ରସୂତିସ୍ଥିତିନାଶହେତବେ-

'ବିଶ୍ୱଚକ୍ଷୁ' ବିଶ୍ୱଦ୍ରଷ୍ଟା ଦିଅନ୍ତି ଯଥାର୍ଥ ଚକ୍ଷୁ ମନୁଷ୍ୟଙ୍କୁ ଉତ୍‌କୃଷ୍ଟରୂପେ ଦର୍ଶନ କରିପାରିବାକୁ । ୧୦ମ ମଣ୍ଡଳର ସୂର୍ଯ୍ୟ ସୂକ୍ତରେ (୧୫୮ ସୂକ୍ତ- ସୂଚିତ ହୋଇଛି ସେଥିର ଋଷି ହେଉଛନ୍ତି 'ଚକ୍ଷୁ'- ଏହି ନାମ ଯେପରି ଏକ ପ୍ରତୀକ ନାମ, କୌଣସି ଋଷିଙ୍କର ଯଥାର୍ଥ ନାମ ନୁହେଁ- ମାନବ ଚକ୍ଷୁ ପ୍ରାର୍ଥନା କରୁଛି ସୁର-ଚକ୍ଷୁ, ସୂର୍ଯ୍ୟ-ଚକ୍ଷୁ ପାଇଁ) ପ୍ରାର୍ଥନା କରାହୋଇଛି-

ଚକ୍ଷୁର୍ନୋ ଦେବଃ ସବିତା ଚକ୍ଷୁର୍ନ ଉତ ପର୍ବତଃ । ଚକ୍ଷୁର୍ଧାତା ଦଧାତୁ ନଃ ॥
ଚକ୍ଷୁର୍ନୋ ଧେହି ଚକ୍ଷୁଷେ ଚକ୍ଷୁର୍ବିଖ୍ୟୈ ତନୂଭ୍ୟଃ । ସଂ ଚେଦଂ ବି ଚ ପଶ୍ୟେମ ॥
ସୁସନ୍ଦୃଶଂ ତ୍ୱା ବୟଂ ପ୍ରତି ପଶ୍ୟେମ ସୂର୍ଯ୍ୟ । ବି ପଶ୍ୟେମ ନୃଚକ୍ଷସଃ ॥

'ସବିତା ଦେବ ଆମ୍ଭମାନଙ୍କୁ ଚକ୍ଷୁଦାନ କରନ୍ତୁ । ପର୍ବତ ଦେବ ଚକ୍ଷୁଦାନ କରନ୍ତୁ । ବିଧାତା ଆମ୍ଭମାନଙ୍କୁ ଚକ୍ଷୁଦାନ କରନ୍ତୁ । ଆମ୍ଭମାନଙ୍କ ଚକ୍ଷୁକୁ ଚକ୍ଷୁ ଅର୍ଥାତ୍ ସମ୍ୟକ୍ ଦୃକ୍‌ଶକ୍ତି ପ୍ରଦାନ କର । ଯେପରି ସମସ୍ତ ବସ୍ତୁ ଉତ୍ତମ ରୂପେ ଆମ୍ଭମାନଙ୍କୁ ଦେଖାଯିବେ, ସେଥିପାଇଁ ଆମ୍ଭମାନଙ୍କର ଶରୀରକୁ (ଯଥାର୍ଥ) ଚକ୍ଷୁଦାନ କର । ଆମେ ଯେପରି ସମସ୍ତଙ୍କୁ ଏକତ୍ର ସୁସମନ୍ୱିତ ରୂପରେ, ସୁସ୍ପଷ୍ଟ ରୂପେ ଦେଖିପାରୁ । ହେ ସୂର୍ଯ୍ୟ ! ତୁମକୁ ଯେପରି ଆମେ ଉତ୍ତମ ରୂପେ ଦେଖିପାରୁ । ମନୁଷ୍ୟମାନେ ଯାହା ଦେଖିପାରନ୍ତି ତାହା ଯେପରି ବିଶେଷ ରୂପେ, ସ୍ପଷ୍ଟ ରୂପେ ଦେଖିପାରୁ (ବି ପଶ୍ୟେମ ନୃଚକ୍ଷସଃ) ।'

ଏହି ସୂକ୍ତରେ ସୂର୍ଯ୍ୟଦେବ ଓ ସବିତା ଦେବଙ୍କୁ ଅଭିନ୍ନ ରୂପେ ଗ୍ରହଣ କରାଯାଇ ସ୍ତୁତି କରାହୋଇଛି । ପ୍ରଥମ ଓ ଶେଷ ଋକ୍ (୫ମ)ରେ ସୂର୍ଯ୍ୟ ନାମ ବ୍ୟବହାର କରାହୋଇଛି । ତୃତୀୟ ଋକ୍‌ରେ ସୂର୍ଯ୍ୟଙ୍କୁ ସବିତା ରୂପରେ ଅଭିହିତ କରାହୋଇଅଛି । ଋଗ୍‌ବେଦର ବହୁ ସୂକ୍ତରେ ଏହିପରି ସୂର୍ଯ୍ୟ ଓ ସବିତାଙ୍କୁ ଏକ ରୂପରେ ଗ୍ରହଣ କରାଯାଇଅଛି । କିନ୍ତୁ କେତେକ ସବିତାଙ୍କ ପ୍ରତି ଉଦ୍ଦିଷ୍ଟ ସୂକ୍ତ ମଧ୍ୟ ଅଛି (ମ୧୦ ସୂ୧୪୯,

ମ୪ ସୂ ୫୩ ଇତ୍ୟାଦି) । ସୂର୍ଯ୍ୟ ହେଉଛନ୍ତି ଯାହାଙ୍କୁ ଆମେ ଦେଖୁ ,ଉପଲବ୍ଧି କରୁ ବାସ୍ତବ ରୂପରେ; ସବିତା ହେଉଛନ୍ତି ତାଙ୍କର ଦିବ୍ୟଶକ୍ତି, ସମସ୍ତଙ୍କୁ ପ୍ରକାଶ କରିବାର, ଜୀବନ ଦେବାର ଶକ୍ତି । ସାୟଣଙ୍କ ମତରେ ଉଦୟ ହେବା ପୂର୍ବରୁ ସୂର୍ଯ୍ୟ ସବିତା ରୂପରେ ଅଭିହିତ । ଉଦୟ ହେବାଠାରୁ ଅସ୍ତ ହେବା ପର୍ଯ୍ୟନ୍ତ ସୂର୍ଯ୍ୟ ରୂପରେ ଅଭିହିତ । ସାୟଣ 'ସବିତା' ଶବ୍ଦର ଅର୍ଥ 'ପରମେଶ୍ୱର' ମଧ୍ୟ କରିଛନ୍ତି ।

ଉପରୋକ୍ତ ସୂର୍ଯ୍ୟ ସୂକ୍ତଟି ଗାୟତ୍ରୀ ଛନ୍ଦରେ ଲିଖିତ । ତାହା ମନେ ପକାଇ ଦେଉଛି ସୁପ୍ରସିଦ୍ଧ ଗାୟତ୍ରୀ ମନ୍ତ୍ର, ଯାହା 'ସାବିତ୍ରୀ' ନାମରେ ମଧ୍ୟ ଅଭିହିତ । (୩ମ, ସୂ୬୨. ଋ୧୦) ।

ଓଁ ଭୂର୍ଭୁବଃ ସ୍ୱଃ ତସ୍ତବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ଯୋ ନଃ ପ୍ରଚୋଦୟାତ୍ ।

(ଋଗ୍ ବେଦରେ 'ଓଁ ଭୂର୍ଭୁବ ସ୍ୱଃ' ନାହିଁ । 'ଭୂର୍ଭୁବଃ ସ୍ୱଃ' ଶବ୍ଦ ତିନୋଟି ଯଜୁର୍ବେଦରେ ଯୁକ୍ତ କରାହୋଇଥିଲା । ପ୍ରତ୍ୟେକ ପ୍ରାର୍ଥନାର ଆରମ୍ଭରେ ତ 'ଓଁ' ଉଚ୍ଚାରଣ କରାଯାଏ) ।

'ପୃଥିବୀ, ଆକାଶ, ସ୍ୱର୍ଗରେ ଅଧିଷ୍ଠିତ ସବିତା ଦେବଙ୍କର ବରେଣ୍ୟ ତେଜକୁ ଧ୍ୟାନ କରୁଛୁ । ସେ ଆମର ଧୀ ଶକ୍ତିକୁ ପ୍ରଚୋଦିତ କରନ୍ତୁ ।'

ସୁପ୍ରସିଦ୍ଧ ହଂସବତୀ ଋକ୍ ମଧ୍ୟ ମନେ ପଡୁଛି :

ହଂସଃ ଶୁଚିଷଦ୍ ବସୁରନ୍ତରିକ୍ଷସଦ୍-
ଧୋତା ବେଦିଷଦ୍ ଅତିଥିର୍ଦୁରୋଣସଦ୍ ।
ନୃଷଦ୍ ବରସଦ୍ ଋତସଦ୍ ବ୍ୟୋମସଦ୍
ଅବ୍ଜା ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍ ।।

(ଋଗ୍ - ୪ମ. ୪୦ ସୂ. ୫ ଋ)

(ଋଗ୍‌ବେଦରେ ଋକ୍‌ଟିର ଶେଷରେ 'ବୃହତ୍' ନାହିଁ । ଯଜୁର୍ବେଦରେ ଏହି ଋକ୍‌ଟିରେ 'ବୃହତ୍' ଅଛି । ଯ ୧୦/୨୪)

ଋଗ୍‌ବେଦରେ ଦଧିକ୍ରାଙ୍କ ପ୍ରତି ବାମଦେବ ଋଷିଙ୍କ ଦ୍ୱାରା ରଚିତ ଏକ ସୂକ୍ତର ଏହା ଶେଷ (୫ମ) ଋକ୍ । ନିରୁକ୍ତ ଅନୁଯାୟୀ ଦଧିକ୍ରା ହେଉଛନ୍ତି ଏକ ଦିବ୍ୟ ଅଶ୍ୱ- ପ୍ରଭାତକାଳୀନ ସୂର୍ଯ୍ୟଙ୍କୁ ବ୍ୟକ୍ତିତ୍ୱ ଆରୋପ କରାଯାଇ ଦିବ୍ୟ ଅଶ୍ୱ ଦଧିକ୍ରା ରୂପେ ଅଭିହିତ କରାଯାଇଅଛି । ତେଣୁ ଏହି ସ୍ତୁତି ଏକ ସୂର୍ଯ୍ୟସ୍ତୁତି ରୂପେ ଗ୍ରହଣୀୟ ।

'ସେ ହିଁ ଆଲୋକ ମଧ୍ୟରେ ଅବସ୍ଥିତ ହଂସ, ଅନ୍ତରିକ୍ଷରେ ଅବସ୍ଥିତ ଧନ-ଦେବ ବସୁ, ସେ ହିଁ (ଯଜ୍ଞ) ବେଦିରେ ଉପବିଷ୍ଟ ପୁରୋହିତ, ଗୃହରେ ଉପବିଷ୍ଟ ଅତିଥି ।

ସେ ଅଛନ୍ତି ମନୁଷ୍ୟମାନଙ୍କ ମଧ୍ୟରେ, ଅଛନ୍ତି ସର୍ବୋତ୍ତମ ସ୍ଥାନରେ, ଅଛନ୍ତି ଋତରେ, ଅନନ୍ତ ଆକାଶରେ । ଜଳରୁ ଜାତ, ଆଲୋକରୁ ଜାତ, ଋତରୁ ଜାତ, ପର୍ବତରୁ ଜାତ, ସେ ନିଜେ ହେଉଛନ୍ତି ଋତ ।'

ସୂର୍ଯ୍ୟଙ୍କୁ ଏଠି ସର୍ବବ୍ୟାପୀ, ସର୍ବନିୟନ୍ତା, ପରମାତ୍ମା ରୂପେ ଗ୍ରହଣ କରାଯାଇ ସ୍ତୁତି କରାହୋଇଛି । 'ହଂସଃ' ଶବ୍ଦର ଏହି ସୂକ୍ତରେ ଅର୍ଥ ହେଉଛି 'ପରମାତ୍ମା' । ଋତର ପ୍ରବର୍ତ୍ତକ ସେ, ଋତରେ ନିହିତ ସେ- ସେ ନିଜେ ହେଉଛନ୍ତି ଋତ । ଋତରୂପେ ସେ ସର୍ବତ୍ର ବିଦ୍ୟମାନ ।

ଉଭୟ ପ୍ରସ୍କଣ୍ୱ ଓ ଆଙ୍ଗିରସ କୁସ ସୂର୍ଯ୍ୟଙ୍କୁ ଦିବା ଓ ରାତ୍ରିର, ଆଲୋକର ଓ ଅନ୍ଧକାରର କାରଣ ବୋଲି ବର୍ଣ୍ଣନା କରିଅଛନ୍ତି । (୧ମ. ୫୦ସୂ. ୭ଋ ଓ ୧ମ. ୧୧୫ସୂ. ୫ଋ) ।

ସ୍ୱର୍ଗଲୋକର ସପ୍ତଦେବତା- ଅଦିତିଙ୍କର ସପ୍ତ ପୁତ୍ର ହେଉଛନ୍ତି ସପ୍ତ ଆଦିତ୍ୟ- ବରୁଣ, ମିତ୍ର, ଅର୍ଯମା, ଭଗ, ଦକ୍ଷ, ଅଂଶ, ସବିତା ବା ସୂର୍ଯ୍ୟ । ବିଶ୍ୱେଦେବାଙ୍କଠାରୁ ଏମାନେ ଏକ ଭିନ୍ନ ଶ୍ରେଣୀର ଦେବତା । ଏମାନଙ୍କ ମଧ୍ୟରେ ବରୁଣ ଶ୍ରେଷ୍ଠ । ବରୁଣ ଓ ମିତ୍ରଙ୍କୁ ସାଧାରଣତଃ ବେଦରେ ଏକତ୍ର ସ୍ତୁତି କରାଯାଇଅଛି । କେବଳ ବରୁଣଙ୍କ ପ୍ରତି ଉଦ୍ଦିଷ୍ଟ ବହୁ ସୂକ୍ତ ଅଛି । କିନ୍ତୁ କେବଳ ମିତ୍ରଙ୍କ ପାଇଁ ଉଦ୍ଦିଷ୍ଟ ସୂକ୍ତ ସଂଖ୍ୟା ନଗଣ୍ୟ । ଆଦିତ୍ୟ ବରୁଣ ରାତ୍ରିର ଅଧିପତି, ମିତ୍ର ଦିବସର ଅଧିପତି । ତେଣୁ ବରୁଣ ଓ ମିତ୍ର ଘନିଷ୍ଠ ଭାବରେ ପରସ୍ପର ସହିତ ସଂପୃକ୍ତ, ଜଡ଼ିତ । ସୂର୍ଯ୍ୟ ଉଭୟ ଦିବା ଓ ରାତ୍ରିର କାରଣ, ବରୁଣ ଓ ମିତ୍ରଙ୍କର ପ୍ରକାଶକ । (ଅବଶ୍ୟ ବେଦର ବହୁ ସୂକ୍ତରେ ବରୁଣ ଦେବଗଣଙ୍କ ମଧ୍ୟରେ ଶ୍ରେଷ୍ଠ, ବିଶ୍ୱଭୁବନର ସମ୍ରାଟ୍, ଦ୍ୟୁଲୋକ, ଭୂଲୋକ, ଅନ୍ତରିକ୍ଷର ଜ୍ୟୋତିର୍ମୟ ଅଧିପତି, ଧାରକ, ରକ୍ଷକ, ନିୟନ୍ତକ ଇତ୍ୟାଦି ରୂପେ ସ୍ତୁତ ହୋଇ ଅଛନ୍ତି । କ୍ରମେ କ୍ରମେ ଇନ୍ଦ୍ରଙ୍କର ପ୍ରାଧାନ୍ୟ ବଢ଼ିଲା ।)

କୁସଙ୍କ ସୂକ୍ତର ଶେଷ ଋକ୍‌ଟିର କେହି କେହି ଟୀକାକାର ଆଂଶିକ ଭାବରେ ଭିନ୍ନ ଅର୍ଥ କରିଛନ୍ତି ''... ଆମକୁ ଆମ ଚିତ୍ତର ସମସ୍ତ ଗ୍ଲାନିରୁ, ଦୈନ୍ୟରୁ ସମ୍ପୂର୍ଣ୍ଣ ରୂପେ ମୁକ୍ତ କରିଦିଅ । ଆମକୁ ପରିପୂର୍ଣ୍ଣ କର'' ସ୍ଥାନରେ ପ୍ରସ୍କଣ୍ୱଙ୍କ ପରି ରୋଗମୁକ୍ତି ପାଇଁ ପ୍ରାର୍ଥନା ସନ୍ନିବେଶିତ କରିଛନ୍ତି- ''ଆମକୁ ଆମର ସମସ୍ତ ପ୍ରକାର ରୋଗରୁ ମୁକ୍ତ କରିଦିଅ । ଆମକୁ ସମ୍ପୂର୍ଣ୍ଣ ସୁସ୍ଥଶରୀର କରିଦିଅ ।'' 'ନିରଂହସଃ' ଶବ୍ଦକୁ 'ରୋଗଶୂନ୍ୟ' ଅର୍ଥରେ ଗ୍ରହଣ କରାହୋଇଛି ।

ପ୍ରସ୍କଣ୍ଣ ସ୍ପଷ୍ଟ ଭାବରେ ରୋଗମାନ ଉଲ୍ଲେଖ କରିଛନ୍ତି । ଆଙ୍ଗିରସ କୁସଙ୍କର ପ୍ରାର୍ଥନାର ଏପରି ଅର୍ଥ କରିବାର ଯଥାର୍ଥତା ନାହିଁ ବୋଲି ମନେ ହୁଏ ।

ପ୍ରସ୍କଣ୍ଣ ଋଷି ୧ମ.୫୦ସୂ.୮ଋ.ରେ ସୂର୍ଯ୍ୟଙ୍କ ଜ୍ୟୋତିପୁଞ୍ଜକୁ ତାଙ୍କର କେଶ ରୂପେ ବର୍ଣ୍ଣନା କରିଛନ୍ତି । ଋଗ୍‌ବେଦର ଗୋଟିଏ ଉଷା ସୂକ୍ତରେ ଉଷାଙ୍କର କିରଣସମୂହକୁ ତାଙ୍କର କେଶରାଶି ରୂପେ ବର୍ଣ୍ଣନା କରାହୋଇଛି । ମନେ ପଡୁଛି ଏଲିଜାବେଥ୍ ୧ମଙ୍କ ଯୁଗର ଇଂରାଜ କବି Drummondଙ୍କ ଗୋଟିଏ କବିତାର କିୟଦଂଶ । ସୂର୍ଯ୍ୟଙ୍କୁ (Phoebus) ସମ୍ବୋଧନ କରି ସେ ଲେଖିଛନ୍ତି-

Phoebus, arise !
And paint the sable skies
With azure, white and red ;
.......................................
Give life to this dark world which lieth dead ;
Spread forth thy golden hair
In larger locks than thou wast wont before,
And emperor-like decore
With diadem of pearl thy temples fair;
Chase hence the ugly night
Which serves but to make dear thy glorious light.

ପ୍ରସ୍କଣ୍ଣ ଲେଖିଛନ୍ତି, ସୂର୍ଯ୍ୟ ଉଦୟ ହେଲେ ରାତ୍ରିଆକାଶର ନକ୍ଷତ୍ରଗଣ ତସ୍କର ତୁଲ୍ୟ ରାତ୍ରି ସହିତ ପଳାଇ ଯାଆନ୍ତି । (ବୈଦିକ ଋଷିଙ୍କର ବାସ୍ତବବାଦୀ ଉପମା ଲକ୍ଷ୍ୟ କରିବା କଥା । ନକ୍ଷତ୍ରଗଣଙ୍କୁ ପଳାୟନପର ତସ୍କରଗଣଙ୍କ ସହ ତୁଳନା କରାହୋଇଅଛି ।)

Drummond ଲେଖିଛନ୍ତି-

.... Phoebus in his chair
Ensaffroning sea and air
Makes vanish every star.

ସୂର୍ଯ୍ୟଙ୍କୁ ସେ ବର୍ଣ୍ଣନା କରିଛନ୍ତି- "Fair king, who all preserves", ତାଙ୍କର ରଥଚକ୍ରଗୁଡ଼ିକୁ ବର୍ଣ୍ଣନା କରିଛନ୍ତି- "his flaming wheels" ଯାହାକୁ ଏଡ଼ାଇ ପଳାଇ ଯାଉଛନ୍ତି ରାତ୍ରି ।

ଗାୟତ୍ରୀ ମନ୍ତ୍ରରେ ବୈଦିକ ଋଷିକବି ସବିତା ଦେବଙ୍କଠାରୁ ପ୍ରାର୍ଥନା କରିଛନ୍ତି, ଭିକ୍ଷା କରିଛନ୍ତି ତାଙ୍କର ଧୀ ଶକ୍ତି ପାଇଁ ପ୍ରେରଣା । ବିଶ୍ୱକବି ରବୀନ୍ଦ୍ରନାଥ ସବିତାଙ୍କଠାରୁ କାମନା

କରିଛନ୍ତି ତାଙ୍କର କବିତା ପାଇଁ, ସଙ୍ଗୀତ ପାଇଁ ପ୍ରେରଣା । 'ସାବିତ୍ରୀ' କବିତାରେ ସେ ଲେଖିଛନ୍ତି-

ହେ ସୂର୍ଯ୍ୟ, ହେ ମୋର ବନ୍ଧୁ, ଜ୍ୟୋତିର କନକ ପଦ୍ମଖାନି
ଦେଖାଦିକ୍ ଫୁଟି ।
ବହ୍ନିବୀଣା ବକ୍ଷେ ଲୟେ ଦୀପ୍ତ କେଶେ ଉଦ୍‌ବୋଧିନୀ ବାଣୀ
ସେ ପଦ୍ମେର କେନ୍ଦ୍ର- ମାଝେ ନିତ୍ୟ ରାଜେ, ଜାନି ତାରେ ଜାନି ।
ମୋର ଜନ୍ମ କାଲେ
ପ୍ରଥମ ପ୍ରତ୍ୟୁଷେ ମମ ତାହାରି ଚୁମ୍ବନ ଦିଲେ ଆନି
ଆମାର କପାଲେ ।

ସୂର୍ଯ୍ୟଙ୍କର ରଶ୍ମିସମୂହକୁ 'ଦୀପ୍ତକେଶ' ବୋଲି କବି ବର୍ଣ୍ଣନା କରିଛନ୍ତି । ପୁଣି ସବିତାଙ୍କୁ ସମ୍ବୋଧନ କରି ଲେଖିଛନ୍ତି-

ତେଜେର ଭାଣ୍ଡାର ହତେ କୀ ଆମାତେ ଦିୟେଛ ଯେ ଭରେ
କେଇ ବା ସେ ଜାନେ !
କୀ ଜାଲ ହତେଛେ ବୋନା ସ୍ୱପ୍ନେ ସ୍ୱପ୍ନେ ନାନା ବର୍ଣ୍ଣଡୋରେ
ମୋର ଗୁପ୍ତ ପ୍ରାଣେ ।

ବେଦର ସର୍ବପ୍ରଥମ ଦେବତାତ୍ରୟୀ ହେଲେ ସ୍ୱର୍ଲୋକସ୍ଥ ସୂର୍ଯ୍ୟ, ଅନ୍ତରିକ୍ଷସ୍ଥ ଇନ୍ଦ୍ର, ପୃଥିବୀସ୍ଥ ଅଗ୍ନି । ଜ୍ୟୋତିର୍ମୟ ସୂର୍ଯ୍ୟ ଓ ଜ୍ୟୋତିର୍ମୟୀ, ସୂର୍ଯ୍ୟକାନ୍ତା ଊଷା ବୈଦିକ ଋଷିଗଣଙ୍କୁ ପ୍ରେରଣା ଦେଇଛନ୍ତି ବାରମ୍ବାର ତାଙ୍କର ସ୍ତୁତି, ତାଙ୍କର ଗୌରବଗାଥା ଗାନ କରିବାକୁ । ଋଗ୍‌ବେଦରେ ସୂର୍ଯ୍ୟଦେବଙ୍କ ପ୍ରତି ଉଦ୍ଦିଷ୍ଟ ଦଶଟି ସମ୍ପୂର୍ଣ୍ଣ ସୂକ୍ତ ଅଛି । ତନ୍ମଧ୍ୟରୁ ଦୁଇଟି ଉତ୍କୃଷ୍ଟ ସୂକ୍ତ ହେଉଛନ୍ତି ଆଙ୍ଗିରସ କୁତ୍ସଙ୍କ ସୂକ୍ତ ଓ କଣ୍ୱବଂଶୀୟ ପ୍ରସ୍କଣ୍ୱଙ୍କ ସୂକ୍ତ । ଯୁଗେ ଯୁଗେ ମାନବ ସୂର୍ଯ୍ୟଙ୍କର ସ୍ତୁତି ଗାନ କରିଆସିଛି । ସୂର୍ଯ୍ୟଙ୍କୁ ପରମବ୍ରହ୍ମଙ୍କ ସ୍ୱରୂପ ରୂପେ, ଆଲୋକକୁ ଜୀବନର ଉତ୍ସ ରୂପେ, ପ୍ରଜ୍ଞାର ପ୍ରତୀକରୂପେ ଦେଖିଆସିଛି । ବେଦର ସୂର୍ଯ୍ୟସ୍ତୁତି, ଉପନିଷଦ୍‌ର ସ୍ତୁତି- 'ତମସୋ ମା ଜ୍ୟୋତିର୍ଗମୟ' ଯୁଗେ ଯୁଗେ ପ୍ରତିଧ୍ୱନିତ ହୋଇଛି ନବ ନବ ରୂପରେ କ୍ରାନ୍ତଦର୍ଶୀ କବିଗଣଙ୍କ କଣ୍ଠରେ। ରବି ଠାକୁର ସୂର୍ଯ୍ୟଙ୍କର ଜୟଗାନ କରିଛନ୍ତି-

ଭେଙ୍ଗେଛ ଦୁଆର୍, ଏସେଛ ଜ୍ୟୋତିର୍ମୟ
ତୋମାରି ହଉକ୍ ଜୟ'
ତିମିର ବିଦାର ଉଦାର ଅଭ୍ୟୁଦୟ
ତୋମାରି ହଉକ୍ ଜୟ ।

ମନେ ପଡ଼େ ଭକ୍ତ କବି ମଧୁସୂଦନ ରାଓଙ୍କର 'ହିମାଚଳେ ଉଦୟ ଉତ୍ସବ'ର କେତେକ ପଂକ୍ତି-

ଚାହୁଁ ଚାହୁଁ ଅରୁଣିତ ଉଦୟାଦ୍ରି-ତଟେ
ବିରାଜି ରାଜୀବ-ରୁଚି ମୟୂଖ ପ୍ରକଟେ,
ନିଃଶେଷରେ ନୈଶ ତମଃ ବିନାଶି ସତ୍ୱରେ
ରବି ଅବତୀର୍ଣ୍ଣ ପ୍ରାଚୀ-ଆଶା-ଆକାଶରେ
ଅରୁଣ କିରଣ ରୂପ ଅତୁଲ୍ୟ ତୂଳିରେ
ଉନ୍ମୀଳିଲା ମହାଚିତ୍ର ନଗେନ୍ଦ୍ର ମୌଳିରେ ।

ମନେପଡ଼େ ଅଗଣିତ ନରନାରୀଙ୍କର ପ୍ରାତଃକାଳୀନ ସୂର୍ଯ୍ୟପ୍ରାର୍ଥନା-

ଜବାକୁସୁମଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରମ୍ ।।

******